# କାଶୀପୁର ଡାଏରି

(୧୯୮୦-୮୫)

ଅଚ୍ୟୁତ ଦାସ








ଭୁବନେଶ୍ୱର

# କାଶୀପୁର ଡାଏରି

(୧୯୮୦-୮୫)

## ଅଚ୍ୟୁତ ଦାସ




ଭୁବନେଶ୍ୱର

# କାଶୀପୁର ଡାଏରି (୧୯୮୦-୮୫)

ଲେଖକ ଅଚ୍ୟୁତ ଦାସ ■ ପ୍ରକାଶକ **ଶିକ୍ଷାସନ୍ଧାନ**, ଏ-୧୨, ହାଉସିଂ ବୋର୍ଡ଼ କଲୋନୀ ବରମୁଣ୍ଡା, ଭୁବନେଶ୍ୱର -୭୫୧୦୦୩, ଦୂରଭାଷ : ୦୬୭୪-୨୫୫୬୧୦୯ ■ ମୁଦ୍ରଣ : **ଶିକ୍ଷା ପ୍ରକାଶନୀ** ବରମୁଣ୍ଡା, ଭୁବନେଶ୍ୱର -୩ ■ ପ୍ରଥମ ସଂସ୍କରଣ : ୨୦୦୮ ■ ମୂଲ୍ୟ : ସାଧା ବନ୍ଧେଇ ଟ.୧୮୦/-) ବୋର୍ଡ଼ ବନ୍ଧେଇ : ଟ.୨୦୦/-

# Kashipur Diary (1980-85)

Author : Achyut Das ■ Published by : **Sikshasandhan,** A-12, H.B.Colony, Baramunda, Bhubaneswar - 751003, Phone : 0674-2556109 ■ First Edition : 2008 ■ Printed at : **Siksha Prakashani** , Baramunda Bhubaneswar - 3 ■ I.S.B.N -13:978-81-87982-43-2 ■ Price : Paperback Rs.180/- , Hard bound : Rs. 200/-

କାଶୀପୁର ବିକାଶ ପ୍ରକ୍ରିୟାରେ ସାମିଲ ହୋଇଥିବା
ମୋର ଅଗଣିତ ଉତ୍ସର୍ଗୀକୃତ ସହକର୍ମୀମାନଙ୍କ ହାତରେ....

*ଅଚ୍ୟୁତ ଦାସ*

# ଭୂମିକା ନୁହେଁ

ଡାଏରି ସାହିତ୍ୟସୃଷ୍ଟିର ଗୋଟିଏ ସୁପରିଚିତ ବିଭାବ । ପୃଥିବୀର ବହୁ ପରିଚିତ ଲେଖକ ଡ଼ାଏରି ରଚନା କରି ସାହିତ୍ୟକୁ ସମୃଦ୍ଧ କରିଛନ୍ତି, ସ୍ୱ ସ୍ୱ ଅବଦାନ ଦେଇଯାଇଛନ୍ତି । ଏଠି ସମସ୍ତଙ୍କ ନାଁର ତାଲିକା କରିବା ଅଦରକାରି । Prison Dairy ଠାରୁ "Notes from Carnets" ଏବଂ ଇତ୍ୟାଦି ଭିନ୍ନ ଭିନ୍ନ ନାମରେ ଏଗୁଡ଼ିକ ପରିଚିତ । ଓଡ଼ିଆ ସାହିତ୍ୟରେ ତ ଚିତ୍ତଭାଇଙ୍କ ରୋହିତର ଡ଼ାଏରି ଏବଂ ସୁରେନ୍ଦ୍ର ମହାନ୍ତିଙ୍କ ପେକିଂ ଡ଼ାଏରି ବେଶ୍ ଜଣାଶୁଣା । ଏଇ ସାହିତ୍ୟ ବିଭାବ ପରିସରରେ ଏବେ ଜଣାଶୁଣା ସମାଜକର୍ମୀ ଓ ବୁଦ୍ଧିଜୀବୀ ଶ୍ରୀ ଅଚ୍ୟୁତ ଦାସଙ୍କ କାଶୀପୁର ଡ଼ାଏରି ନୂତନ ସଂଯୋଜନ ।

ସବୁ ଡାଏରିରେ ଦେଶ, କାଳ ଓ ପାତ୍ର ତିନିହେଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ସୂଚିତ ହୋଇଥାଏ । କାଶୀପୁର ସେ ଦେଶ, କାଳ ମୁଖ୍ୟତଃ ୧୯୮୦-୮୫, ଅଚ୍ୟୁତ ବାବୁଙ୍କ ବ୍ୟକ୍ତିସତ୍ତା ଏଥିରେ ଏକତ୍ର ଗ୍ରଥିତ । ଡ଼ାଏରି କମ୍ ବା ବେଶୀ ପରିମାଣରେ ବ୍ୟକ୍ତିସତ୍ତାର ଆତ୍ମପ୍ରକାଶ ଓ ସ୍ମୃତି ସଂଚରଣ ହୋଇପାରେ । ସେମିତି ଏହା କମ୍ ବା ବେଶୀ ପରିମାଣରେ ସ୍ଥାନ ଓ ସମୟର ଚିତ୍ର ଆଙ୍କି ପାରେ । ଡ଼ାଏରି କିନ୍ତୁ ମୂଳତଃ ବ୍ୟକ୍ତିସତ୍ତାର ପରିପ୍ରକାଶ ହେବାକୁ ବାଧ । ଅର୍ଥାତ୍ ଆତ୍ମଜୀବନୀ ଆତ୍ମଚରିତର ଏହା ଏକ ଭିନ୍ନ ରୂପାୟନ । ସ୍ଥାନ ଓ କାଳ ସହ ବ୍ୟକ୍ତିସତ୍ତାର ସମ୍ପର୍କକୁ ନେଇ ଯେଉଁ ତ୍ରିଭୁଜ, ଡ଼ାଏରି ତାରି ଏକ ପରିପ୍ରକାଶ । ଡ଼ାଏରିର ବିଶ୍ୱାସନୀୟତା ବ୍ୟକ୍ତିସତ୍ତାର ଆତ୍ମନିଷ୍ଠ ଆତ୍ମସମୀକ୍ଷା ଉପରେ ନିର୍ଭରଶୀଳ । ଏହା ନିଜକୁ,ନିଜର ଅନ୍ତରାତ୍ମାକୁ ବୁଝିବାର ଆକୁଳ ସତ୍ୟନିଷ୍ଠ ପ୍ରଚେଷ୍ଟା ଏବଂ ତତ୍ସହ ପରିବେଶ, ସମୟର ସୀମିତ ପରିଚୟ ଓ ସେ ଦୁହିଁଙ୍କର ସତ୍ୟନିଷ୍ଠ ଚିତ୍ର ।

କାଶୀପୁର ଡ଼ାଏରିରେ ଅଚ୍ୟୁତ ବାବୁଙ୍କ ବ୍ୟକ୍ତିସତ୍ତା କାବ୍ୟିକ ଶୈଳୀରେ ପ୍ରତିଫଳିତ । ପାଠକ ତାଙ୍କ ବିଷୟରେ ସାଧାରଣ ଭାବେ ଅଜଣା କଥା ଶୁଣିବାରେ ସୁଯୋଗ ପାଏ । ସମାଜ ସଚେତନ ସମାଜକର୍ମୀ; ଅଗ୍ରଗାମୀର ପ୍ରତିଷ୍ଠାତା, ମାଟିକାଦୁଅର ମଣିଷର ପକ୍ଷଧର ଏ ସବୁର ଅଚ୍ୟୁତ ଦାସ ବେଶ୍ ଜଣାଶୁଣା । ଏ ସବୁକୁ ବାହ୍ୟକର୍ମ, ସାମାଜିକ ଦାୟିତ୍ୱ ସଂପାଦନ ଭାବେ ଗ୍ରହଣ କରାଯାଏ । ସେ ଭିତରେ ରହେ ଡିଲୋନିଆ, ଦି ହେଗ୍, ଦେଶ ବିଦେଶ ଯାତ୍ରା । ଅରୁଣା ଓ ବଙ୍କରଙ୍କ ଠାରୁ ଅରବିନ୍ଦ ଓ ସତ୍ୟନଗରର ନାନୀ ଯାଏ । ବହୁ ଅଧ୍ୟୟନର ତାଲିକାଠୁଁ ଆଦିବାସୀଙ୍କ ପାଇଁ ପ୍ରସ୍ତୁତ ଯୋଜନା, ତା'ର ଗୁଣ ଅବିଗୁଣ, ଦୋଷତ୍ରୁଟି ଏବଂ ବିଫଳତାର ଇତିବୃତ୍ତ ଯାଏଁ । ସେ ବିଫଳତାର ନିଦାନ ନିରୂପଣ ଓ ସେଇ ବ୍ୟାଧି ନିରାକରଣର ସୃଜନଶୀଳ ଓ ସକରାତ୍ମକ ଦୃଷ୍ଟିଭଙ୍ଗୀରୁ ସରକାରୀ ସ୍ତରର ଅଧିକାରୀଙ୍କ ସହିତ ପରିଚିତ ଓ ସରକାରୀ ଦପ୍ତରମାନଙ୍କ କାର୍ଯ୍ୟାବଳୀର ଧାରଣା ମଧ୍ୟ ସମ୍ୟକ ଆଲୋଚିତ । ଏ ସବୁ ଅନୁଷ୍ଠାନ, ଯୋଜନା ଓ ବିଫଳତାର କାରଣ ନିରୂପଣ ଓ ପ୍ରଚେଷ୍ଟାର ଇତିହାସ ଆଲୋଚନା, ବହି ଓ ସେମିନାର ବେଶ୍ ଦୀର୍ଘ । ଡ଼ାଏରିର ବିଶିଷ୍ଟତା ନେଇ ବିଚିତ୍ର ଓ ବହୁମୁଖୀ ଭୂଚିତ୍ର ଉପରେ ନୂତନ ଆଲୋକପାତ କରିବାରେ ନିଜସ୍ୱ-ଅନୁଭବର ଆତ୍ମନିଷ୍ଠ, ସହାନୁଭୂତି ସମ୍ପନ୍ନ ଦୃଷ୍ଟିଭଙ୍ଗୀରେ ହିଁ ନିହିତ । ଉଦାହରଣ ସ୍ୱରୂପ ଆଦିବାସୀ ଅଞ୍ଚଳରେ ଶିକ୍ଷାଦାନ ବିଷୟଟି । ଏ ଯାବତ୍ ଯେତେ ଯାହା କରାଯାଇଛି ବା କରାଯାଉଛି ତା ସତ୍ତ୍ୱେ କାହିଁକି ଆଦିବାସୀ ପିଲେ ସ୍କୁଲକୁ ଆଦରି ପାରୁନାହାନ୍ତି । ଆନନ୍ଦରେ ଆପଣାର କଥା କହି ପାରୁନାହାନ୍ତି ଏ ଜରୁରୀ ପ୍ରଶ୍ନ ସେ ଉଠାଇଛନ୍ତି, କାରଣ ଖୋଜିଛନ୍ତି, ସେ ଖୋଜାଲୋଡ଼ା ଭିତରେ ମୁଁ ନିଃସନ୍ଦେହରେ ଜଣେ ।

ରାକେଲ୍ କାରସନଙ୍କ କହିବା ଅନୁସାରେ "If a child is to have his inborn sense of wonder, he needs the companionship of at least one adult who can share it, rediscovering with him the joy excitement and mystery of the world we live in" ସେ "adult" ବା ବଡ଼ମଣିଷଟି ଏଠି କିଏ ? ବାପା ମାଆ ? ଶିକ୍ଷକ ? ପଡ଼ୋଶୀ ? କିଏ ? ଶିକ୍ଷା, ସର୍ବଶିକ୍ଷା ଅଭିଯାନ, ଅର୍ଥନୈତିକ ଉନ୍ନୟନ କ୍ଷେତ୍ରରେ ଶିକ୍ଷାର ଗୁରୁତ୍ୱ ଇତ୍ୟାଦି ବିଷୟ ବହୁ ଚର୍ଚ୍ଚିତ । ସେ ସବୁ ବିଷୟରେ ଆଉ ଏକ ନିଜସ୍ୱ ଦୃଷ୍ଟିଭଙ୍ଗୀ ଅଚ୍ୟୁତ ବାବୁ ଦେଇଛନ୍ତି ଆମକୁ ।

କାଶୀପୁର ଓ କଳାହାଣ୍ଡି ଓଡ଼ିଶୀ ନୃତ୍ୟ ଓ ଶ୍ରୀ ଜଗନ୍ନାଥଙ୍କ ସହ ଏବେ ଜାତୀୟ ସ୍ତରରେ ଓଡ଼ିଆର ପରିଚିତି ବା Identify ହୋଇ ସାରିଲାଣି । ସବୁ ଆତ୍ମନିଷ୍ଠ ରଚନାରେ ସ୍ଥାନଟିଏ ଖାଲି ସ୍ଥାନ ହୋଇ ରହେନି - ସେ ହୋଇଯାଏ ବ୍ୟକ୍ତିଟିଏ । ତା'ର ବ୍ୟକ୍ତିସତ୍ତାକୁ ଆମେ ଅନୁଭବ କରିପାରୁ । ଏ ଡ଼ାଏରିର କାଶୀପୁର ଜିଅନ୍ତା ମଣିଷଟିଏ ପରି ଆମ ପାଖରେ ଆସି ଛିଡ଼ା ହୁଏ । ତା'ର କ୍ଲେଶ, ଯନ୍ତ୍ରଣା, ପ୍ରଶାନ୍ତି ଓ ସ୍ୱପ୍ନ ସବୁ ଆମେ ଦେଖିପାରୁ । ସେଇ ଦେଖାଇବାର ଆନ୍ତରିକତା ଓ କଳା ବହିଟିରେ ଉପଲବ୍ଧ । ଲେଖକ ହାତଧରି ନେଇଯାଆନ୍ତି କାଶୀପୁର ନାମଧେୟ ବ୍ୟକ୍ତିର ଅନ୍ତଃସ୍ଥଳକୁ, ପ୍ରାଣ କେନ୍ଦ୍ରକୁ । ସ୍ୱଚ୍ଛ ସାବଲୀଳ ଭାଷାରେ ଖୋଲି ଦିଅନ୍ତି କାଶୀପୁରର ଆଶା ଓ ସ୍ୱପ୍ନକୁ ତଥା ତାର ଶୋଷଣକୁ କଷଣକୁ ଯାହା ପାହାଡ଼ଙ୍କ ପରି, ଉପରର ତାରାଖଚିତ ଆକାଶ ପରି ବହୁ ପ୍ରାଚୀନ । ସେ ଖୋଜିବାରେ ଶକ୍ତି ସେ ନିଶ୍ଚୟ ବେଶୀ ପାଇଥିବେ । "ଖରାଦିନେ ଭୋର ସକାଳୁ ପକ୍ଷୀମାନଙ୍କ କଳରବରୁ" "ରାତିର ଆକାଶକୁ ଚାହିଁବା ଓ ତାରମାନଙ୍କ ସହ ଏକ ନିରବ ସଂଳାପ"ରୁ ପବନ, ବାଲି ଓ ତାରାଙ୍କ ସଂବନ୍ଧ ସାହିତ୍ୟରୁ ଖୋଜିବାରୁ (କାମ୍ୟୁଙ୍କ Exile and the kingdom କଥା ବି କହି ପାରିଥାନ୍ତେ ।) ଅଳସୀ ଫୁଲର ଆଦିଗନ୍ତ ବ୍ୟାପି ହଳଦିଆ ଚାଦରରୁ, ମାଳମାଳ ଚଂପାଫୁଲଙ୍କ ମହକରୁ । ସେସବୁ ରୋମାଣ୍ଟିକ୍ ନଷ୍ଟାଲ୍‌ଜିଆ ନୁହେଁ । ସେସବୁ ହୋଇପାରେ ବ୍ୟକ୍ତିର ଉତ୍ସ; 'ସାହସର ଆବାହନୀ, ନିଜକୁ ବୁଝିବା ବାଟ ଦେଇ ଅନ୍ୟକୁ ବୁଝିବାର ନିଷ୍ଠା, ନିଜର 'ନିର୍ଜନତା ନିଃସଙ୍ଗତା'କୁ ବୁଝିବାର ପନ୍ଥା । ବହୁତ ବହିକଥା ଲେଖକ ଲେଖିଛନ୍ତି । ମୋର ପରି ଗ୍ରନ୍ଥକୀଟ ପାଇଁ ତା' ଆଦରଣୀୟ । ଦେଖିଥିବା ବିଉକେନ୍‌ହଫ ଟ୍ୟୁଲିପ୍ କିଆରି ମନକୁ ଆସିଲା, ନିୟମଗିରିର ମାଳଅପା ଓ ଥାକଥାକ ପାହାଡ଼ ଆଗକୁ ଆସିଲେ । ମୁଁ ବୁଲିଥିବା ଭଲପାଇଥିବା ବଣ୍ଡା ପାହାଡ଼, ଜୁଆଙ୍ଗପୀଢ଼ ଆଖିରେ ଭାସିଲେ ।

ଡ଼ାଏରିଟି ଉପନ୍ୟାସପରି, ପଢ଼ିବାକୁ ଖୁସି ଲାଗେ, ସ୍ଥାନ ଓ ବ୍ୟକ୍ତି ଉଭୟେ ଚରିତ୍ର ହୋଇଯାଆନ୍ତି ଡ଼ଙ୍ଗାସିଲ୍ ଓ ଲୋକାମାଝିଙ୍କ ପରି । ନିଜକୁ ଚିହ୍ନିବା ଓ କାଶୀପୁରକୁ ଚିହ୍ନାଇବାରେ ସେ ଆନ୍ତରିକତା ମୋ ପାଇଁ ବହିଟିର ଅଧିକ ଆକର୍ଷଣ । ନେଦରଲାଣ୍ଡର ଟ୍ରେନିଂ ବା ସ୍କଲାର ବା ଇନ୍‌ଷ୍ଟିଚ୍ୟୁଟ୍ ବା ପଢ଼ା ବହିଙ୍କ ଉର୍ଦ୍ଧ୍ୱରେ । ଅଗ୍ରଗାମୀର ଆରମ୍ଭ ଦିବସରୁ ଅଚ୍ୟୁତ ଦାସଙ୍କୁ ଜାଣିଥିଲି । ଥରେ ଅଧେ ଦେଖିଥିଲି ବୋଧ ହୁଏ । ଏବେ ଦୀର୍ଘକାଳ ଅନ୍ତରରେ 'ମାଟି କାଦୁଅର ମଣିଷ' ପଛ ପୃଷ୍ଠାର ଶ୍ମଶ୍ରୁଳ ଅଚ୍ୟୁତ ଦାସଙ୍କୁ ଏ ବହିଟି ମନେ ପକେଇବାର ସହାୟକ ହେଲା ।

ଭୁବନେଶ୍ୱର
ରଥଯାତ୍ରା, ୨୦୦୮

*ସୀତାକାନ୍ତ ମହାପାତ୍ର*

# ପଦେଅଧେ

କାଶୀପୁର ସମସାମୟିକ ବିକାଶ ରାଜନୀତିର ଏକ ଅଦ୍ୱିତୀୟ ପୃଷ୍ଠଭୂମି । ଏଥିପାଇଁ ପୃଥିବୀ ମାନଚିତ୍ରରେ ଏହା ବିଶେଷ ସ୍ଥାନ ପାଇଛି । ତେଣୁ ଏହା ବିଷୟରେ କିଛି ଲେଖିବାର ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେକରୁଛି ।

କାଶୀପୁରର ଅବହେଳିତ ଅତ୍ୟାଚରିତ ଓ ଶୋଷିତ ଆଦିବାସୀମାନଙ୍କର ବିକାଶ ଓ ପରିବର୍ତ୍ତନ ପାଇଁ 'ଅଗ୍ରଗାମୀ' ତଥା ଆମମାନଙ୍କର ଅବାରିତ ସମ୍ମିଳିତ ଉଦ୍ୟମ ଅବ୍ୟାହତ ରହିଛି । ଏଇ ଭିତରେ ପଚିଶ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ଅନେକ ଶୁଭେଚ୍ଛୁ ଓ ସମଭାବାପନ୍ନ ବ୍ୟକ୍ତିମାନେ ପ୍ରସ୍ତାବ ଦେଇଥିଲେ, ଅତି ବ୍ୟବସ୍ଥିତ ଢ଼ଙ୍ଗରେ ଅଗ୍ରଗାମୀର ରୌପ୍ୟ ଜୟନ୍ତୀ ପାଳନ କରିବା ପାଇଁ । ଏହି ରୌପ୍ୟ ଜୁବଲି ଉତ୍ସବ କେତେକ ଅନିବାର୍ଯ୍ୟ କାରଣ ହେତୁ ଆୟୋଜନ କରାଯାଇ ପାରିଲା ନାହିଁ । କିନ୍ତୁ ଅଗ୍ରଗାମୀକୁ ଓ କାଶୀପୁରର ଘଟଣା ପ୍ରବାହକୁ ଅଙ୍ଗେ ନିଭେଇଥିବା ଅନ୍ତରଙ୍ଗ ବନ୍ଧୁମାନେ ପ୍ରସ୍ତାବଦେଇ ଥିଲେ ଯେ, କାଶୀପୁରରେ ଅତୀତରେ ଘଟିଯାଇଥିବା କେତେକ ସ୍ମରଣୀୟ ଘଟଣା ଲୋକଲୋଚନକୁ ଅଣାଯାଉ । ଯଦି କାଶୀପୁରରେ ବ୍ୟବସ୍ଥିତ ଢ଼ଙ୍ଗରେ ସବୁକିଛି ଦଲିଲକରଣ କରାଯାଇ ଥାଆନ୍ତା ତେବେ ଦୀର୍ଘ ୨୫ ବର୍ଷର ଇତିହାସ ଲେଖିବା ସହଜ ହୋଇ ଥାଆନ୍ତା । ଆମେ ସବୁ ଯେତେ ସମାଜ କର୍ମୀ ଗାଁ ଗହଳରେ କାର୍ଯ୍ୟବ୍ୟସ୍ତ । କିଛି ଲେଖାଲେଖି କରିବା ପାଇଁ ସମୟ ମିଳେ ନାହିଁ । ତଥାପି ଯାହାକିଛି ଦଲିଲ ଏବଂ ବିବରଣୀ ସଂଗ୍ରହ ହୋଇଥିଲା, ୨୦୦୦ ଡ଼ିସେମ୍ବର ମସିହାରେ କାଶୀପୁରର ମାଇକଞ୍ଚ ଗୁଳିକାଣ୍ଡକୁ ନେଇ ଆମ ଉପରେ ଯେଉଁ ଆକ୍ରମଣ ହୋଇଥିଲା ତାହା ନଷ୍ଟ ହୋଇଯାଇଛି । ଏଣୁ ଅତୀତର ଅନେକ ତଥ୍ୟ ଓ ଅନୁଭୂତି ପୁନଶ୍ଚ ସଂଗ୍ରହ କରିବା ସମ୍ଭବ ହୋଇନଥିଲା ।

୧୯୮୦-୮୫ ପର୍ଯ୍ୟନ୍ତ ମୁଁ ଜଣେ ସମାଜ କର୍ମୀ ଏବଂ ସଚେତନ ନାଗରିକ ହିସାବରେ କାଶୀପୁରର ରାଜନୈତିକ,ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ପରିବେଶ ସହ ନିବିଡ଼ ଭାବରେ ସାମିଲ୍ ହୋଇଥିଲି । ସେତେବେଳର ପ୍ରତ୍ୟେକ ଦିନର ଅନୁଭୂତି ଓ ଆତ୍ମନିରୀକ୍ଷଣ ମୋର ଜୀବନରେ ଅନେକ ପ୍ରଭାବ ପକାଇଛି । ଗୋଟିଏ ପାର୍ଶ୍ୱରେ ଏକ ଶିଶୁ ସଂସ୍ଥାକୁ ଗଢ଼ି ତୋଳିବା ଏବଂ ଅନ୍ୟ ପକ୍ଷରେ ବୌଦ୍ଧିକତାର ବହୁମୁଖୀ ଅନ୍ୱେଷଣ ମୋ ଜୀବନରେ ନୂତନ ଦିଗ୍ ଦିଗନ୍ତର ସୂତ୍ରପାତ କରିଥିଲା । ପ୍ରତ୍ୟେକଟି ମୁହୂର୍ତ୍ତ ମୋ ପାଇଁ ଆଣି ଦେଉଥିଲା ନୂଆ ନୂଆ ଆହ୍ୱାନ । ସମ୍ଭବତଃ ସେଇଥିପାଇଁ ଅନେକ ଘଟଣା ମନଭିତରେ ଲିପିବଦ୍ଧ ହୋଇରହିଛି । ଯଦିଓ ଘଟଣା କ୍ରମର ତାରିଖ ଓ ସମୟ ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲିଖିତ ହୋଇନାହିଁ । କାଶୀପୁର ଡ଼ାଏରି ପାଞ୍ଚବର୍ଷର ଏକ ଆବେଗମୟ ଆଲେଖ୍ୟ ବୋଲି ମୁଁ ମନେକରେ ।

କାଶୀପୁର ଡ଼ାଏରିକୁ ସଜାଡ଼ି ଏବଂ ଘଟଣାବଳୀକୁ ସଠିକ୍ ଭାବରେ ଉପସ୍ଥାପନା କରି ପ୍ରତି ସପ୍ତାହରେ ଦୈନିକ ସମ୍ବାଦପତ୍ର 'ପର୍ଯ୍ୟବେକ୍ଷକ'ରେ ପ୍ରକାଶ କରାଇବା ଏକ କଷ୍ଟକର ବ୍ୟାପାର ହୋଇପଡ଼ିଥିଲା । କିନ୍ତୁ ନିୟମିତ ଭାବରେ ଲେଖିବା ପାଇଁ ଅନେକଙ୍କ ଠାରୁ ପ୍ରେରଣା ମିଳିଥିଲା । ସେମାନଙ୍କ ମଧ୍ୟରେ ଶ୍ରୀମତୀ ବିଦ୍ୟା ଦାସ, ଶ୍ରୀ ପ୍ରଫୁଲ୍ଲ ବେହେରା, ଶ୍ରୀ ଅରବିନ୍ଦ

ବେହେରା, ଶ୍ରୀ ସତ୍ୟପ୍ରକାଶ ନନ୍ଦ ଓ ଶ୍ରୀ ଯତୀନ୍ଦ୍ର କୁମାର ନାୟକ ଆଦିଙ୍କ ଅବଦାନ ଉଲ୍ଲେଖନୀୟ । ଏମାନେ 'ପର୍ଯ୍ୟବେକ୍ଷକ' ରେ ପ୍ରକାଶିତ ଲେଖାଗୁଡ଼ିକ ଆଗ୍ରହରେ ପଢ଼ିବା ସହିତ ରଚନାତ୍ମକ ସମାଲୋଚନା ମଧ କରୁଥିଲେ । ସେମାନଙ୍କୁ ଭଲ ଲାଗୁଥିବା ଲେଖାଗୁଡ଼ିକୁ ଅନ୍ୟମାନଙ୍କୁ ପଢ଼ିବା ପାଇଁ ଉତ୍ସାହିତ କରୁଥିଲେ । ପର୍ଯ୍ୟବେକ୍ଷକର ସମ୍ପାଦନା ମଣ୍ଡଳୀ ମଧ ସୂଚନା ଦେଉଥିଲେ, ଯେ ପାଠକମାନେ କାଶୀପୁର ଡ଼ାଏରିକୁ ଆଗ୍ରହ ସହ ପଢ଼ି ମନ୍ତବ୍ୟ ପ୍ରଦାନ କରୁଛନ୍ତି । ପର୍ଯ୍ୟବେକ୍ଷକର ସମ୍ପାଦକ ଡ଼ଃ ପବିତ୍ର ମୋହନ ସାମନ୍ତରାୟଙ୍କ ନିଃସର୍ତ୍ତ ସମର୍ଥନ ପାଇଁ ତାଙ୍କ ପାଖରେ କୃତଜ୍ଞତା ଜ୍ଞାପନ କରୁଛି । ବେଳେବେଳେ ମଧ ପାଠକମାନଙ୍କ ପାଖରୁ ପତ୍ର ମାଧମରେ ଲେଖାଗୁଡ଼ିକ ପଢ଼ି ଆସ୍ଥା ଓ ଆଗ୍ରହ ସୂଚକ ସମର୍ଥନ ମିଳୁଥିଲା । ସମ୍ମାନୀୟ ଚିତ୍ତଭାଇ (ପ୍ରଫେସର ଚିତ୍ତରଂଜନ ଦାସ) ଯିଏ କି ଆମ ସହ ମୂଳରୁ ସଂଶ୍ଳିଷ୍ଟ, କାଶୀପୁର ଡ଼ାଏରି ଲେଖିବା ମୋର ଏକ ଦାୟିତ୍ୱ ବୋଲି ବାରମ୍ବାର ଚେତାଇ ଦେଉଥିଲେ ।

ଲେଖାଗୁଡ଼ିକୁ ସଜାଡ଼ିବା ଓ ପଠନଯୋଗ୍ୟ କରିବା ପାଇଁ ଅନେକ ବନ୍ଧୁ ସ୍ୱେଚ୍ଛାରେ ଆଗଭର ହୋଇଥିଲେ । ସେମାନଙ୍କ ଭିତରେ ଡ଼ଃ ଉଦ୍ଧବ ଚରଣ ନାୟକ, ଶ୍ରୀ ବିପିନ ବାରିକ ଓ ଶ୍ରୀ ନାରାୟଣ ଜେନା ଅନ୍ୟତମ । ଏପରିକି ଡ଼ିଟିପି କରୁଥିବା ଶ୍ରୀମତୀ ସୁନୀତା ସାହୁ ମଧ ଓଡ଼ିଆ ଅଭିଧାନ ଦେଖି ବେଳେବେଳେ ବନାନ ଶୁଦ୍ଧି କରିଛନ୍ତି । ସେମାନଙ୍କର ଅବଦାନ ଭୁଲି ହେବ ନାହିଁ ।

କାଶୀପୁର ଡ଼ାଏରି (୧୯୮୦-୮୫) ପାଇଁ ଜ୍ଞାନପୀଠ ପୁରସ୍କାର ବିଜେତା ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ କବି ଓ ପ୍ରଶାସକ ଡ଼କ୍ଟର ସୀତାକାନ୍ତ ମହାପାତ୍ର ପୁସ୍ତକଟିର ମୁଖବନ୍ଧ ଲେଖି ଦେବା ପାଇଁ ମୁଁ ଏବଂ ମୋର ବନ୍ଧୁମାନେ ଅନୁରୋଧ କରିଥିଲୁ । ଓଡ଼ିଶାର ଆଦିବାସୀ ଅଞ୍ଚଳର ବିଭିନ୍ନ ସମସ୍ୟାକୁ ହୃଦୟଙ୍ଗମ କରିଥିବା ଯେଉଁ ଅଳ୍ପ କେତେଜଣ ବ୍ୟକ୍ତି ଅଛନ୍ତି, ଡ଼କ୍ଟର ମହାପାତ୍ର ସେମାନଙ୍କ ଭିତରେ ଅନ୍ୟତମ । ଏହି ଲେଖାଗୁଡ଼ିକର ଅସଲ ମର୍ମ ସେ ନିଜେ ବୁଝିପାରିବେ ବୋଲି ମୋର ଦୃଢ଼ ବିଶ୍ୱାସ ଥିଲା ଏବଂ ଏହା ଏକ ଗୌରବର କଥା ଯେ ଅନେକ ବ୍ୟସ୍ତତା ଥାଇ ସେ ଏକ ବଳିଷ୍ଠ ଭୂମିକା ଲେଖି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଛନ୍ତି । ସେଥିପାଇଁ ତାଙ୍କୁ ବିଶେଷ ଧନ୍ୟବାଦ ଜଣାଉଛି ।

'ଶିକ୍ଷାସନ୍ଧାନ'ର ସଦସ୍ୟ ସଂପାଦକ ବନ୍ଧୁ ଶ୍ରୀ ଅନିଲ ପ୍ରଧାନ, ପର୍ଯ୍ୟବେକ୍ଷକରୁ କାଶୀପୁର ଡ଼ାଏରି ନିୟମିତ ପଢ଼ି ବହିଟିର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଛନ୍ତି । ଅନିଲ ଅତୀତରେ କାଶୀପୁର ଅନୁଭୂତି ଓ ଘଟଣା ପ୍ରବାହ ସହିତ ବିଶେଷ ଭାବରେ ପରିଚିତ । ଏଥିପାଇଁ ତାଙ୍କର ଆଗ୍ରହ ଉଲ୍ଲେଖନୀୟ ।

*ଅଗ୍ରଗାମୀ*                                                  *ଅଚ୍ୟୁତ ଦାସ*

*କାଶୀପୁର, ରାୟଗଡ଼ା*

୧

# କାଶୀପୁର ଡାଏରି

୧୯୮୦ ମସିହା ଜୁନ୍ ମାସ । ଆଜିକୁ ପ୍ରାୟ ୨୭ବର୍ଷ ତଳେ ଜଣେ ଦୁଃସାହସିକ ଓ ଦୃଢପ୍ରତିଜ୍ଞ ସାମାଜିକ କର୍ମୀଭାବେ ମୁଁ କାଶୀପୁରରେ ପହଞ୍ଚିଥିଲି । ଜଣେଅଧେ ବନ୍ଧୁ ଓ ଶୁଭେଚ୍ଛୁ ମୋତେ କାଶୀପୁର କେମିତି, କାଶ୍ମୀର ଭଳି ସୁନ୍ଦର ଓ ସେଇଠି କେମିତି ଚମ୍ପା ଗଛର ଅରଣ୍ୟ ସବୁ ମହକିତ କରୁଛି ତାହାର ଏକ ସ୍ଥୁଳଧାରଣା ଦେଇଥିଲେ । କୁଳୁକୁଳୁ ନାଦରେ ବହିଯାଉଥିବା ଅସଂଖ୍ୟ ଝରଣା ଓ ପାହାଡ଼ ପର୍ବତ ଘେରା ଆଦିବାସୀଙ୍କ ଇଲାକା ଯେକୌଣସି ମଣିଷକୁ ଆକର୍ଷିତ କରିବ । କାଶୀପୁର କୁଆଡ଼େ ଆମ୍ବ-ପଣସ ଓ ଦହି-ଛେନା-ଘିଅର ଦେଶ । କିଏ ଥରେ ସେଇଠି ପହଞ୍ଚିଲେ ଆଉ ଫେରିବାକୁ ମନ କରିବନାହିଁ । ମୁଁ ଉଲ୍ଲସିତ ହୋଇଥିଲି । କାଶୀପୁର ସହ ସଂଶ୍ଳିଷ୍ଟ କେତେଜଣ ସରକାରୀ ପଦସ୍ଥ ଅଫିସରଙ୍କ ସହ ମୋର ବାର୍ତ୍ତାଳାପ ମଧ୍ୟ ହୋଇଥିଲା । ସମସ୍ତେ ଏକା ସ୍ୱରରେ କହୁଥିଲେ, "ତମେ କାଶୀପୁର ଯାଅ । ତମକୁ ଖୁବ୍ ଭଲ ଲାଗିବ । କାଶୀପୁର ତମଭଳି ଜଣେ ଲୋକର ଅପେକ୍ଷାରେ ଅଛି । ଆଦିବାସୀ ଅଞ୍ଚଳ କିଛି ମାତ୍ରାରେ ଆଲୋକିତ ହେବ ।" ମୁଁ କୋରାପୁଟ ଜିଲ୍ଲାର 'ଡ଼ିଷ୍ଟ୍ରିକ୍ଟ ଗେଜେଟିୟର' ଉପରେ ନଜର ପକାଇଥିଲି କାଶୀପୁର ଆସିବା ପୂର୍ବରୁ । ଐତିହାସିକ ଓ ସାଂସ୍କୃତିକ ପରମ୍ପରା ସେଠାରେ କ'ଣ ଅଛି ଜାଣିବାକୁ ଖୁବ୍ ତତ୍‌ପର ହୋଇଥିଲି । ଆହୁରି ମଧ୍ୟ ତତ୍‌ପର ହୋଇଥିଲି ଜାଣିବାକୁ ଆଦିବାସୀଙ୍କ ବିଷୟରେ; ସେମାନଙ୍କର ଜୀବନ ଓ ଜୀବିକା, ସେମାନଙ୍କର ଜଙ୍ଗଲ, ପରିବେଶ, ଜଳବାୟୁ, ଖାଦ୍ୟବସ୍ତ୍ର, ବାସଗୃହ ତଥା ସାମଗ୍ରୀକ ଭାବେ କୃଷି, ପୋଡୁଚାଷ, ଭାଷା ଓ ଲୋକଗୀତ, ଗପ, ନୃତ୍ୟ ଓ ସଂଗୀତ । କେଜାଣି କାହିଁକି ଭେରିଅର୍ ଏଲୱିନ୍‌ଙ୍କ ଆଦିବାସୀମାନଙ୍କ ଉପରେ ବିଭିନ୍ନ ବହି ଓ ଶ୍ରୀଯୁକ୍ତ ଚିତ୍ତରଂଜନ ଦାସ (ଚିତ୍ତ ଭାଇ)ଙ୍କ 'ଗଞ୍ଜାମ ମାଳରେ ସାତଦିନ' ମୋ ମନରେ ନୂତନ ପ୍ରେରଣା ଅଙ୍କୁରିତ କରିବାରେ ଯଥେଷ୍ଟ ସହାୟକ ହୋଇଥିଲା ।

କାଶୀପୁର ତଥା ଓଡ଼ିଶାର ଦକ୍ଷିଣ ପଶ୍ଚିମ ଜିଲ୍ଲାମାନଙ୍କୁ ପ୍ରତ୍ୟକ୍ଷ ଭାବେ ଅଧ୍ୟୟନ କରିବା ପୂର୍ବରୁ ମୁଁ ଯଥେଷ୍ଟ ପ୍ରସ୍ତୁତି କରିସାରିଥିଲି । ଗୋପୀ ମହାନ୍ତିଙ୍କ 'ପରଜା' ଓ 'ଅମୃତର ସନ୍ତାନ' ବହି ଦୁଇଟି ଥିଲେ ମୋର କାଶୀପୁର ଯାତ୍ରାର ମାର୍ଗଦର୍ଶକ । ମୋର ବନ୍ଧୁମାନେ ମୋତେ ଥଟ୍ଟାକରି କହୁଥିଲେ ମୁଁ କୁଆଡ଼େ 'ଇନ୍‌କ୍ୟୁରେବଲ୍ ରୋମାଣ୍ଟିକ୍' । ନହେଲେ କାହିଁକି କାଶୀପୁର ଯିବାକୁ ମନ ବଳାନ୍ତି ?

ସେତେବେଳେ କାଶୀପୁର ଅବିଭକ୍ତ କୋରାପୁଟ ଜିଲ୍ଲାର ଏକ ଦୁର୍ଗମ ଅଞ୍ଚଳ । ରାୟଗଡ଼ା ହେଉଛି ଏକ ସବ୍‌ଡ଼ିଭିଜନ୍ । ରାୟଗଡ଼ାରେ ଅଛି ଅନେକ ସରକାରୀ ଅଫିସ୍ । ରେଳଷ୍ଟେସନ ଥିବାରୁ ଏହା ବ୍ୟବସାୟର ଗୋଟିଏ ମୂଳକେନ୍ଦ୍ର । ରାୟଗଡ଼ାରୁ କାଶୀପୁର ୭୦ କିଲୋ ମିଟର ଦୂର । ସକାଳେ ଓ ଅପରାହ୍ଣରେ ସରକାରୀ ପରିବହନର ବସ୍ ଯାଏ । ବର୍ଷର ଅନେକ ଦିନ ଅପରାହ୍ଣ ବସ୍‌ଟି କାଶୀପୁରରେ ପହଞ୍ଚିପାରେ ନାହିଁ । ଗଲେ ବାଟରେ କେଉଁଠି ନା କେଉଁଠି ଅଟକି ଯାଏ । ଯାତ୍ରୀମାନେ ଖୁବ୍ ହଇରାଣ ହୁଅନ୍ତି ବୋଲି ମୋର ବନ୍ଧୁମାନେ ମୋତେ ସତର୍କ କରିଦେଇଥିଲେ । ରେଭେନ୍‌ସା କଲେଜରେ ମୋର ସହପାଠୀ ଓ ରୁମ୍‌ମେଟ୍ ଥିବା ଡ଼ଃ ଅଶୋକ ମହାନ୍ତି ରାୟଗଡ଼ାରେ ପୋଷ୍ଟିଂ ହୋଇଥାଆନ୍ତି । କାଶୀପୁରକୁ ବହୁ ସମୟରେ ଡ଼େପୁଟେସନ୍‌ରେ ଯାଆନ୍ତି ବୋଲି ଅନ୍ୟ ବନ୍ଧୁମାନେ ସୂଚନା ଦେଇଥିଲେ । ମୋର ଆଶାଥିଲା, କାଶୀପୁର ଯିବା ଆଗରୁ ତାଙ୍କସହ ଦିନେ ଦୁଇଦିନ କାଟିବି । ଅନେକ କିଛି ତଥ୍ୟ ସଂଗ୍ରହ କରିବି । କିନ୍ତୁ ମୁଁ ରାୟଗଡ଼ା ପହଞ୍ଚିଲା ବେଳକୁ ଡାକ୍ତର ବନ୍ଧୁ ଛୁଟିରେ ଥିଲେ । ମୋତେ ଲଜ୍‌ରେ ରାତି କାଟିବାକୁ ପଡ଼ିଥିଲା । ରାୟଗଡ଼ାରେ ତେଲୁଗୁମାନଙ୍କର ଅଭୂତପୂର୍ବ ପ୍ରଭାବ ମୁଁ ଲକ୍ଷ୍ୟ କରୁଥିଲି ଓଡ଼ିଆରେ ଅତି ସନ୍ତର୍ପଣରେ କଥାବାର୍ତ୍ତା ହେଉଥିବା ବ୍ୟକ୍ତିମାନଙ୍କୁ ସହଜରେ ଚିହ୍ନି ହେଉଥିଲା । ଓଡ଼ିଆମାନେ କୁଆଡ଼େ ସେଠାରେ ସଂଖ୍ୟାଲଘୁ । ସେମାନେ ଓଡ଼ିଆ ଜାଣି ମଧ୍ୟ ତେଲୁଗୁରେ କଥା ହୁଅନ୍ତି । ଏ କଥା ମୋର ବନ୍ଧୁମାନେ ମୋତେ ସୂଚନା ଦେଇଥିବାରୁ ମୁଁ ବେଶି ଆଶ୍ଚର୍ଯ୍ୟ ହେଲିନାହିଁ । ଲଜ୍‌ଟି ତେଲୁଗୁ ଲଜ୍ ଥିଲା । ବାୟୁ ଚଳାଚଳର ବ୍ୟବସ୍ଥାନାହିଁ । କାଶୀପୁର ବସ୍ ସକାଳ ୫ଟାରେ ପହଞ୍ଚିଯାଏ ବୋଲି ମୁଁ ତା'ଆଗ ଦିନ ସଂଧ୍ୟାରେ ବସ୍‌ଷ୍ଟାଣ୍ଡ ଯାଇ ଖବର ନେଇଥିଲି ।

ମୁଁ ସକାଳ ସାଢ଼େ ଚାରିଟା ବେଳକୁ ବସ୍‌ଷ୍ଟାଣ୍ଡରେ ପହଞ୍ଚି ଯାଇଥିଲି... । ପ୍ରସ୍ତୁତି ଭିତରେ ଥିଲା ମୋ ପିଠିରେ ଆମେରିକାନ୍ ହାଭରସ୍ୟାକ୍ (Haversack), ହାତରେ ଏକ ଶସ୍ତା ଋଷିୟାନ୍ କ୍ୟାମେରା । ମୁଁ ବ୍ଲୁ ଜୀନ୍‌ସ ପ୍ୟାଣ୍ଟ ପିନ୍ଧିବାକୁ ଭଲପାଉଥିଲି ସେସମୟରେ । ପାଦରେ ହଣ୍ଟର ଯୋତା । ଏଇଭଳି ବେଶପୋଷାକ ନପିନ୍ଧିଲେ ଜଣେ କୁଆଡ଼େ ପାର୍ବତୀୟ ଅଞ୍ଚଳରେ ଆଡ୍‌ଭେଞ୍ଚରର୍ ବା ଦୁଃସାହସିକ ଆବିଷ୍କାରକ ହୋଇପାରିବନାହିଁ ବୋଲି ଏକ ଅଭୂତପୂର୍ବ ଚିନ୍ତାଧାରା ମୋତେ ଗ୍ରାସ କରିଥିଲା । ରାୟଗଡ଼ା ବସ୍‌ଷ୍ଟାଣ୍ଡରେ ମୁଁ ଏକ ନୂତନ ଜୀବ ବୋଲି ନିଜକୁ ଉପସ୍ଥାପିତ କରୁଥିଲି । ବସ୍ ଆସି ଷ୍ଟାଣ୍ଡରେ ପହଞ୍ଚିଲା ସକାଳ ଆଠଟା ବେଳେ । କାଶୀପୁର ଯାତ୍ରୀରେ ଭରପୂର । ବସ୍‌ଟି ଷ୍ଟେସନ୍ ଆର୍.ଏମ୍.ଏସ୍.ରୁ ଡ଼ାକ ଆଣି କାଶୀପୁର ନିଏ । ଏଥିପାଇଁ ସବୁଦିନେ ବିଳମ୍ବ ହୁଏ । କାଶୀପୁର ଯାତ୍ରୀମାନେ ଏକଥା ଜାଣିଥିବାରୁ ଷ୍ଟେସନ୍‌ରେ ଭିଡ଼ ଜମାନ୍ତି ଓ ବସ୍ ଆସିଲା ମାତ୍ରକେ ଦୌଡ଼ନ୍ତି ସିଟ୍ ଅଧିକାର କରିବାକୁ । ବସ୍‌ଷ୍ଟାଣ୍ଡର ଅପେକ୍ଷାରତ ଯାତ୍ରୀମାନେ ଆଉ ସିଟ୍ ପାଆନ୍ତିନାହିଁ । ମୋର ଭାଗ୍ୟ ମଧ୍ୟ ସେହିଭଳିଥିଲା । ସେଦିନ କାଶୀପୁର ବସ୍‌ରେ ବସିବା ପାଇଁ ମୋତେ ଜାଗା ମିଳିଲା ନାହିଁ । ମୁଁ ଦୃଢ଼ନିଶ୍ଚିତ ହୋଇଥିବାରୁ କାଶୀପୁର ବସ୍‌ରେ ଧସେଇ ପଶିଥିଲି । କିନ୍ତୁ ମୋର ବେଶଭୂଷା ଦେଖି କଣ୍ଡକ୍ଟର ମହାଶୟ ସଦୟ ହେଲେ । ମୋତେ ବସିବା ପାଇଁ ତାଙ୍କ ପାଖରେ

ଥିବା କ୍ଲିନରର ଜାଗାଟି ଦେଲେ । ମୁଁ ଆଗପଛ ସବୁଆଡ଼କୁ ନଜର ପକାଇ ସେଦିନ ମୋର କାଶୀପୁର ଯାତ୍ରା ଆରମ୍ଭ କରିଥିଲି । ବସ୍‌ସାରା ଯେତେ ଯାତ୍ରୀଥିଲେ ତାଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଦଳେ ଥିଲେ ଧୋତିକୁର୍ତ୍ତା ପିନ୍ଧିଥିବା ଧୋବଧାଉଳିଆ ମଣିଷ । ଆଉ ଦଳେ ଥିଲେ ଆଣ୍ଠୁ ଲୁଚୁନଥିବା ମଇଳା ଧୋତି ପିନ୍ଧା ମଣିଷ । ଦେହ ପ୍ରାୟ ଫୁଙ୍ଗୁଳା । କାନରେ ଖୋସିଛନ୍ତି ଧୁଙ୍ଗିଆ ପିକା । ଆଖି ଭିତରକୁ ପଶିଯାଇଛି । ଛାତିରେ ହାଡ଼ ଗଣି ହେଉଛି । ଏକ କର୍କଶ ଓ ନୁଖୁରା ଚେହେରା । ମୁଁ ଜାଣିପାରିଲି ଯେ ସେମାନେ କାଶୀପୁରର ଆଦିବାସୀ ନିଶ୍ଚିତ । ମୁଖମଣ୍ଡଳ, ନାକ, ମୁଣ୍ଡର ନୁଖୁରା ବାଳ ଓ ଶରୀର ଗଠନ ଦେଖିଲା ମାତ୍ରକେ ଜଣେ ସହଜରେ ଜାଣିଯିବ ଏମାନେ କିଏ । ଏଥିପାଇଁ ନୃତତ୍ତ୍ୱର ଛାତ୍ର ହେବା ଅନାବଶ୍ୟକ । ମୁଁ ଲୋକମାନଙ୍କର କଥାବାର୍ତ୍ତାକୁ ଗୁରୁତ୍ୱର ସହ ଶୁଣୁଥିଲି । କିଏ ରାୟଗଡ଼ା ଆସିଛି କେଶ୍ ମକଦ୍ଦମା ବିଷୟରେ ଓକିଲ ସହ ପରାମର୍ଶ କରିବା ପାଇଁ । ଆଉ କିଏ ଆସିଛି ରୋଗ ବେମାରିରେ ପଡ଼ିଥିବା କୁଟୁମ୍ବ ଲୋକଙ୍କୁ ସାହାଯ୍ୟ କରିବା ପାଇଁ । ଆଉ କିଏ ଆସିଛି କାଶୀପୁରକୁ ନିୟନ୍ତ୍ରଣ କରୁଥିବା ରାଜନୈତିକ ନେତାମାନଙ୍କ ସହ ପରାମର୍ଶ କରିବାକୁ । ଅନେକ କିନ୍ତୁ ଆସିଛନ୍ତି ବ୍ୟବସାୟ ଓ ବେପାର ସଂକ୍ରାନ୍ତରେ । ବସ୍‌ଟି ମଧ୍ୟ ଉପର ତଳ ମାଲ୍‌ରେ ଭରିଯାଇଛି । ସପ୍ତାହରେ ପ୍ରତ୍ୟେକ ଦିନ କେଉଁଠି ନା କେଉଁଠି ହାଟ ବସୁଛି । ସେଦିନ ବୁଧବାର-କାଶୀପୁର ହାଟ । ରାୟଗଡ଼ାରୁ ଅନେକ ଜିନିଷ ଯାଉଛି କାଶୀପୁର ବଜାରକୁ - ଶୁଖୁଆ, ଲଙ୍କା, ଲୁଗାପଟା, ଧୁଆଁପତ୍ର, ଗୁଡ଼ାଖୁ ଓ ଅନ୍ୟାନ୍ୟ ଜିନିଷ । ବେପାରୀମାନେ ବସ୍‌ଟିକୁ ଅପହରଣ ଯେମିତି କରିଛନ୍ତି । ଆଗଧାଡ଼ିରେ ବସିଥାଆନ୍ତି ସେମାନେ । କୋଳାହଳ ବଢ଼ାଇବାରେ ସେମାନେ ମୁଖ୍ୟ ଭୂମିକା ଗ୍ରହଣ କରିଥାଆନ୍ତି । ବସ୍‌ରେ ଯାଇ କାଶୀପୁରର ପ୍ରତ୍ୟେକ ସାପ୍ତାହିକ ହାଟରେ ବ୍ୟବସାୟ କରୁଥିବା ବେପାରୀମାନଙ୍କୁ ସମସ୍ତେ ଚିହ୍ନନ୍ତି ଯେମିତି ସେମାନେ ସତରେ ବସ୍‌ର ମାଲିକ୍ ।

ରାୟଗଡ଼ା-କାଶୀପୁର ବସ୍ ଶେଷରେ ସାଢ଼େ ୯ଟା ବେଳକୁ ରାୟଗଡ଼ା ଛାଡ଼ିଲା । କେଇ ମିନିଟ୍ ଭିତରେ ପଡ଼ିଲା ଜୟପୁର ସୁଗାର ଫାକ୍‌ଟ୍ରୀ । ତାକୁ ଲାଗି ଫେରୋମାଙ୍ଗାନିଜ୍ କାରଖାନା । ଧୂଆଁ ଓ ଗନ୍ଧରେ ଆଖିନାକ ବନ୍ଦ ହୋଇଯାଉଥାଏ । ଚିନି କଳଟିର ମୁଖ୍ୟ ଉତ୍ପାଦନ ସାମଗ୍ରୀ ହେଉଛି ଦେଶୀମଦ । ରାୟଗଡ଼ାର ଲୋକେ କେମିତି ସହ୍ୟ କରିପାରୁଛନ୍ତି ଏ ଗନ୍ଧକୁ ଓ ଅସ୍ୱାସ୍ଥ୍ୟକର ପରିବେଶକୁ ବୁଝି ହେଉନଥିଲା । ତା'ପରେ ସବୁ ଝରଣାମାନ ଅତିକ୍ରମ କରିବାକୁ ହେଲା । ଅତି ନିମ୍ନ ଉଚ୍ଚତାର ପୋଲସବୁ ଯାହାକୁ କଜ୍‌ୱେ ବୋଲି କୁହାଯାଏ । ପ୍ରାକ୍ ମୌସୁମୀ ବର୍ଷା ଆସି ଏ ପୋଲକୁ ବୁଡ଼ାଇ ଦେଇଛି, ତାହା କାଠିକୁଟା, ଗଛପତ୍ରର ଚିହ୍ନରୁ ଆଭାସ ମିଳୁଥାଏ । ଏହିଭଳି ୧୪-୧୫ କିଲୋ ମିଟର ଅତିକ୍ରମ କଲାପରେ ଆସିଲା ଗୁମ୍ମା । ଘଣ୍ଟାଏ ଏଭିତରେ ବିତିଗଲାଣି । ସେଇଠି ଚା'ପିଇବା ପାଇଁ ଡ୍ରାଇଭର୍, କଣ୍ଡକ୍ଟର୍ ଓ ଯାତ୍ରୀମାନେ ଚାହିଁଲେ । ଏଠାରୁ ଗୁମ୍ମାଘାଟି ପଡ଼ିବ ବୋଲି ମୋତେ କଣ୍ଡକ୍ଟର କହିଲେ ଆଉ ମୋ' କ୍ୟାମରାରେ କିଛି ଫୋଟୋ ଉଠାଇବା ପାଇଁ ଅନୁରୋଧ କଲେ । ଗୁମ୍ମାରେ କେତୋଟି ମାତ୍ର କୁଡ଼ିଆ ଘର । ଦୁଇ-ତିନୋଟି ଚା'ଦୋକାନ । ବିଜୁଳି ବିଭାଗର

ଟାଓ୍ବାର ଲାଇନ୍‌ର ରକ୍ଷଣାବେକ୍ଷଣ ପାଇଁ କେତେକ କର୍ମଚାରୀଙ୍କ ବାସଗୃହ ଛାଡ଼ିଦେଲେ କେବଳ ପାହାଡ଼ ଓ ସବୁଜିମା ଛଡ଼ା ଆଉ ସେଠାରେ କିଛି ନଥିଲା । ଅବଶ୍ୟ କୃଷ୍ଣଚୂଡ଼ା ଫୁଲ ଜୁନ୍ ମାସରେ ରଙ୍ଗବୈଭବର ଏକ ଝଲକ୍ ସୃଷ୍ଟି କରିଥିଲା । ଯାତ୍ରୀମାନେ କେବଳ ଚଢୁଥାଆନ୍ତି । କେହି ଓହ୍ଲେଇବା ମୁଁ ଲକ୍ଷ୍ୟ କରିନାହିଁ । ସେଦିନ ହେଉଛି କାଶୀପୁର ବଜାର । ସମସ୍ତଙ୍କ ଯାତ୍ରା କାଶୀପୁର ଆଡ଼କୁ । ଗୁମ୍ଫାଘାଟିଟି ପାଖାପାଖି ୨୦୦୦ଫୁଟ ଉଚ୍ଚ । ପର୍ବତ ଓ ଉପତ୍ୟକାର ଭିନ୍ନତା ସେଇଠି ଦେଖି ହେଉଥାଏ । ରାୟଗଡ଼ାର ତାପମାତ୍ରାର ଜ୍ୱାଳା ଘାଟି ଉପରେ ଉପଶମ ହେଉଥାଏ । ଘାଟି ଚଢ଼ିଲା ବେଳେ ବସ୍‌ଟି ଉଠି ପାରିଲା ନାହିଁ ସମସ୍ତ ଯାତ୍ରୀଙ୍କୁ ଓହ୍ଲେଇ ଠେଲିବାକୁ ପଡ଼ିଥିଲା । ଗୁମ୍ଫାଘାଟି ପରେ କୁମ୍ଭିକୋଟା ଓ ତା'ପରେ ରୂପ୍‌କୋନା ଆସିଲା । ସେତେବେଳକୁ ସମୟ ପ୍ରାୟ ସାଢେ ୧୧ଟା । ଏଠାରେ ଡ୍ରାଇଭର୍ ଓ କଣ୍ଡକ୍ଟର୍‌ମାନଙ୍କୁ ଜଳଖିଆ (ଇଡ୍‌ଲି ଚଟଣୀ) ଚା'ଦିଆଗଲା । ଯାତ୍ରୀମାନେ ମଧ୍ୟ ଉପଭୋଗ କରୁଥିଲେ । କେତେକ ନୂତନ ଯାତ୍ରୀ ବସ୍ ଭିତରେ ଖୁନ୍ଦିହୋଇ ଚଢ଼ିଲେ । କିଏ ଧରିଥିଲା ସାଙ୍ଗରେ ଛେଳି ତ ଆଉ କିଏ ହାତରେ ଧରିଥିଲା କୁକୁଡ଼ା । ସମସ୍ତଙ୍କ ପାଇଁ ଜାଗା କରାଗଲା ବସ୍ ଭିତରେ । କ୍ଲିନର୍‌ଙ୍କୁ ଏଥିପାଇଁ ସାମାନ୍ୟ ପରିଶ୍ରମ କରିବାକୁ ପଡ଼ିଲା । ତା'ପରେ ଆସିଲା ଟିକିରି । ଏଠାରେ ବି ବଜାର ବସେ ଶୁକ୍ରବାର ଦିନ । ଜଣେ ଦୁଇଜଣ ବେପାରୀ ସେମାନଙ୍କର ଜିନିଷ ଓହ୍ଲାଇଲେ । ସମୟ ଥିବାରୁ ମୁଁ ମଧ୍ୟ ଓହ୍ଲାଇ ଦେଖିଲି । କିଏ ଜଣେ କହିଲା ଯେ ଟିକିରିରେ ରହନ୍ତି ରାଣୀ । ଏଠାରେ ମଧ୍ୟ ରଥଯାତ୍ରା ଓ ଦଶହରା ପର୍ବ ଆଦିବାସୀମାନେ ଆଡ଼ମ୍ବରରେ ଆୟୋଜନ କରନ୍ତି । ରଥଯାତ୍ରା ପାଖେଇ ଆସୁଥିବାରୁ ଏକ ଭଗ୍ନପ୍ରାୟ ରଥ ରାସ୍ତା ଅବରୋଧ କରିଥାଏ ।

ଟିକିରିରେ ଅଧଘଣ୍ଟା ସମୟ ରହିଲା ପରେ ଆସିଲା ଗୋରଖପୁର । ଏଠାରେ ସାହୁକାରମାନଙ୍କର ବସ୍ତି ଅଛି ଓ ଆଉ ଅଛି ଆଶ୍ରମ ସ୍କୁଲ । ବସ୍‌ରୁ ଏଠାରେ ମଧ୍ୟ ଜିନିଷ କଢ଼ାଗଲା । ଗୋରଖପୁରରେ ହାଟ ବସେ ପ୍ରତି ଶନିବାର । ତାପରେ କାଶୀପୁର ୧୬ କି.ମିକୁ ଦେଢ଼ଘଣ୍ଟା ଲାଗିଗଲା । ରାସ୍ତାପାଖ ପ୍ରତ୍ୟେକ ଗାଁରୁ ଲୋକେ ବସ୍ ଭିତରେ ପଶିଲେ । ବସ୍ ଭିତରେ ଅଣନିଃଶ୍ୱାସୀ ହୋଇ ଲୋକେ ବହୁ ସଂଖ୍ୟାରେ ଛିଡ଼ା ହୋଇଥାଆନ୍ତି । କାଶୀପୁର ହାଟ ବସ୍ତିର ଉପକଣ୍ଠରେ । ସବୁ ଲୋକେ ପ୍ରାୟ ସାଢେ ତିନିଟା ବେଳକୁ ସେଠାରେ ଓହ୍ଲାଇଲେ । ମାଲ୍ ମଧ୍ୟ ଉତାରି ଦିଆଗଲା । ଏଇଭଳି ହାଲୁକା ବସ୍‌ରେ ମୁଁ କାଶୀପୁର ବ୍ୟାଙ୍କ ଛକରେ ପହଞ୍ଚିଲା ବେଳକୁ ଅପରାହ୍ନ ସାଢ଼େ ଚାରିଟା ବାଜିଯାଇଥିଲା । ମୁଁ କିଛି ଖାଇ ନଥିଲି । ବ୍ୟାଙ୍କ ମ୍ୟାନେଜର ଶ୍ରୀଯୁକ୍ତ ପି.ଆର୍.କେ ରାଓ ମୋର ଆସିବା ଖବର ଆଗରୁ ପାଇଥିଲେ । ବସ୍ ପାଖକୁ ଆସି ମୋତେ ତାଙ୍କ ରୁମ୍‌କୁ ଡ଼ାକିନେଲେ । ରାସ୍ତା ୭୦ କିଲୋ ମିଟରକୁ ବସ୍‌କୁ ଲାଗିଲା ପ୍ରାୟ ୮ଘଣ୍ଟା । ରାୟଗଡ଼ା ବସ୍‌ଷ୍ଟାଣ୍ଡକୁ ଆସିଥିଲି ସକାଳ ସାଢ଼େ ଚାରିଟା ବେଳେ, ତେଣୁ ମୋତେ ପ୍ରାୟ ଲାଗିଗଲା ୧୨ଘଣ୍ଟା । ମୁଁ ଥକିଯାଇଥିଲି ସମ୍ଭବତଃ । କାଶୀପୁର ଲକ୍ଷେ ଚମ୍ପାର ଦେଶ ଓ ଚିରସ୍ରୋତା ଝରଣାମାନଙ୍କ ଦ୍ୱାରା ପ୍ଳାବିତ ବୋଲି ଜାଣି ସୁଦ୍ଧା ମୁଁ ସେଦିନ କାହିଁକି ଏକ ଅଭିନବ ଅଥଚ ତିକ୍ତ ଅନୁଭୂତି ଦ୍ୱାରା ଅତିକ୍ରାନ୍ତ ହୋଇପଡ଼ିଥିଲି । ବ୍ୟାଙ୍କ ମ୍ୟାନେଜର ବନ୍ଧୁ କହିଲେ ଯେ ମୁଁ ଖୁବ୍ ଭାଗ୍ୟବାନ୍ । କାରଣ ବସ୍ ଆଜି ପହଞ୍ଚିଯାଇଛି ।

କାଶୀପୁର ହାଟରେ ବିକାକିଣା ପାଇଁ ସମସ୍ତେ ଆଗ୍ରହୀ । ବସ୍‌ରେ ଯେତେ ଭିଡ଼ ହେବ ଡ୍ରାଇଭର୍, କଣ୍ଡକ୍ଟର ଓ କ୍ଲିନର୍ ସେତେ ଖୁସି । ଅନ୍ୟ ଦିନ କ'ଣ ହେବ କହି ହେବନାହିଁ କିନ୍ତୁ ପ୍ରତ୍ୟେକ ବୁଧବାର ଦିନ ରାୟଗଡ଼ା-କାଶୀପୁର ସକାଳ ବସ୍ ନିୟମିତ ଆସିବ ଏଥିରେ ସନ୍ଦେହ ନାହିଁ ।

ଆଜି ୨୦୦୭ ମସିହାରେ ପଛକୁ ଚାହିଁଲେ ବିଶ୍ୱାସ କରିହେବନାହିଁ କାଶୀପୁର କେତେ ବଦଳିଯାଇଛି । କାଶୀପୁରକୁ ବର୍ତ୍ତମାନ ୬-୭ଟି ବସ୍ ଚାଲିଛି । ରାୟଗଡ଼ା-କାଶୀପୁର ଦୂରତ୍ୱକୁ ସାଢ଼େ ତିନିଘଣ୍ଟା ସମୟ ନେଉଛି । ସରକାରୀ ପରିବହନ ବସ୍ ଆଉ ଚାଲୁନାହିଁ । ଏବେ ଗୁମ୍ମାରେ ଘରଦ୍ୱାର, ହୋଟେଲ, ରୂପ୍‌କୋନାରେ କେତୋଟି ଢ଼ାବା, ଟିକିରିରେ ଘରଦ୍ୱାର ଓ କୋଠାବାଡ଼ି । ସବୁଆଡ଼େ ଗାଡ଼ି, ମୋଟର ସାଇକେଲ୍ ଓ ଠିକାଦାର ହାଉଯାଉ । ରାତ୍ରିର ନିସ୍ତବ୍‌ଧତା ଭଙ୍ଗ ହୋଇଛି । ଆଗରୁ କୁଆଡେ ଦିନ ଦିପହରରେ ବି ମହାବଳ ବାଘ କାଶୀପୁର ରାସ୍ତାରେ ଦେଖିବାକୁ ମିଳୁଥିଲା । ଏବେ ମଧ୍ୟ ରାତ୍ରିରେ ଯିବା ଆସିବାବେଳେ ଠେକୁଆଟିଏ ବି ଆତ ଯାତ ହେଉ ନାହାନ୍ତି । ସବୁକିଛି ଯେମିତି ବଦଳି ଯାଇଛି । କିନ୍ତୁ ଏ ପରିବର୍ତ୍ତନର ହାଓ୍ୱାରେ ଆଦିବାସୀ କିଛି ମାତ୍ରାରେ ବଦଳିଛି କି ?



# ୨

ସିରିପାଇ-ଲିଲିଗୁମାକୁ ଦେଖିଲାପରେ ପ୍ରଥମ ସାକ୍ଷାତରେ ଯେମିତି ମୁଁ ପ୍ରେମରେ ପଡିଯାଇଥିଲି । କାଶୀପୁରର ଏହା ବିଚ୍ଛିନ୍ନାଞ୍ଚଳ ବୋଲି କୁହାଯାଏ । ବିସ୍ତୃତ ଓ ଘଞ୍ଚ ଶାଳଜଙ୍ଗଲ । ସେ ସମୟରେ ରାୟଗଡ଼ା ଡି.ଏଫ୍.ଓ(D FO) ଶ୍ରୀ ସୁରେଶ ମହାନ୍ତି କହୁଥିଲେ, ସାରା ଭାରତରେ ଏଭଳି ଶାଳଜଙ୍ଗଲ, ବନ୍ୟଜନ୍ତୁଙ୍କ ବାସସ୍ଥାନ ଓ ଜୈବବିବିଧତା ଆଉ କେଉଁଠି ମିଳିବା ଅସମ୍ଭବ । ଟପୋସିଟ୍(Topo sheet)ରେ ଦେଖିବାକୁ ମିଳେ ବିସ୍ତୃତ ଲିଲିଗୁମା ରିଜର୍ଭ ଜଙ୍ଗଲ ଓ ତା'ଭିତରେ ଅତି ବିକ୍ଷିପ୍ତ ଭାବେ ଗ୍ରାମ ଓ ଜନବସତି । କାଶୀପୁରର ଆୟତନ ପନ୍ଦରଶହ ବର୍ଗ କିଲୋମିଟର ଏବଂ ଏହାର ଏକ ତୃତୀୟାଂଶ ଜଙ୍ଗଲ ଦ୍ୱାରା ପରିବେଷ୍ଟିତ । ସିରିପାଇ-ଲିଲିଗୁମା ସବୁଜିମାର ଯେମିତି ଏକ ଦ୍ୱୀପ ଭଳି ବିରାଜମାନ । କାଶୀପୁର ପାହାଡପର୍ବତ ଓ ଉପତ୍ୟକାର ଇଲାକା । କିନ୍ତୁ ମୋର ୧୯୮୦ ମସିହାର ସ୍ମୃତିରେ ସିରିପାଇ-ଲିଲିଗୁମା ଅବିସ୍ମରଣୀୟ ।

କାଶୀପୁରର ଚାକିରିଆ ବନ୍ଧୁମାନେ ମୋତେ ସଚେତନ କରି ଦେଇଥିଲେ ପ୍ରଥମରୁ । କହୁଥିଲେ କାଶୀପୁର ମ୍ୟାଲେରିଆ ଓ ମଣିଷଖିଆ ବାଘର ରାଜ୍ୟ । ବିଭିନ୍ନ ସତର୍କବାଣୀ ଶୁଣାଇଥିଲେ ମଣିଷମାନଙ୍କ ବିଷୟରେ ଓ ମଣିଷଖିଆ ବାଘମାନଙ୍କ ସମ୍ପର୍କରେ ମଧ୍ୟ । କାଶୀପୁର କଳାହାଣ୍ଡି ମହାରାଜାଙ୍କ ଜମିଦାରୀ । ଏଠାରେ ମଧ୍ୟ ଜଣେ ରାଜା ଥିଲେ ଯଦିଓ ତାଙ୍କର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ଭିନ୍ନ ଥିଲା । କଳାହାଣ୍ଡିର ମହାରାଜା ହାତୀରେ ବସି ଶିକାର କରିବାକୁ କାଶୀପୁର ଆସୁଥିଲେ ବେଳେବେଳେ । କଳାହାଣ୍ଡି ଓ କାଶୀପୁର- ଗୋଟାଏ ଭୂଗୋଳ ଓ ଗୋଟାଏ ଇତିହାସ । କେବଳ ପାଦଚଲା ରାସ୍ତା ଥିଲା ଯିବା ଆସିବାର ମାଧ୍ୟମ । ଅନ୍ୟ ବାଟଟି ଥିଲା କାଶୀପୁରରୁ ବସ୍‌ରେ ଗଲେ ରାୟଗଡା । ରାୟଗଡାରୁ ରେଳ ଯୋଗେ କେସିଙ୍ଗା ପହଞ୍ଚିବାକୁ ପଡେ । କେସିଙ୍ଗାରୁ ପୁଣି ବସ୍ ଯୋଗେ ଭବାନୀପାଟଣା । ପାଦ ରାସ୍ତାରେ ଗଲେ ପାହାଡ ପର୍ବତ ଅତିକ୍ରମ କରିବାକୁ ହୁଏ, କିନ୍ତୁ ଶୀଘ୍ର ପହଞ୍ଚିବା ସମ୍ଭବ ହୁଏ । ଦୂରତ୍ୱ ପ୍ରାୟ ୮୦ କିଲୋମିଟର । କିନ୍ତୁ ରାୟଗଡା ବାଟେ ଗଲେ ଗୋଟାଏ ଯୁଗ ଲାଗିଯାଏ । ଦୂରତ୍ୱ ପ୍ରାୟ ୨୫୦କିଲୋମିଟର । ୧୯୬୦ ମସିହା ପର୍ଯ୍ୟନ୍ତ, କାଶୀପୁର କଳାହାଣ୍ଡି ଜିଲ୍ଲାର ଅଂଶ ବିଶେଷ ଥିଲା ।

ଗମନାଗମନ ଓ ଅନ୍ୟ ପ୍ରଶାସନିକ ଦୃଷ୍ଟିକୋଣରୁ କାଶୀପୁର ବ୍ଲକ୍ ଏବଂ ତହସିଲ୍‌କୁ କୋରାପୁଟ ଜିଲ୍ଲାରେ ମିଶାଇ ଦିଆଗଲା । ରାୟଗଡା ସବ୍-ଡିଭିଜନ୍‌ର ଏହା ସର୍ବବୃହତ ବ୍ଲକ୍ ବୋଲି ପରିଚିତ ହେଲା । ଏଇ ଇତିହାସ ଯୋଗୁଁ କାଶୀପୁର ଉଭୟ କଳାହାଣ୍ଡି ଓ କୋରାପୁଟର ଡିଷ୍ଟ୍ରିକ୍ଟ ଗେଜେଟିୟରରେ ଉଲ୍ଲେଖିତ ହୋଇ ସ୍ୱତନ୍ତ୍ର ସ୍ଥାନ ପାଇଛି । କାଶୀପୁରକୁ

ଅନୁସନ୍ଧାନ ଓ ଗବେଷଣାର ମୁଖ୍ୟକେନ୍ଦ୍ର କରିବାରେ ଏହା ଅନ୍ୟତମ କାରଣ ଥିଲା । କାଶୀପୁରର ୧୭ଟି ପଞ୍ଚାୟତ ଭିତରେ ସିରିପାଇ-ଲିଲିଗୁମା ପଞ୍ଚାୟତ ଥିଲା ଅଦ୍ୱିତୀୟ । କାରଣ ଏହା ସମ୍ଭବତଃ କାଶୀପୁରର ଇତିହାସ ଭିତରେ ଅନ୍ୟ ଏକ ଇତିହାସ ଥିଲା । ବର୍ଷରେ ପ୍ରାୟ ଦଶମାସ ଏହା କାଶୀପୁର ସଦର ମହକୁମା ସହ ବିଚ୍ଛିନ୍ନ ହୋଇ ରହୁଥିଲା । ଯଦି କେହି ଅଫିସର ସେ ଅଞ୍ଚଳକୁ ଯିବାକୁ ଚାହିଁବେ, ଅପ୍ରେଲ୍ ବା ମେ ମାସରେ ଫୋର-ହ୍ୱିଲ(Four-wheel)ର ଜିପ୍ ନେଇ ଯାଇ ପାରିବେ । ଦୁଇଟି ଘାଟି ରାସ୍ତା ଥିଲା ଯିବାକୁ । ଗୋଟାଏ ରାସ୍ତା ଶଙ୍କରଡ଼ା ଦେଇ ଓ ଅନ୍ୟଟି ବନ୍ଧମାଣ୍ଡି କଲୋନୀ ଦେଇ । ଗୋଷ୍ଠୀ ଉନ୍ନୟନ ବିଭାଗର କର୍ମକର୍ତ୍ତା, ଜଙ୍ଗଲ ବିଭାଗର ଅଧିକାରୀ, ଟି.ଡି.ସି.ସି. ଏବଂ ଷ୍ଟେଟ୍‌ବ୍ୟାଙ୍କର କର୍ମଚାରୀ, ସ୍ୱାସ୍ଥ୍ୟ ଅଧିକାରୀ କେବେ କେମିତି ଏକାଠି ହୋଇ ସେ ଅଞ୍ଚଳକୁ ଯାଉଥିଲେ । ପୋଲିସ ବା ତହସିଲ୍‌ର ଅଧିକାରୀମାନେ ସିରିପାଇ-ଲିଲିଗୁମା ଅଞ୍ଚଳକୁ କ୍ୱଚିତ୍ ଯାଉଥିଲେ । ଲୋକମାନେ ବୁଧବାର କାଶୀପୁର ହାଟକୁ ଆସିଲେ ସରକାରୀ ଅଫିସର୍ ଓ ଜମାନ୍‌ମାନଙ୍କୁ ବାର୍ତ୍ତା ଦେଉଥିଲେ ଓ ବାର୍ତ୍ତା ନେଇ ବିଭିନ୍ନ ଗାଁରେ ପହଞ୍ଚାଉ ଥିଲେ ।

ଏଇଭଳି ବିଭିନ୍ନ ଅଦ୍ଭୁତ ତଥା ଅସାଧାରଣ କାହାଣୀ ଓ ଲୋକକଥା ଶୁଣିବା ପରେ ମୁଁ ସିରିପାଇ ଯିବାକୁ ଅଣ୍ଟା ଭିଡିଥିଲି । ସେ ଅଞ୍ଚଳରେ ସ୍ୱର୍ଗତ କୈଳାସ ପଟ୍ଟନାୟକଙ୍କର ବହୁତ ଜମିଜମା ଥିଲା ଓ ତାହାର ତଦାରଖ କରୁଥିଲେ ଲିଲି ଗଉଡ । (ଲିଲି ମରିଗଲେଣି, ସେ ଏକାଧାରରେ ଥିଲେ ଶିକାରୀ, ଠିକାଦାର, ସରପଞ୍ଚ, ପ୍ରଭାବଶାଳୀ ନେତା ଓ ଜଣେ ପ୍ରବୀଣ ରସିକ) ସିରିପାଇ ଓ ଲିଲିଗୁମା ଅଞ୍ଚଳକୁ କେହିଜଣେ ଅଜଣା ବ୍ୟକ୍ତି ତାଙ୍କର ସାହାଯ୍ୟ ବିନା ଯାଇ ପାରିବ ନାହିଁ । ଅଫିସରମାନେ ସେ ଅଞ୍ଚଳକୁ ତାଙ୍କର ପରାମର୍ଶ ବିନା ପଶିପାରିବେ ନାହିଁ । କୌଣସି ସରକାରୀ ଉନ୍ନୟନ କାର୍ଯ୍ୟ ତାଙ୍କର ବିନା ଅନୁମତିରେ ହୋଇ ପାରିବ ନାହିଁ । କାଶୀପୁର ବିଷୟରେ ମୋତେ ପରାମର୍ଶ ଦେଉଥିବା ବନ୍ଧୁମାନେ କହିଲେ ଯେ ଲିଲି ଗଉଡଙ୍କୁ ଅନୁରୋଧ କରିବାକୁ ପଡିବ ସାଙ୍ଗରେ ଯିବାକୁ । ନଚେତ୍ ସିରିପାଇ-ଲିଲିଗୁମା ଅପହଞ୍ଚ ରହିଯିବ । ମୁଁ କାଶୀପୁରରେ ଅନେକ ବିକାଶମୂଳକ କାର୍ଯ୍ୟ ଆରମ୍ଭ କରିବାକୁ ସର୍ଭେ କରୁଛି ଓ ବିଭିନ୍ନ ଅବହେଳିତ ଗାଁଗୁଡିକୁ ପ୍ରଥମ ପର୍ଯ୍ୟାୟରେ ବାଛିବାକୁ ମନସ୍ଥ କରିଛି ଜାଣି, ଲିଲି ଗଉଡ ତାଙ୍କର ପ୍ରିୟ ସିରିପାଇ ଅଞ୍ଚଳ ମୋର ତାଲିକାର ଆଗରେ ରହିବାକୁ ଅନେକ ଚେଷ୍ଟା କରିଥିଲେ । ଏଇଥିପାଇଁ ସେ ଅଞ୍ଚଳକୁ ମୋତେ ନେବାକୁ ନିମନ୍ତ୍ରଣ କରିଥିଲେ ଅଚାନକ ଓ ମୁଁ ବିନା ପ୍ରଶ୍ନରେ ହଁ ଭରିଥିଲି । ମୋତେ ସେ ସାବଧାନ କରିଥିଲେ ଯେ ଘାଟି ରାସ୍ତାରେ ୬ଘଣ୍ଟା ଚାଲିବାକୁ ହେବ । ଶାଶୁବହୂମାଳି ପର୍ବତ ଆରୋହଣ କରିବାକୁ ହେବ । ପୁଣି ପୂର୍ବପଟେ ଓହ୍ଲାଇବାକୁ ପଡିବ ସତର୍କରେ । ବିପଦସଙ୍କୁଳ ରାସ୍ତା । କୁକୁଡା ଡାକରୁ ସକାଳୁ ବାହାରିବାକୁ ପଡିବ ଆମକୁ । ସିରିପାଇରେ ଆମ ଲାଗି ଖାଦ୍ୟଦ୍ରବ୍ୟ ମିଳିବ ନାହିଁ । ଆମ ସଙ୍ଗେ ଜଣେ ଭାରୁଆ ଖାଦ୍ୟଦ୍ରବ୍ୟ ବୋହି ଚାଲିବ । ସବୁପ୍ରକାର ପ୍ରସ୍ତୁତି ଯୋଜନାରେ ମୁଁ ରାଜି ହୋଇଥିଲି । ମୋର ସିରିପାଇ-ଲିଲିଗୁମା ପହଞ୍ଚିବା ଏକ ଚରମ ଲକ୍ଷ୍ୟ ଥିଲା ଓ ସେଠାରେ ଦିନେ ଦୁଇଦିନ କାଟିବାର ଏକ ସାହସିକତା ପ୍ରଦର୍ଶନ କରିବା ମଧ୍ୟ

ଉଦ୍ଦେଶ୍ୟ ଥିଲା । ସ୍ୱର୍ଗତ କୈଳାସ ପଟ୍ଟନାୟକଙ୍କ ରେଷ ଘର ଓ ଲିଲି ଗଉଡଙ୍କ କ୍ୟାମ୍ପ । ଆମ ରାତ୍ରି ଯାପନର ଏକମାତ୍ର ସୁରକ୍ଷିତ ସ୍ଥାନ ।

ଯୋଜନା ମୁତାବକ ଭୋର ସକାଳୁ କୁକୁଡା ଡାକରୁ ମୁଁ, ଲିଲି ଗଉଡ ଓ କାଶୀପୁରର ଜଣେ ଭାରୁଆ ସିରିପାଇ ଅଭିମୁଖେ ବାହାରି ପଡିଲୁ । ଖୁରିଗାଁ ପର୍ଯ୍ୟନ୍ତ ଚାରି କିଲୋମିଟର ରାୟଗଡା ରାସ୍ତାରେ ଗଲାପରେ ସେଠାରୁ ଘାଟି ଚଢ଼ିବା ଆରମ୍ଭ ହୁଏ । ପାହାଡ ପର୍ବତ ଦେଖିଲା ମାତ୍ରକେ ଆରୋହଣର ଏକ ଆହ୍ୱାନ କେଜାଣି କାହିଁକି ମୋ ଭିତରେ ସୃଷ୍ଟି ହୋଇଥାଏ । ଏଭେରେଷ୍ଟ ଭଳି ଅତ୍ୟୁଚ୍ଚ ଶୃଙ୍ଗମାନଙ୍କୁ ଆରୋହଣ କରୁଥିବା ପର୍ବତାରୋହୀମାନଙ୍କର ରୋମାଞ୍ଚକର କାହାଣୀ ପଢ଼ିବା ପରେ ମୁଁ କାହିଁକି ଜଣେ ପର୍ବତାରୋହୀ ନହେବି ଏକଥା ମନ ଭିତରେ ରହି ଆସିଥାଏ । ଆଗକୁ ଆଗକୁ ଯିବା ଓ ଉଚ୍ଚରୁ ଉଚ୍ଚତର ହେବା ଯେମିତି ଏକ ଆଧ୍ୟାତ୍ମିକ ଅଭିଳାଷ । ମୁଁ ସଦାସର୍ବଦା ଉତ୍‌ପ୍ରେରିତ ହୋଇଥାଏ । କାଶୀପୁରର ଉଚ୍ଚତା ପ୍ରାୟ ତିନି ହଜାର ଫୁଟ । ତା'ପରେ ସେ ଅଞ୍ଚଳରେ ଉଚ୍ଚ ପର୍ବତଟିଏ ଚଢ଼ିବାକୁ ଯଥେଷ୍ଟ ଶକ୍ତି ଓ ସାମର୍ଥ୍ୟ ଦରକାର । ଜୁନ ମାସର ସକାଳୁଆ ଖରା ଆମକୁ ବାଧିବା ଆରମ୍ଭ କରିଥାଏ । ଲିଲି ଗଉଡର କାନ୍ଧରେ ବନ୍ଧୁକ । ମୋ ପିଠିରେ ହ୍ୟାଭର ସ୍ୟାକ୍ । କାନ୍ଧରେ ପାଣିବୋତଲ । ସାଙ୍ଗରେ ଭାରୁଆ । ଆମେ ତିନିଜଣ ପର୍ବତାରୋହୀ ଭଳି ଦିଶୁଥାଉ । ମୁଁ ଲିଲିଙ୍କୁ ପଚାରିଲି ବନ୍ଧୁକ କାହିଁକି ନେଉଛ ବୋଲି । ସେ ହସି ଦେଲେ । କହିଲେ, ସିରିପାଇ-ଲିଲିଗୁମାକୁ ବିନା ବନ୍ଧୁକରେ ଯାଇହେବ ନାହିଁ । ବନ୍ୟଜନ୍ତୁଙ୍କ ଭୟ ଅଛି । ଆହୁରି ଭୟ ଅଛି ଚୋରଖଣ୍ଡଙ୍କର । ସେ ବନ୍ଧୁକ ଥିବାରୁ ପ୍ରାଣ ଘେନି ବଞ୍ଚିଛନ୍ତି କହିଲେ ଅତିରଞ୍ଜିତ ହେବ ନାହିଁ । ଶାଶୁବହୁମାଳି ଚଢିବାରେ ଦୁଇ ଘଣ୍ଟା ଲାଗିଗଲା । କିଛି ଉଚ୍ଚତା ଉଠିବା ପରେ ବିଶ୍ରାମ ନେବାକୁ ପଡୁଥାଏ । ପାଣି ପିଇବାକୁ ହୁଏ ମଧ୍ୟ । ମାଇନିଂ ଡିପାର୍ଟମେଣ୍ଟ ସର୍ଭେ କରିବା ପାଇଁ ବର୍ଷେ ଦୁଇ ବର୍ଷ ତଳେ ଗୋଟାଏ ଅଙ୍କାବଙ୍କା ରାସ୍ତା କରିଥିଲେ ଯାହା ବର୍ଷା ପାଣିରେ ଧୋଇ ହୋଇଯାଇଛି । ସେ ରାସ୍ତାରେ ଚାଲିଲେ ଏତେଟା କଷ୍ଟ ଲାଗେ ନାହିଁ । ଘାଟି ଚଢିବାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଜଣେ କାଶୀପୁରରେ ରହିବାକୁ ଯୋଗ୍ୟ ହେବ ବୋଧେ । ମୁଁ ଆଶ୍ଚର୍ଯ୍ୟ ହେଉଥିଲି ଯେ, ଏଠାକାର କଙ୍କାଳସାର ମଣିଷମାନେ କେମିତି ଏ ଘାଟି ରାସ୍ତାରେ ଯିବା ଆସିବା କରୁଛନ୍ତି । ମାଳି ଉପରେ ପହଞ୍ଚିଲା ପରେ ବିସ୍ତୀର୍ଣ୍ଣ ପଡିଆ । କେତେ କିଲୋମିଟର ପର୍ଯ୍ୟନ୍ତ ବ୍ୟାପିଛି । କାଁ ଭାଁ ଗଛଟିଏ । ଲାଲ୍ ମାଙ୍କଡା ପଥର । କେତେ ବର୍ଗ କିଲୋମିଟର ବ୍ୟାପି ଏ ପଡିଆ ଉପରେ ଦୁଇଟି ଗାଁ- ଶାଶୁବହୁମାଳି ଓ ବାସଙ୍ଗମାଳି । ବର୍ଷାପାଣି ଗୋଟିଏ ପୋଖରୀରେ ରହିଥାଏ ଯାହାକୁ ମଣିଷ ଓ ଗୃହପାଳିତ ପଶୁ ବର୍ଷରେ ଆଠମାସ ବ୍ୟବହାର କରନ୍ତି । ବାକି ଚାରିମାସ ଘାଟି ତଳୁ ଝରଣାରୁ ପାଣି ଆଣିବାକୁ ହୁଏ ତାହା ଖୁବ୍ କଷ୍ଟକର ବ୍ୟାପାର ।

ମାଳି ଉପରେ ବର୍ଷା ଦିନେ ଯେତେବେଳେ କଳା ବାଦଲ ଦେଖାଦିଏ ଅଥବା କୁହୁଡି ପଡି ଭର୍ତ୍ତି ହୁଏ ସେତେବେଳେ କୁଆଡେ ବାଘ, ଭାଲୁ, ହରିଣ, ସମ୍ବର ସମସ୍ତେ ଆସନ୍ତି ଖାଦ୍ୟ ଅନ୍ୱେଷଣରେ । ଏକଥା ଲିଲି ଗଉଡ କହୁଥିଲେ ମୋତେ ଓ ସେ କେତେବାର ଶିକାର

କରିଛନ୍ତି ବୋଲି ସ୍ୱୀକାର କରୁଥିଲେ । ଘାଟି ଚଢିବାରେ ଦୁଇଘଣ୍ଟା ଓ ମାଳି ଉପରେ ଦୁଇଘଣ୍ଟା ଚାଲିବା ପରେ ଆରମ୍ଭ ହୁଏ ଘାଟି ଓହ୍ଲାଇବା । ଆସନ୍ତା ଦୁଇ ଘଣ୍ଟା ଖୁବ୍ ବିପଦ ଶଙ୍କୁଳ ବୋଲି ମୋତେ ସତର୍କ କରି ଦିଆ ଯାଇଥିଲା । କାରଣ ଏହା ଘଞ୍ଚ ଜଙ୍ଗଲ ଥିଲା । ପକ୍ଷୀଙ୍କ କଳରବ କେବଳ ଶୁଭୁଥିଲା । କେଉଁଠି ନା କେଉଁଠି ମୟୂରପକ୍ଷୀ ଆମକୁ ଦେଖି ଉଡିଯାଉଥିଲା । ପୂର୍ବଦିନ ବର୍ଷା ହୋଇଥିବାରୁ ଆମ ପାଦଚଲା ରାସ୍ତାରେ ପଡିଥାଏ ବିଭିନ୍ନ ପଶୁଙ୍କ ପାଦଚିହ୍ନ । ମୋତେ ଲିଲି ଗଉଡ ପରିଚିତ କରାଉଥିଲେ ବାଘ ଓ ଚିତାବାଘର ପାହୁଲକୁ । କୁତ୍ରା ଓ ସମ୍ବରର ପାଦଚିହ୍ନ କେମିତି ସ୍ୱତନ୍ତ୍ର ସେ କହୁଥିଲେ । ରାସ୍ତା କଡ ଉଇ ହୁଙ୍କାରୁ କେମିତି ଭାଲୁ ଗାତ କରି ଉଇ ଖାଉଛି ସେ ମୋର ଦୃଷ୍ଟି ଆକର୍ଷଣ କରୁଥିଲେ । ମୋର ଜାଣିବା ପାଇଁ କେଉଁ ଗଛର ନାମ କ'ଣ ଓ ସେଥିରେ ଆସୁଥିବା ଫୁଲଫଳ ଆମର କି କାମରେ ଆସେ ସେ କଥା ଲିଲି ଗଉଡ କହିବାକୁ ଭୁଲି ନଥିଲେ । ମୋ ମନରୁ କେମିତି ଭୟ ଦୂର ହେବ, କହି ଚାଲିଥିଲେ ଅନେକ କଥା ଓ କାହାଣୀ । ଶିକାର ଗପ ଶିକାରୀ ଠାରୁ ଶୁଣିବାକୁ ଆମ ସମସ୍ତଙ୍କୁ ଭଲଲାଗେ । ଏଥିରେ ସତ୍ୟତା ଥାଏ; ଆଉ ଥାଏ କପୋଳକଳ୍ପିତ କେତେ କଥା ମଧ୍ୟ । ମୋ ଭଳି ଶ୍ରୋତା କିନ୍ତୁ ସହଜରେ ବିଶ୍ୱାସ କରିଯାଏ ।

ଘଞ୍ଚ ଜଙ୍ଗଲ ଭିତରେ ଗଲାବେଳେ ଏକ ଭାବାନ୍ତର ସୃଷ୍ଟି ହୁଏ ସବୁବେଳେ । ଭଲ ପାଇବାର ଏକ ସ୍ପନ୍ଦନ ସୃଷ୍ଟି ହୁଏ । ଆପଣାକୁ ଚିହ୍ନିବାକୁ ଏକ ମାଧ୍ୟମ ଅଙ୍କୁରିତ ହୁଏ । କବିତା ଲେଖିବାକୁ ଇଚ୍ଛା ହୁଏ । ମହାଜାଗତିକ ପ୍ରଶ୍ନ ସବୁ ମନକୁ ଆସେ । ସୃଷ୍ଟିର ଲୟ ବିଲୟ ବୁଝିବା ସହଜ ହୋଇଯାଏ । ବଞ୍ଚିବାର ସଂଘର୍ଷ ଓ ମୃତ୍ୟୁର ରହସ୍ୟ ଉଦ୍‌ଭାସିତ ହୁଏ । ଜୀବନ ଜିଜ୍ଞାସାର ପରିସର ବଢିବାରେ ଲାଗିଥାଏ । ଏଭଳି ଘଞ୍ଚ ଜଙ୍ଗଲ ଭିତରେ ଆଦିବାସୀ ରହୁଛି ଏକ ସ୍ୱତନ୍ତ୍ର ସଭ୍ୟତା ଓ ସଂସ୍କୃତିର ଦାୟାଦ ଭାବେ । ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଶିକାର ଗପ ଲେଖି ପୃଥିବୀସାରା ଲୋକପ୍ରିୟ ହୋଇଥିବା ଜୀମ୍ କର୍ବେଟ୍(Jim Corbet)ଙ୍କ ତିନୋଟି ବହି ମୁଁ କେତେଥର ପଢିଥିବି । ସେଗୁଡିକ ହେଲା 'ମୋ ଭାରତ' 'ଜଙ୍ଗଲ କଥା' ଓ 'ଟ୍ରୀ ଟପ୍' । ମଣିଷ ଓ ଅରଣ୍ୟ ଭିତରେ ଅନ୍ତରଙ୍ଗ ସମ୍ପର୍କକୁ ନେଇ ସେ ଯେମିତି ଗଦ୍ୟ ନଲେଖି କବିତା ଲେଖିଛନ୍ତି । ଆବେଗର ଉଚ୍ଛ୍ୱାସ ଭରି ଦେଇଛନ୍ତି ସେ ଅନବଦ୍ୟ ବର୍ଣ୍ଣନାରେ । ଲିଲି ଗଉଡଙ୍କ କଥା ମୁଁ ମନଧ୍ୟାନ ଦେଇ ଶୁଣିଥିଲି । ଆଉ ଶୁଣିଥିଲି ଜଙ୍ଗଲର ଡାକ, ଅନୁଭବ କରୁଥିଲି ବନ୍ୟ ଜନ୍ତୁଙ୍କ ନିଃଶବ୍ଦ ଉପସ୍ଥିତି । ଦେଖିଥିଲି ରଙ୍ଗ ବେରଙ୍ଗର ପକ୍ଷୀମାନଙ୍କୁ । ପେଟରେ ଭୋକ ଓ ଶରୀରରେ ଘୋର କ୍ଳାନ୍ତି । ତଥାପି ମୁଁ କିଛି ସମୟ ପାଇଁ କବିଟିଏ ହୋଇ ଯାଇଥିଲି ବୋଧେ ।

ଲିଲି ଗଉଡଙ୍କ ପଛେ ପଛେ ଅନୁସରଣ କରି ଓ କେତେ ବଣ ଝରଣା ଅତିକ୍ରମ କରି ମୁଁ ପହଞ୍ଚିଥିଲି ସିରିପାଇ ଗାଁରେ । ସମୟ ଦିନ ବାରଟା । ଛଅ ଘଣ୍ଟାର ପାଦଚଲା ରାସ୍ତାକୁ ମୁଁ ନେଇଥିଲି ଆଠ ଘଣ୍ଟା । କାରଣ ମୁଁ ସବୁକଥା ଅନୁଭବ କରିବାକୁ ଚାହୁଁଥିଲି । ସବୁକଥା ଜାଣିବାକୁ ଚାହିଁଥିଲି ଲିଲି ଗଉଡଙ୍କ ଠାରୁ । ମାଇନିଂ ଡିପାର୍ଟମେଣ୍ଟ କ'ଣ ସର୍ଭେ

କରୁଥିଲା ମୋର ପ୍ରଶ୍ନ ଥିଲା । ସେ କହୁଥିଲା ଯେ ରାଜାଙ୍କ ନେପାଳୀ ରାଣୀ ବିଧାୟିକା ଥିଲେ ଓଡ଼ିଶା ବିଧାନସଭାରେ । ସେ ଚାହୁଁଥିଲେ ଯେ ଶାଶୁବହୁମାଳି ଉପରେ ଫ୍ୟାକ୍ଟ୍ରି ବସାଇବା ପାଇଁ । ମିଗ୍ ଫ୍ୟାକ୍ଟ୍ରି ବସିବା ନିଷ୍ପତ୍ତି ପ୍ରାୟ ଚୂଡ଼ାନ୍ତ ହୋଇଥିଲା, କିନ୍ତୁ ରାଜନୈତିକ ବିରୋଧାଭାସ ଯୋଗୁଁ ତାହା ସୁନାବେଡ଼ାକୁ କୁଆଡେ ସ୍ଥାନାନ୍ତରିତ ହୋଇଥିଲା । ତା'ପରେ ଆସିଲା ମାଇନିଂ ସର୍ଭେ । କ୍ୟାମ୍ପ୍ ବସିଲା ଗୁରିଗାଁ ଠାରେ । କେତେ ମେସିନ୍ ମାଳି ଉପରକୁ ନିଆଗଲା ଓ ବସ୍ତାବସ୍ତା ମାଟି ପରୀକ୍ଷା ପାଇଁ ସଂଗ୍ରହ କରାଗଲା । କ'ଣ ମାଇନିଂ ହେବ ଓ କି ଶିଳ୍ପ ପ୍ରତିଷ୍ଠା ହେବ ଲିଲି ଗଉଡ କହି ପାରିନଥିଲେ । ପରେ ମୋର ରେଭେନ୍ସା କଲେଜର ଜିଓଲୋଜି ବିଭାଗର ସହପାଠୀଙ୍କ ସହ ଦେଖା ହୋଇଥିଲା ଶାଶୁବହୁମାଳିର ବକ୍ସାଇଟ୍ କଥା ସେମାନେ ସୂଚନା ଦେଇଥିଲେ କହୁଥିଲେ ଯେ, କାଶୀପୁର ସାରା ବକ୍ସାଇଟ୍ ଭରି ରହିଛି ଏବଂ ଦିନେ ନା ଦିନେ ତାହା ଖୋଳିବାକୁ ସରକାର ଉଦ୍ୟମ କରିବେ । ସେଇଥିପାଇଁ ଜିଓଲୋଜିକାଲ୍ ସର୍ଭେ ଅଫ ଇଣ୍ଡିଆ ଏ ଅଞ୍ଚଳରେ ସ୍ୱତନ୍ତ୍ର ଅଫିସ ଖୋଲିଛି । ମୋର ସର୍ଭେ କିନ୍ତୁ ଭିନ୍ନ ଥିଲା ଓ ଏକଥାକୁ ମୁଁ ଗୁରୁତ୍ୱ ଦେଇ ନଥିଲି ସେଦିନ ।

ଲିଲି ଗଉଡଙ୍କ କ୍ୟାମ୍ପ୍‌କୁ ଲାଗି କେତୋଟି ତେନ୍ତୁଳି ଗଛ । ତାହାର ଛାଇତଳେ ଦୁଇଟି ଖଟ ପକାଗଲା । ରୋଷେଇ ହେବାକୁ ଅନେକ ସମୟ ଲାଗିଯିବ । ମୁଁ ଆସିଥିବା ଶୁଣି ସିରିପାଇର ଜାନୀ ବୁଢ଼ା ଓ ତାର ପରିବାର ଆସିଗଲେ ସ୍ୱାଗତ ଜଣାଇବା ପାଇଁ । ସାନ ସାନ ପିଲାମାନେ ଘେରିଗଲେ ମୋର ବେଶଭୂଷା ଦେଖି । ଧାଙ୍ଗଡୀମାନେ ମୁରୁକି ମୁରୁକି ହସୁଥିଲେ । ଜାନୀ ବୁଢ଼ା କହିଲା ରେଳ ଲାଇନ୍ ସର୍ଭେ କରିବା ପାଇଁ ଯୋଜନା ଚାଲିଛି । ମୁଁ ସେଇ ବିଭାଗରୁ ଆସିଛି କି ? ମାଳି ଉପରେ ମାଇନିଂ ଓ ମାଳି ତଳେ ରେଳ ଲାଇନ୍ । ଏ ଜଙ୍ଗଲ ରହିବତ ? ମୁଁ ଭାବି ଭାବି କିଛି ସମୟ ପାଇଁ ସେ ତେନ୍ତୁଳିଗଛ ତଳେ ଶୋଇ ପଡ଼ିଲି ।



# ୩

ଜାନୀ ଓ ଦିସାରୀ । କାଶୀପୁରର ଆଦିବାସୀ ଗାଁମାନଙ୍କରେ ଏମାନେ ସବୁକିଛି । 'ପରଜା' ଉପନ୍ୟାସରେ ଶୁକ୍ରୁ ଜାନୀ କଥା ମୁଁ ପଢ଼ିଥିଲି । ପଢ଼ିଲା ପରେ କେଜାଣି କାହିଁକି ମୁଁ ଗୋଟାଏ ଅଦ୍ଭୁତ ପରିକଳ୍ପନାର ଜାଲରେ ଛନ୍ଦି ହୋଇ ଯାଇଥିଲି । ଜାନୀ ଓ ଦିସାରୀମାନେ ଯଦି ମୋ କଥା ବୁଝିଯିବେ ତେବେ କାଶୀପୁରରେ ବିକାଶ ପ୍ରକ୍ରିୟା ତ୍ୱରାନ୍ୱିତ ହୋଇଯିବ ବୋଲି ବିଶ୍ୱାସ କରୁଥିଲି । ତେଣୁ ସିରିପାଇର ଜାନୀବୁଢ଼ା ସହ ଆଳାପ ଆଲୋଚନା କରିବା ମୋ ପାଇଁ ଅପରିହାର୍ଯ୍ୟ ହୋଇ ପଡିଥିଲା । ଜାନୀବୁଢ଼ା କଥା ଦେଇଥିଲା ଯେ, ଆଖ ପାଖ ଗାଁକୁ ଖବର ଯାଇଛି- ପର ଦିନ ସକାଳୁ ସବୁ ଗାଁର ମୁଖିଆମାନେ ଆସିବେ । ଗାଁ ସବୁ ଦୂରରେ- ପାହାଡ ଉପରେ, ଜଙ୍ଗଲ ଭିତରେ ଦୂର ଉପତ୍ୟକାରେ, ଛୋଟ ନଦୀ କୂଳରେ । 'ଚାଲାଣ' ବାର୍ତ୍ତା ନେଇ ଯାଇଛି ମୀନାଖୁଣ୍ଟି, କେଶକେରୀ, ଓଟଘାଟି, ଭାଲିଆଭଟା, ସିର୍‌ଲିଯୋଡି, ଲିଲିଗୁମା, ବାହାର ଦୁଲ୍‌କି, ଭିତର ଦୁଲ୍‌କି, ଅଟାଙ୍ଗ ଆଦି ଗାଁ ମାନଙ୍କୁ । ମୁଁ ଆସିଛି ଦୂର ଦେଶରୁ ଭଲ ମନ୍ଦ ଶୁଣିବା ପାଇଁ, ସୁଖ-ଦୁଃଖ ଜାଣିବା ପାଇଁ, ଦି'ପଦ କଥା କହିବା ପାଇଁ । ଲିଲି ଗଉଡଙ୍କ ବାର୍ତ୍ତା 'ଚାଲାଣ' ମଧ୍ୟ ନେଇଛି । ମୁଁ ଚାହିଁଲେ ସେ ଅନ୍ଧାରୀ ମୁଲକରେ କୁଆଡେ ଆଲୁଅ ଜଳିବ !

ମୌସୁମୀ ବର୍ଷା ଆରମ୍ଭ ପୂର୍ବରୁ ଏପ୍ରିଲ୍ ମାସରୁ ବର୍ଷା କାଶୀପୁରରେ ଆରମ୍ଭ ହୋଇଯାଇଥାଏ । ଅପରାହ୍ନରେ କଳାମେଘ ପାହାଡ ପର୍ବତ ଉପରେ ଉତ୍ତର ଦିଗରେ ଭୟଙ୍କର ଦିଶେ । ତା'ପରେ ଘଡ ଘଡି ସହ ଅସରାଏ ବର୍ଷା ହୋଇଯାଏ । ଚଡକ ମାରିବାର ବିସ୍ଫୋରଣ ଭଳି ଶବ୍ଦ ସମସ୍ତଙ୍କ ମନରେ ଭୟ ସୃଷ୍ଟି କରେ । କିନ୍ତୁ ସିରିପାଇ ଗାଁରେ ସେଦିନ ଅପରାହ୍ନରେ ବର୍ଷା ହେଲା ନାହିଁ । ମୟୂର ଡାକିବାର ଶବ୍ଦ ଏବଂ ହଳଦିବସନ୍ତର ଗୀତ ଶୁଣୁଶୁଣୁ ସନ୍ଧ୍ୟା ନଇଁ ଆସିଲା । ଜାନୀ ବୁଢା ଓ ତାହାର ସ୍ତ୍ରୀ ସିରିପାଇର ସବୁଠାରୁ ମିଠା ଆମ୍ବର ଚୋପା ଛଡାଇ ଆଣି ଦେଇଥିଲେ । ଜଙ୍ଗଲୀ ଆମ୍ବ ହୋଇଥିବ କି କ'ଣ । ଖୁବ୍ ସୁସ୍ୱାଦୁକର ଥିଲା ଓ ପେଟ ଭରି ଖାଇଥିଲି ସନ୍ଧ୍ୟାରେ । ଆମ୍ବ, ପଣସ ପାଚିଲେ ଆଦିବାସୀ ଖୁସି ହୁଏ । ଆମ୍ବ ଖାଇ ଟାକୁଆକୁ ସଞ୍ଚିବାକୁ ପଡେ । ପଣସ ମଞ୍ଜିକୁ ସିଝାଇ ମଧ୍ୟ ପେଟ ଭରିବାକୁ ପଡେ । ଜଙ୍ଗଲ ସାରା ଆମ୍ବ, ପଣସ ଗଛ । ମଣିଷଙ୍କ ସହ ଗାଈଗୋରୁ, ଭାଲୁ, ମାଙ୍କଡ ସମସ୍ତଙ୍କର ନଜର ସେ ଆଡକୁ । ଯେଉଁ ବର୍ଷ ବେଶୀ ଆମ୍ବ ଆସେ, ଜାନୀ ବୁଢ଼ାର ସ୍ତ୍ରୀ ବହୁତ ଆମ୍ବସଢା କରି ସିକରପାଇ ବଜାରରେ ବିକିଥାଏ । ଆମ୍ବ ବେଶୀ ଆସିଲେ ଆଦିବାସୀମାନଙ୍କ ଖୁସି କହିଲେ ନ ସରେ । ଆମ୍ବଟାକୁଆ ଅଭାବ ହୁଏ ନାହିଁ ବର୍ଷା ମାସରେ । ପେଟର ଭୋକ ପାଇଁ ଆଉ କ'ଣ ବିକଳ୍ପ ଅଛି ବର୍ଷା ଦିନେ ?

ସନ୍ଧ୍ୟା ନଇଁ ଆସିବା ପରେ ଏକ ନିସ୍ତବ୍ଧତା ସିରିପାଇ ଗାଁକୁ ଆଛନ୍ନ କରି ରଖିଥିଲା । ଡଙ୍ଗର ଚାଷରେ ଲାଗିଥିବା ଧାଙ୍ଗଡୀମାନେ ଗୋଟିକ ପରେ ଗୋଟିଏ ଫେରି ଆସିଲେ । ମୁଁ ମୁହଁ ଅନ୍ଧାରରେ ପ୍ରତ୍ୟେକ ଆଦିବାସୀ ଘରକୁ ଟିକିଏ ଭଲ ଭାବେ ଲକ୍ଷ୍ୟ କରୁଥିଲି । ନୁଆଁଣିଆ ଛଳ । ସମସ୍ତଙ୍କ ଘରେ ବାରଣ୍ଡା- ସାମନ୍ୟ ପ୍ରଶସ୍ତ । ଚାଳ ଗୁଡିକ ଜଙ୍ଗଲରୁ ମିଳୁଥିବା 'ପିରି' ଘାସ । ଧାନରୁ ବାହାରୁଥିବା ପାଳନଡା ଠାରୁ ତାହା ବେଶ୍ ଶକ୍ତ ଓ ଅନାୟାସରେ ୨-୩ ବର୍ଷ ରହିଯାଏ । ଯେତେ ଝଡ ବର୍ଷା ଆସୁ ପଛକେ ଆଦିବାସୀ ତାହାକୁ ଖାତିର କରେନାହିଁ । ଆଦିବାସୀ ଘର ଭିତର ଅପେକ୍ଷା ବାରଣ୍ଡାରେ ବେଶୀ ଚଳପ୍ରଚଳ ହୁଏ । ସବୁ ପରୁଷଲୋକେ ବାରଣ୍ଡାରେ ଉଠାବସା କରନ୍ତି । ଖରା, ବର୍ଷା, ଶୀତ- ସବୁବେଳେ ଚଦରଟିଏ ଘୋଡାଇ ହୋଇ ଠୁଙ୍କା ହୋଇ ବସନ୍ତି । କାଶୀପୁରରେ ଖରାଦିନେ ବି ଥଣ୍ଡା ଲାଗେ । ଡିଷ୍ଟ୍ରିକ୍ଟ ଗେଜେଟିୟର୍‌ରେ ଉଲ୍ଲେଖ କରାଯାଇଛି ଯେ ଏ ଅଞ୍ଚଳରେ ହାରାହାରି ସର୍ବାଧିକ ତାପମାତ୍ରା ୨୦ଡିଗ୍ରୀ ଏବଂ ହାରାହାରି ସର୍ବନିମ୍ନ ତାପମାତ୍ରା ୧୬ ଡିଗ୍ରୀ । ବାରଣ୍ଡାରେ ଗାଁଯାକର ସବୁ ପୁରୁଷ ବସି ଚୁପ୍‌ଚାପ୍ ହେଉଛନ୍ତି । ଘର ଭିତରେ ଆଦିବାସୀ ମାଆ କ'ଣ ଗୋଟାଏ ରୋଷେଇ କରୁଛି । ଲିଲି ଗଉଡଙ୍କ କ୍ୟାମ୍ପ୍‌ରେ ମଧ ରୋଷେଇ ଆରମ୍ଭ ହୋଇଛି ।

ରାତ୍ରିର ପ୍ରଥମ ପ୍ରହରରେ ମୁଁ କାହିଁକି ନିଜକୁ ଏକୁଟିଆ ମନେ କରୁଥିଲି । ଲିଲି ଗଉଡ ଚାଷବାସ ବିଷୟରେ କଥାବାର୍ତ୍ତା ପାଇଁ କୁଆଡେ ଚାଲି ଯାଇଥିଲେ । ଫେରିଲା ପରେ କହିଲେ ଯେ ସେ ଧାଙ୍ଗଡୀମାନଙ୍କୁ କହିଛନ୍ତି ଗୀତ ବୋଲିବା ପାଇଁ । ଆମକୁ ଗାଁ ମଝିରେ ବସିବାକୁ ହେବ । ନଗଲେ ସମସ୍ତେ ଖରାପ ଭାବିବେ । ଆଦିବାସୀ ମାଆ,ଝିଅମାନେ ଡଙ୍ଗର ଚାଷରୁ ଫେରି ଥକି ଯାଇଥିବେ । ପାହାଡ ଚଢ଼ିବା ଓ ତା'ପରେ ଦ୍ୱିପ୍ରହର ଖରାରେ କୋଦାଳ ବା କୁଡକି ନେଇ ମାଟି ହାଣିବା, ଗଛଲତା ସଫା କରି ପୋଡୁ ଚାଷ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା ଆଦି କେତେ କଷ୍ଟଦାୟକ କାର୍ଯ୍ୟ, ଜଣେ ବାହାରର ଅଣଆଦିବାସୀ ତାହା ଅନୁଭବ କରିପାରିବ ନାହିଁ । ଧାଙ୍ଗଡୀମାନେ ଗୀତନାଚ କରିବାକୁ ମୁଁ ସେଦିନ କାହିଁକି ପସନ୍ଦ କରିନଥିଲି । ତଥାପି କାଳେ ସେମାନଙ୍କର ଅବମାନନା ହେବ ମୁଁ ଯାଇ ଗାଁ ଦାଣ୍ଡରେ ଖଟ ଉପରେ ବସିଲି । ଉପରେ ମେଘମୁକ୍ତ ଆକାଶ ଓ ଅସଂଖ୍ୟ ନକ୍ଷତ୍ର । କିଛି ଦୂରରେ ଧାଙ୍ଗଡୀମାନେ ସାନବଡ଼ ହୋଇ ଦଶ ପନ୍ଦର ଜଣ । ସମସ୍ୱରରେ ତାଙ୍କର ନିଜ ଭାଷା କୁଭିରେ ସୁନ୍ଦର ଗୀତ ବୋଲିଲେ । ବୁଝିବା ସହଜ ନୁହେଁ । ମୁଁ ପଚାରି ବୁଝୁଥାଏ ଏ ଗୀତର ଅର୍ଥ କ'ଣ । ପ୍ରତି ଶବ୍ଦର ଅର୍ଥ ଥିଲା ସୁନ୍ଦର । ଛନ୍ଦମୟ ଥିଲା ଗୀତ ଗୁଡିକ । ଆମେ ଯେଉଁମାନେ ପରଦେଶୀ ସେମାନଙ୍କର ପାହାଡ ପର୍ବତ, ଝରଣା, ପଶୁପକ୍ଷୀ, ଫୁଲ, ଫଳର ମହତ କେବେ ବୁଝି ପାରିବୁକି ? ସେମାନଙ୍କ ଭଳି ଗୀତ ଗାଇ ପାରିବୁକି ? ସେମାନଙ୍କ ଭଳି ହସି ପାରିବୁକି ? ସେମାନଙ୍କ ଭଳି ଡଙ୍ଗର ଚଢି ପାରିବୁ କି ? ପରବମାନଙ୍କରେ ସେମାନଙ୍କ ଭଳି ଆନନ୍ଦ ମୁଖର ହୋଇ ପାରିବୁକି ? ସିରିପାଇ ଗାଁର ଧାଙ୍ଗଡାମାନେ, ପୁରୁଷମାନେ, ମୁରବୀମାନେ ଏ ଗୀତ ଶୁଣୁଥାନ୍ତି ଓ ଆହୁରି ଗାଇବାକୁ ପ୍ରେରଣା ଦେଉଥାଆନ୍ତି । ଗୀତ ସହ କୌଣସି ବାଦ୍ୟଯନ୍ତ୍ର ନାହିଁ । ନାଚିବା ବେଳେ ଢୋଲ ମାଦଳ ବାଜି ଥାଏ । ଧାଙ୍ଗଡୀମାନେ ହାତରେ ଝୁମ୍‌କା ଧରି ଥାଆନ୍ତି । ତାହା କିନ୍ତୁ ନିର୍ଦ୍ଦିଷ୍ଟ ମାସରେ ନିର୍ଦ୍ଦିଷ୍ଟ ପର୍ବରେ ଆୟୋଜିତ ହୁଏ । ଚାହିଁଲେ ସେମାନେ ନାଚି ପାରିବେ ନାହିଁ ମୁକ୍ତ ଭାବେ । ନାଚ ଓ ଗୀତ ଧାଙ୍ଗଡା ଧାଙ୍ଗଡ଼ୀଙ୍କ ଜୀବନ

ସର୍ବସ୍ୱ । ମେସିନ୍‌ଭଳି ତାହା ଚାଲିବ ନାହିଁ । ମୁଁ ଗୀତରୁ ଅର୍ଥ କିଛି ଆପଣା ଛାଏଁ ବାହାର କରିବାକୁ ଚେଷ୍ଟା କରି ବିଫଳ ହେଉଥିଲି । କିନ୍ତୁ ଗୀତ ଅନେକ ରାତି ପର୍ଯ୍ୟନ୍ତ ଚାଲିଥିଲା । ମୁଁ କିନ୍ତୁ ରାତ୍ରିଭୋଜନ ପାଇଁ ଫେରିଥିଲି । ଧାଙ୍ଗଡୀମାନଙ୍କର ଗୀତ ମୋତେ ମୋହଗ୍ରସ୍ତ କରିଥିଲା ଯେମିତି । ମୁଁ ଶୋଇ ପାରିନଥିଲି । ଗୋଟାଏ ପଟେ ଶୋଷଣ, ଅନ୍ୟାୟ ଓ ଅମାନୁଷିକ ଅତ୍ୟାଚାର ଓ ଅନ୍ୟପଟେ ଏକ ଅନାବିଳ, ନିଷ୍କପଟ, ସୁନ୍ଦର, ସଙ୍ଗୀତମୟ ଓ ସ୍ୱାଧୀନ ଜୀବନ । ମୋ ଭଳି ଜଣେ ମଣିଷ କାହିଁକି ଏଥିରେ ହସ୍ତକ୍ଷେପ କରିବ ? ଆଦିବାସୀମାନେ ଯେଉଁଠି ଅଛନ୍ତି ସେଠାରେ ନିଶ୍ଚିତ ସାହୁକାରମାନେ ରହିବେ । ଜୀବନର ଅର୍ଥ ଏଇଆ । ପରାଙ୍ଗପୁଷ୍ଟ ପାରାସାଇଟ୍‌ମାନେ ସମାଜସାରା ବ୍ୟାପି ଯାଇଛନ୍ତି । ରକ୍ତ ପିପାସୁ ନରାଧମମାନେ ବିଭିନ୍ନ ଅବତାରରେ ଏ ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି । ଏଇ ନରାଧମମାନେ ପ୍ରକୃତି କୋଳରେ ବଢିଥିବା ଆଦିବାସୀଙ୍କର ମୁକ୍ତି ଓ ସ୍ୱାଧୀନତାକୁ ବୁଝି ପାରିବେ କି ? ରାତି ସାରା ମୁଁ ଭାବନାର ଏକ ମହାସମୁଦ୍ରରେ ହିଁ ବୁଡି ଯାଇଥିଲି । ମନେ ପଡୁଥିଲା ଟି.ଇ.ଲରେନ୍‌ସ(ଛ.ର. ଖବଙ୍ଗଵରଭମର)ଙ୍କ ସେଭେନ୍ ପିଲାର୍‌ସ ଅଫ ଉଇସ୍‌ଡମ୍‌(Seven Pillars of Wisdom) ବହି କଥା । ଲେଖକ ମରୁଭୂମିର ନିସ୍ତବ୍‌ଧତା ଭିତରେ ସାଥୀ ସଂଗ୍ରାମୀମାନେ ଶୋଇ ପଡିଲା ପରେ ମୁକ୍ତ ଆକାଶକୁ ଚାହିଁ ଚାହିଁ ରଣନୀତି ତିଆରି କରୁଥାଆନ୍ତି । ବିକ୍ଷିପ୍ତ ଓ ବିଶୃଙ୍ଖଳିତ ଆରବମାନଙ୍କର ତୁର୍କୀସେନା ଓ ଶାସନ ବିରୋଧରେ ଲଢେଇ । ଲରେନ୍‌ସ୍ ଅଫ ଆରବିୟା (Lawrence of Arabia) ଲଢେଇର ପ୍ରତିଟି ପଦକ୍ଷେପ ସଂଯୋଜନା କରୁଥାଆନ୍ତି । ନକ୍ଷତ୍ରଖଚିତ ଆକାଶ ତଳେ ଓ ରାତ୍ରିର ଶେଷ ପ୍ରହରରେ ଏବଂ ସକାଳର ପ୍ରଥମ ଆଲୋକରେ । ସେଇ ସମୟରେ ଲେଖକ ଯାହା କିଛି ଲେଖୁଛନ୍ତି ତାହା ବିଶ୍ୱ ସାହିତ୍ୟରେ ଅମରକୃତି ହୋଇ ଯାଇଛି । ଆଦିବାସୀମାନଙ୍କୁ ନେଇ ସାହୁକାରୀ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରି ହେବକି ନାହିଁ ଓ ଏ ସଂଗ୍ରାମ ତେଲେଙ୍ଗାନା ବା ତେଭାଗା ଆନ୍ଦୋଳନ ଭଳି ରକ୍ତାକ୍ତ ହେବକି ନାହିଁ ମୁଁ କେବଳ ଇତିହାସର ପୃଷ୍ଠା ଆଲୋଚନା କରୁଥିଲି ମନେ ମନେ । କେତେବେଳେ ନିଦ ଆସିଯାଇଛି ମୁଁ ଜାଣି ନାହିଁ ।

ସକାଳୁ ଉଠିଲା ବେଳକୁ ସୂର୍ଯ୍ୟୋଦୟ ହୋଇ ସାରିଛି । ଗତ ରାତ୍ରିରେ ଗୀତ ଗାଉଥିବା ଧାଙ୍ଗଡୀମାନେ ମାଣ୍ଡିଆ ପେଯ ଧରି ପୋଡୁଚାଷ ପାଇଁ ପାହାଡର ମଥାନ ଉପରେ ପହଞ୍ଚି ସାରିଲେଣି ବୋଲି ସ୍ପଷ୍ଟ ଦେଖା ଯାଉଛି । ଜାନୀ ବୁଢା କହିଲା ଯେ ମୁଁ ଶୋଇ ପଡିଲା ପରେ କେତେବେଳେ ଡୁର୍‌କା(କଲରା ପତରିଆ ବାଘ) ଆସି ବାରଣ୍ଡାରେ କୁକୁରଟିଏ ଉଠାଇ ନେଇଛି । ଧାଙ୍ଗଡୀମାନଙ୍କ ଗୀତ ଗାଇବା ଶେଷ ହେବାକୁ କଲରା ପତରିଆ ଯେମିତି ଅନ୍ଧାରରେ ଅପେକ୍ଷା କରି ରହିଥିଲା । ମୁଁ ଅବାକ୍ ହେଲି ଧାଙ୍ଗଡୀମାନଙ୍କର ସାମର୍ଥ୍ୟ ଓ ଚଳଚଞ୍ଚଳତାକୁ ଲକ୍ଷ୍ୟ କରି । ରାତ୍ରି ସାରା ସମ୍ଭବତଃ ସେମାନେ ଗୀତ ଗାଇଛନ୍ତି । କିନ୍ତୁ ଥକି ନାହାଁନ୍ତି । ପାହାନ୍ତାରୁ ଉଠି ମାଣ୍ଡିଆ ପେଯ ରାନ୍ଧି ସେମାନେ ପୁଣି ଡଙ୍ଗର ଉପରେ ହାଜର ହୋଇଛନ୍ତି । ଏତେ ପରିଶ୍ରମ କାହା ପାଇଁ ? ସମ୍ଭବତଃ ନିଜ ଅପେକ୍ଷା ସାହୁକାର ପାଇଁ ଏସବୁ କରୁଛନ୍ତି । ପରିବାର କେତେ ପୁରୁଷରୁ ଋଣ ଆଣିଛି । ଯେତେ ଫସଲ ଅମଳ କରି ସାହୁକାରକୁ ଦେଲେ ମଧ୍ୟ ଋଣ ପରିଶୋଧ ହୋଇପାରୁନାହିଁ । ଋଣଗ୍ରସ୍ତ ପରିବାରଟିର ବୋଝ ହାଲୁକା ହେବା କେହି କେବେ କହୁ ନାହାଁନ୍ତି ।

ଅପରାହ୍ନରେ ଆଖ ପାଖ ଗାଁର ମୁଖିଆମାନେ ଆସିବେ ସିରିପାଇ ଗାଁକୁ ଓ ମୋ ସହ କଥାବର୍ତ୍ତା ହେବେ । ଭାବିଲି ମୁଁ ଆଉ ଗୋଟେ ଯୋଡେ ଗାଁ ବୁଲି ଆସିବା ଉଚିତ୍ ହେବ । ଲିଲି ଗଉଡଙ୍କୁ ପ୍ରସ୍ତାବ ଦେଲି । ସେ କହିଲେ ଯେ ସକାଳୁ ସକାଳୁ ସିର୍ଲି ଯୋଡି ଓ ଲିଲିଗୁମା ଗାଁ ବୁଲିଗଲେ ଠିକ୍ ହେବ । ଅବଶ୍ୟ ଗାଁର ସବୁଲୋକ ପୋଡୁ ଚାଷ ପାଇଁ ଡଙ୍ଗର ଚଢିଥିବେ । ଗାଁରେ ବୁଢାବୁଢୀ ଓ କୁକୁର ପଟେ ଦିପଟ ଛଡା ଆଉ କେହି ନଥିବେ । ତଥାପି ଏ ଗାଁ ସବୁ ଦେଖି ଆସିବା ମୋର ଯୋଜନା ଥିଲା । କେବଳ ସିରିପାଇ ଗାଁକୁ ଆଧାର କରି ଏ ଅଞ୍ଚଳର ବିକାଶ ଉପରେ ଆଲୋଚନା ଯଥେଷ୍ଟ ହେବ ନାହିଁ । ସିର୍ଲି ଯୋଡି ଗାଁରେ ପ୍ରାୟ ୨୦-୨୫ ପରିବାର । ପିଇବା ପାଣି ନାହିଁ । ରାସ୍ତା ଘାଟ ନାହିଁ । ଗାଁରୁ କେହି ଜଣେ ହେଲେ ସ୍କୁଲ ମାଡି ନାହାନ୍ତି । 'କେୟାର' ଖାଦ୍ୟ ପହଞ୍ଚେ ନାହିଁ । ସରକାରୀ ଚାଉଳ ଆସେ ନାହିଁ ପଞ୍ଚାୟତକୁ । ଏଏନ୍ଏମ୍(ANM) ଦିଦି କେବେ ହେଲେ ଦେଖା ଦିଏନାହିଁ । ଗାଁକୁ ଆସୁଥିବା ଲୋକଙ୍କ ଭିତରେ ଥାଆନ୍ତି ଫରେଷ୍ଟ ଗାର୍ଡ, ଟିକସ୍ଆଦାୟ ପାଇଁ ଆର୍. ଆଇ,କେବେ କେମିତି ପୁଲିସ୍, ଗ୍ରାମରକ୍ଷୀ ଓ ଚାଷ ଅମଳ ସମୟରେ ସିକର ପାଇର ସାହୁକାର । ବିଭିନ୍ନ ଲୋକଙ୍କ ବିଭିନ୍ନ ଉଦ୍ଦେଶ୍ୟ । ସିର୍ଲିଯୋଡିରେ ପୋଡୁଚାଷ ବହୁତ ହୁଏ । ଡଙ୍ଗରର ବଡ ବଡ ଶାଳ ଗଛକୁ ହାଣି ଓ ଜଳାଇ ପୋଡୁ ଚାଷ କରି ଆଦିବାସୀ ମାଣ୍ଡିଆ, କୋଶଳା, କାନ୍ଦୁଳ, ଅଳସୀ ଚାଷ କରିଥାଏ ଓ ପ୍ରତ୍ୟେକଟି ଜିନିଷ ଉପରେ ସାହୁକାରର ତୀକ୍ଷ୍ଣ ଦୃଷ୍ଟି ପଡିଥାଏ । ଏହା ଛଡା ତେନ୍ତୁଳି ଉପରେ ମଧ୍ୟ ଆଖି ପଡିଥାଏ ।

ଭାଲିଆ ଭଟା । ଗାଁ ନୁହେଁ ଗୋଟାଏ ପଡା- ୭/୮ଘର ବାସିନ୍ଦା । ଗାଁରେ କାହାର ଜମି ନାହିଁ । କାଶୀପୁରର ମୋହନ ରାଓ ସେ ଜମିକୁ ବନ୍ଧକ ରଖିଥିଲା କିଛି ବର୍ଷ ତଳେ । ଆର୍.ଆଇକୁ ହାତକରି ନିଜ ନାଁରେ ଜମିର ପଟ୍ଟା କରି ସାରିଛି । ଏବେ ଗାଁ ଲୋକେ ଭାଗ ଚାଷ କରୁଛନ୍ତି । ବେଶୀ କିନ୍ତୁ ଡଙ୍ଗର ଚାଷ ଉପରେ ନିର୍ଭରଶୀଳ । ପାଖରେ ଚିରସ୍ରୋତା ଝରଣାଟିଏ ବହୁଛି । ଲୋକେ ଯେମିତି ପାହାଡ ଓ ଝରଣାକୁ ନେଇ ବଞ୍ଚିଛନ୍ତି ।

ଲିଲିଗୁମା ବଡ ଗାଁଟିଏ । ଗୋଟାଏ ଛୋଟ ନଦୀ ଗାଁକୁ ଦୁଇ ଭାଗ କରିଛି । ଅର୍ଥାତ୍ ଦୁଇଟି ପଡାରେ ବିଭକ୍ତ କରିଛି । ବର୍ଷା ଦିନେ ନଦୀରେ ବହୁତ ପାଣି । ତେଣୁ ଯିବା ଆସିବା ସମ୍ଭବ ହୁଏ ନାହିଁ । ନଦୀ ସେପାରିରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ । କିନ୍ତୁ ଜଣେ ହେଲେ ଶିକ୍ଷକଙ୍କର ଦେଖାନାହିଁ । ଗାଁ ପାଖ ସମତଳ ଜମି କାଶୀପୁର ରଜାଙ୍କ ଜମିଦାରୀର ଅଂଶ ବିଶେଷ । ୧୯୭୫ ମସିହା ଜରୁରୀ ପରିସ୍ଥିତି ସମୟରେ ସିଲିଂ ଜମି ହିସାବରେ ଜମିହୀନ ଆଦିବାସୀଙ୍କୁ ବଣ୍ଟା ଯାଇଥିଲା । କିନ୍ତୁ ୧୯୮୦ ମସିହାରେ ସେ ଜମିକୁ ରାଜବଂଶୀୟ ସାମନ୍ତମାନେ ପୁଣି ଜବରଦସ୍ତି ଦଖଲ କରିନେଇ ଆଦିବାସୀମାନଙ୍କୁ ଭାଗ ଚାଷରେ ଦେଉଥିବା କଥା ମୁଁ ଶୁଣୁଥିଲି । ଲିଲିଗୁମାର ଘଞ୍ଚ ଶାଳଜଙ୍ଗଲ ଓ ବିସ୍ତୀର୍ଣ୍ଣ ଆମ୍ବତୋଟା । ଅଥଚ ଭୋକ ଉପାସର କାହାଣୀ ସେଦିନ ଜଣେ ଦୁଇଜଣ ବୟସ୍କ ଆଦିବାସୀ କହି ମୋତେ ସମ୍ମୋହିତ କରିଦେଇଥିଲେ ।



# ୪

ସିରିପାଇ ଗାଁରେ ସେଦିନ ଅପରାହ୍ନରେ ତେନ୍ତୁଳି ଗଛ ଛାଇରେ ଆଖପାଖ ଦଶଟି ଗାଁର ଲୋକଙ୍କୁ ନେଇ ମିଟିଂ ହେଲା । ବିଶେଷ କରି ମୁଖିଆମାନେ ଆସିଥିଲେ । ଆଦିବାସୀ ମାଆମାନେ କେହି ମିଟିଂକୁ ଆସିନଥିଲେ । କେବଳ ସିରିପାଇର ମାଆମାନେ ମିଟିଂ ସ୍ଥାନରୁ କିଛି ଦୂରରେ ଶୁଣିବା ଦୂରତା ଭିତରେ ବସିଥିଲେ । ଲିଲିଗଉଡ ମୋର ପରିଚୟ ଦେବାକୁ ଯାଇ କହିଥିଲେ ଯେ ମୁଁ କେମିତି ଉଚ୍ଚ ଶିକ୍ଷିତ । ଚାକିରି ନକରି କିପରି ଦେଶସେବା ପାଇଁ ନିଜକୁ ଉତ୍ସର୍ଗ କରିଛି । କାଶୀପୁରର ଶୋଚନୀୟ ଅବସ୍ଥା ଅନୁଭବ କରି ପ୍ରୋଜେକ୍ଟଟିଏ ଆରମ୍ଭ କରିବାକୁ ଯୋଜନା କରିଛି । ସରକାର ଓ ନେତାମାନେ ଆଜି ପର୍ଯ୍ୟନ୍ତ ଯାହା କରିନାହାନ୍ତି, ତାହାକୁ ମୁଁ ଅନାୟାସରେ କରି ପାରିବି ବୋଲି ତାଙ୍କର ବିଶ୍ୱାସ ଅଛି । ସେଇଥିପାଇଁ ମୋତେ ବୁଝାଇ ମନାଇ ଓ ଘାଟିଚଢାଇ ଏଠାକୁ ଆଣିଛନ୍ତି । ଅତୀତରେ ସିରିପାଇରେ କେତେ ପ୍ରୋଜେକ୍ଟ ହେବ ବୋଲି ଦରଖାସ୍ତ ଦିଆଯାଇଛି ଜିଲ୍ଲାପାଳ ଓ ମନ୍ତ୍ରୀ, ଏମ୍.ଏଲ୍.ଏ.ମାନଙ୍କୁ । ଗତ କୋଡିଏ ବର୍ଷଧରି ଜଳସେଚନ ପ୍ରୋଜେକ୍ଟ ପାଇଁ ମାଇନ୍‌ର ଇରିଗେସନ୍ ଡିପାର୍ଟମେଣ୍ଟ କେତେଥର ସର୍ଭେ କରିଛି । କେଶକେରି ଓ ମୀନାଖୁଣ୍ଟି ଉପରେ ଚିରସ୍ରୋତା ବଡ ନାଳଟିଏ । ସେଥିରେ ବନ୍ଧ ପକାଇ କେନାଲ୍ ଖୋଳିଲେ ଆଖପାଖ ଦଶଟିରୁ ଉର୍ଦ୍ଧ୍ୱ ଗାଁରେ ଜଳସେଚନ ହେବ । ପାଣି ଏତେ ଅଧିକ ଅଛି ଯେ ତାହା ଘାଟି ତଳେ ଥିବା ବନ୍ଧମାଣ୍ଡି, ଗୋଡିବାଲି ଭଳି ଅନ୍ୟ ପଞ୍ଚାୟତର ଗାଁମାନଙ୍କୁ ମଧ୍ୟ ଜଳସେଚନ ଯୋଗାଇଦେବ । ସର୍ଭେ ସରିଛି କିନ୍ତୁ କାମ ଆରମ୍ଭ ହେଉ ନାହିଁ । ମୁଁ ଚାହିଁଲେ କୁଆଡେ ଏ ଜଳସେଚନ ପ୍ରକଳ୍ପ ମଧ୍ୟ ସମ୍ଭବ ହୋଇପାରିବ । ଏ ଅଞ୍ଚଳକୁ ରାସ୍ତାଘାଟ ନାହିଁ । କେୟାର ଖାଦ୍ୟ ଓ ସାଧାରଣ ବଣ୍ଟନ ଚାଉଳ କେଉଁଠି ବାଟମାରଣା ହୋଇ ଅଟକି ଯାଉଛି । ସ୍କୁଲକୁ ମାଷ୍ଟର ଆସୁନାହିଁ । ଡାକ୍ତର, କମ୍ପାଉଣ୍ଡର ମଧ୍ୟ ଆସୁନାହାନ୍ତି । ଚିଠି ମାସକରେ ଥରେ ଡାକ ବିଭାଗର ରନର୍ ଜରିଆରେ ପହଞ୍ଚୁଛି । ଟି.ଡି.ସି.ସି.(TDCC) ସାହୁକାର ଠାରୁ ଆହୁରି ଶସ୍ତାରେ ତେନ୍ତୁଳି ଶାଳମଞ୍ଜି ଆଦି କିଣୁଛି । ଥାନା କାଶୀପୁରରେ ଥିବାରୁ ଚୋରି ଡକାୟତି ଖୁବ୍ ବଢିଛି । ମର୍ଡର ହେଲେ ବି କେହି ଜାଣୁ ନାହାଁନ୍ତି । ବ୍ୟାଙ୍କ ବାବୁ କେବେ ଆସୁଛିତ କେବେ ନାହିଁ । ବି.ଡି.ଓ., ସବ୍‌କଲେକ୍ଟର ଓ କଲେକ୍ଟର ସ୍ୱାଧୀନତା ପରଠାରୁ ଥରେ ଅଧେ ଆସିଛନ୍ତି । ଅଗଷ୍ଟ ପନ୍ଦର ଓ ଜାନୁୟାରୀ ଛବିଶ ତାରିଖରେ ସେଠାରେ ତ୍ରିରଙ୍ଗା ପତକା ଉଡେ ନାହିଁ । ସରକାର ନାହିଁ ଅଥଚ ସାହୁକାର ଅଛି । ମୁଁ ଚାହିଁଲେ ସବୁକିଛି ବଦଳି ଯିବ ।

ଗାଁରେ ମିଟିଂ କରିବା ମୋ ପାଇଁ କିଛି କଠିନ କାମ ନଥିଲା । କାଶୀପୁର ଆସିବା ପୂର୍ବରୁ ମୁଁ ପଶ୍ଚିମଓଡ଼ିଶାରେ କିଛିଦିନ ଅକ୍ସଫାମ୍ (OXFAM) ନାମକ ଆନ୍ତର୍ଜାତିକ

ସାହାଯ୍ୟକାରୀ ସଂସ୍ଥାରେ କାମ କରିଥିଲି । ତାହାଛଡା ରାଜସ୍ଥାନର ଆଜ୍‌ମୀର ଜିଲ୍ଲାର ତିଲୋନିଆ ନାମକ ଏକ ଗାଁରେ ସମାଜକାର୍ଯ୍ୟ ଏବଂ ଅନୁସନ୍ଧାନ କେନ୍ଦ୍ର ନାମକ ବିଶ୍ୱବିଖ୍ୟାତ ବେସରକାରୀ ସଂସ୍ଥାରେ ମୁଁ କାର୍ଯ୍ୟରତ ଥାଇ ପ୍ରଥମେ କାଶୀପୁରକୁ ଆସଥିଲି । ଏ ସଂସ୍ଥାରୁ ସବୁ ପ୍ରକାର ସହାୟତା ମିଳିଥିଲା । ଶ୍ରୀଯୁକ୍ତ ବଙ୍କର ରାୟ ଓ ତାଙ୍କର ସ୍ତ୍ରୀ ଶ୍ରୀମତୀ ଅରୁଣା ରାୟ ଏ ସଂସ୍ଥାର ସ୍ତମ୍ଭ ଓ ସବୁ ପ୍ରେରଣାର ଉତ୍ସ । ବଙ୍କର୍ ଇଂରେଜୀ ସାହିତ୍ୟର ଛାତ୍ର ଓ ସ୍କ୍ୱାସ୍ ଖେଳର ଜାତୀୟ ଚାମ୍ପିୟନ୍ । ବାଲ୍ୟଶିକ୍ଷା ପ୍ରସିଦ୍ଧ ଡୁନ୍ ସ୍କୁଲରେ ଏବଂ ବିଶ୍ୱବିଦ୍ୟାଳୟ ଶିକ୍ଷା ଦିଲ୍ଲୀର ସେଣ୍ଟ ଷ୍ଟିଫେନ୍‌ସରେ । ୧୯୬୭ ମସିହାରେ ବିହାରରେ ଯେଉଁ ହୃଦୟ ବିଦାରକ ମରୁଡି ପଡିଥିଲା ଓ ଶହଶହ ଲୋକ ମରିଥିଲେ ସେ ଜଣେ କଲେଜ ଛାତ୍ର ହୋଇ ମଧ ସ୍ୱେଚ୍ଛାସେବୀ ହିସାବରେ ରିଲିଫ୍‌କାମ ପାଇଁ ଆସିଥିଲେ । ସେଠାରୁ ଫେରିବାପରେ ଚାକିରି ନକରି ଗରିବଙ୍କ ଉତ୍‌ଥାନ ଏବଂ ବିକାଶମୂଳକ କାମପ୍ରତି ତାଙ୍କର ଅଙ୍ଗୀକାରବଦ୍ଧତା ବଢ଼ିଥିଲା । ତାଙ୍କର ବ୍ୟକ୍ତିଗତ ଉଦ୍ୟମରେ ୧୯୭୨ ମସିହାରେ ତିଲୋନିଆ ଗାଁରେ ଜନ୍ମଲାଭ କରିଥିଲା 'ସମାଜ କାର୍ଯ୍ୟ ଏବଂ ଅନୁସନ୍ଧାନ କେନ୍ଦ୍ର' । ଅରୁଣା ମଧ ଇଂରେଜୀ ସାହିତ୍ୟର ଛାତ୍ରୀ ଓ ବଙ୍କର୍‌ଙ୍କ ସହ ଧାୟୀ । ବାଲ୍ୟ ଶିକ୍ଷା ମାଡ୍ରାସର ପ୍ରସିଦ୍ଧ ନୃତ୍ୟ ସ୍କୁଲ କଳାକ୍ଷେତ୍ରରେ । ଭାରତନାଟ୍ୟମ୍‌ର ଖ୍ୟାତିନାମା ଶ୍ରୀମତୀ ରୁକ୍ମିଣି ଦେବୀ ଅରୁଣ୍ଡେଲ୍‌ଙ୍କ ଛାତ୍ରୀ । ୧୯୬୮ ମସିହାରେ ସେ ଭାରତୀୟ ପ୍ରଶାସନିକ ସେବା ବା ଆଇ.ଏ.ଏସ (IAS)ରେ ଯୋଗ ଦେଇଥିଲେ । କିନ୍ତୁ ଗରିବଙ୍କ ସାମାଜିକ ସମସ୍ୟା ଓ ସେମାନଙ୍କର ବିକାଶମୂଳକ ସମ୍ଭାବନାକୁ ଉପଲବ୍ଧି କରି ସେ ଆଇ.ଏ.ଏସ୍‌ରୁ ଇସ୍ତଫା ଦେଇଥିଲେ ୧୯୭୩ ମସିହାରେ ଓ ତିଲୋନିଆ ଗାଁରେ ଚାଲିଥିବା ସାମାଜିକ କାର୍ଯ୍ୟକୁ ତ୍ୱରାନ୍ୱିତ କରିଥିଲେ । ତିଲୋନିଆ ମଡେଲ ଓ ଏହାର ସଫଳତା ଦେଶ ବିଦେଶର ପତ୍ରପତ୍ରିକା ନିୟମିତ ପ୍ରକାଶିତ ହେଉଥିଲା । ବିଶ୍ୱବିଦ୍ୟାଳୟରେ ପଢୁଥିବା ସମୟରେ ଆମେ ଖୁବ୍ ଆକର୍ଷିତ ହୋଇଥିଲୁ ସେମାନଙ୍କ ପ୍ରତି । ମୋର କେତେଜଣ ବନ୍ଧୁ ଆଇ.ଏ.ଏସ୍. ପାଇ ୧୯୭୮ ମସିହାରେ ତିଲୋନିଆ ଯାଇଥିଲେ ଟ୍ରେନିଂ ପାଇଁ । ସେମାନେ ବଙ୍କର୍‌କୁ ମୋ କଥା କହିଥିଲେ । ବଙ୍କର୍ ସେମାନଙ୍କୁ କଥା ଦେଇଥିଲେ ଯେ ମୁଁ ଯଦି ତିଲୋନିଆରେ କିଛିଦିନ କାମ କରେ, ତେବେ ଓଡ଼ିଶାରେ ସମାଜ କାର୍ଯ୍ୟ ଓ ଅନୁସନ୍ଧାନ କେନ୍ଦ୍ରର ଏକ ଶାଖା ଖୋଲିବାକୁ ସେ ସବୁ ପ୍ରକାର ସାହାଯ୍ୟ ଦେବେ । ଏଇ ସର୍ତ୍ତରେ ମୁଁ ତିଲୋନିଆ ଯାଇଥିଲି । ଗରିବ ଆଦିବାସୀଙ୍କ ସଂଘର୍ଷମୟ ଜୀବନ ସହ ମୁଁ କୌଣସି ନା କୌଣସି ପ୍ରକାରେ ସାମିଲ୍ ହେବାକୁ ସ୍ୱପ୍ନ ଦେଖୁଥିଲି । ତିଲୋନିଆ ଯିବା ସେଦିଗରେ ଏକ ପଦକ୍ଷେପ ଥିଲା ।

ଅକ୍ସଫାମ୍ ଓ ତିଲୋନିଆରୁ ଯାହାକିଛି ବିକାଶମୂଳକ କାର୍ଯ୍ୟର ମୁଁ ଅନୁଭୂତି ହାସଲ କରିଥିଲି ତାହା ମୋର ସିଦ୍ଧାନ୍ତମୂଳକ ଚିନ୍ତାଧାରା ଓ ମତବାଦକୁ ସ୍ପଷ୍ଟ କରିଥିଲା । କାଶୀପୁର ପହଞ୍ଚିବା ପୂର୍ବରୁ ବଙ୍କର ରାୟଙ୍କ ସହାୟତାରେ ମୁଁ 'ଭାରତଦର୍ଶନ' କରିବାକୁ ସୁଯୋଗ ପାଇଥିଲି । ବାମପନ୍ଥୀ ଓ ଦକ୍ଷିଣପନ୍ଥୀ ନେତୃତ୍ୱ, ସାମାଜିକ ଓ ଧାର୍ମିକ ସଂସ୍ଥା, ସର୍ବୋଦୟ ଏବଂ ସମବାୟ ଆନ୍ଦୋଳନ, ଜନ ଆନ୍ଦୋଳନ ଏବଂ ଶ୍ରମିକ ସଂଗଠନ ଏସବୁ ସହ ପରିଚିତ

ହୋଇଥିଲି । ମୋତେ ଖୁବ୍ ପରିଶ୍ରମ କରିବାର ପଡିଥିଲା । କିନ୍ତୁ ଯେଉଁଭଳି ମଣିଷ ଓ ସେମାନଙ୍କର ଦୃଢ ମତବାଦ ସହ ମୁଁ ଭାବ ବିନିମୟ କରିଥିଲି ତାହା କେବଳ ସ୍ମୃତି ହୋଇଯାଇଛି । ବହିଟିଏ କାହିଁକି ଲେଖିଲି ନାହିଁ ଏବେ ମୁଁ ଅନୁଶୋଚନା କରୁଛି । କିନ୍ତୁ କେଜାଣି କାହିଁକି ରକ୍ତାକ୍ତ ସଂଘର୍ଷ ଓ ଉଗ୍ର ବାମପନ୍ଥୀ ଚିନ୍ତା ମୋ ଭିତରେ ପଶିବାକୁ ମୁଁ ପ୍ରଶୟ ଦେଇନଥିଲି । ଗାନ୍ଧୀବାଦ ଓ ଅହିଂସାର ମୂଲ୍ୟବୋଧ ସମାଜ ପରିବର୍ତ୍ତନର ଅସ୍ତ୍ର ହେବ ବୋଲି ମୁଁ ସବୁବେଳେ ବିଶ୍ୱାସ କରୁଥିଲି । ଏଇ ସମୟରେ ପାଉଲୋ ଫ୍ରେୟାରୀଙ୍କ ବହି ଓ ଚିନ୍ତାଧାରା ଆମଭଳି ଯୁବକମାନଙ୍କୁ ଆକର୍ଷିତ କରିଥିଲା । ସମାଜପରିବର୍ତ୍ତନ ପାଇଁ ଗରିବଙ୍କୁ କର୍ମ ଚିନ୍ତନ କରିବାକୁ ପଡିବ ଓ ସେମାନଙ୍କର ନୀରବତାର ସଂସ୍କୃତିକୁ ଭାଙ୍ଗିବାକୁ ପଡିବ - ଏହାଥିଲା ପାଓଲୋ ଫ୍ରେୟାରୀଙ୍କ ଚିନ୍ତାଧାରାର ମୂଳ ନିର୍ଯ୍ୟାସ । ମୋତେ ଖୁବ୍ ଅନୁପ୍ରାଣିତ କରିଥିଲା ଏକଥା । ଏହାଛଡା ଭାରତର '୧୯୭୫ ମସିହାର ଜରୁରୀ ପରିସ୍ଥିତି' ଓ ତାର ପରବର୍ତ୍ତୀ ସମୟର ରାଜନୈତିକ ଦୃଶ୍ୟ ମୋତେ ଖୁବ ବିଚଳିତ କରିଥିଲା । ସେଇ ସମୟରେ ରାଜନୈତିକ ଦଳ ବିନା ରାଜନୀତି ଓ ଏହା ମାଧ୍ୟମରେ ସାମାଜିକ ଓ ଆର୍ଥିକ ପରିବର୍ତ୍ତନର ବିଭିନ୍ନ ପରିକଳ୍ପନା ମୋତେ ଆକର୍ଷିତ କରିଥିଲା । ମୁଁ ଅସଂଗଠିତ ଗରିବଙ୍କ ଅଣରାଜନୈତିକ ସଂଗଠନରେ ବିଶ୍ୱାସ କରୁଥିଲି । ଏଇଭଳି ପ୍ରକ୍ରିୟାକୁ ସର୍ବାଙ୍ଗଭାବେ ମଧ୍ୟ ହୃଦୟଙ୍ଗମ କରିଥିଲି ।

ଗାଁର ଆଦିବାସୀମାନେ ଏତେ ସଂଖ୍ୟାରେ ମିଟିଂକୁ ଆସିଛନ୍ତି । ଆଶା ରଖିଛନ୍ତି ମୁଁ କିଛି କହିବି ଓ କିଛି ପ୍ରତିଶ୍ରୁତି ଦେବି । ମୋର ଶୁଭେଚ୍ଛୁମାନେ କାଶୀପୁରର ବିକାଶମୂଳକ କାର୍ଯ୍ୟରେ ସ୍କୁଲ, ସ୍ୱାସ୍ଥ୍ୟକେନ୍ଦ୍ର, ଅନାଥାଶ୍ରମ ଆଦି ଅନ୍ତର୍ଭୁକ୍ତ କରିବାକୁ ପରାମର୍ଶ ଦେଇଥାଆନ୍ତି । ଜଣେ ସରକାରୀ ଅଫିସର କାଶୀପୁରର ଦୁଗ୍ଧ ଓ ଘିଅ କଥା କହି ଗୋପାଳନ ଉପରେ ଗୁରୁତ୍ୱ ଦେବାକୁ ପ୍ରବର୍ତ୍ତେଇ ଥାଆନ୍ତି । ଅକ୍ସଫାମ୍‌ରେ ମରୁଡି ନିରାକରଣ କାର୍ଯ୍ୟକ୍ରମ ଓ ତିଲୋନିଆର ସମନ୍ୱିତ ଗ୍ରାମ୍ୟବିକାଶ କାର୍ଯ୍ୟକ୍ରମରେ ଲୋକମାନଙ୍କୁ ବିଭିନ୍ନ ସେବା ଓ ଶ୍ରମ ଯୋଗାଇବା ଉପରେ ଗୁରୁତ୍ୱ ଦିଆଯାଇଥିଲା । ତିଲୋନିଆରେ ଶିକ୍ଷା, ସ୍ୱାସ୍ଥ୍ୟ, ପିଇବା ପାଣି ଓ ହସ୍ତକଳା ଆଦି ଏଇ ସମନ୍ୱିତ ଗ୍ରାମ୍ୟ ବିକାଶର ମୁଖ୍ୟଧାରା ଥିଲା । କୃଷି ଓ ଅନ୍ୟାନ୍ୟ ଆନୁସଙ୍ଗିକ ପ୍ରଶ୍ନ ଉପରେ ସେତେଟା ଗୁରୁତ୍ୱ ଦିଆଯାଇନଥିଲା । ଜମିହୀନମାନଙ୍କୁ କେମିତି ଜମି ମିଳୁ, ରାଜସ୍ଥାନର ଶ୍ରେଣୀ ଓ ବର୍ଗ ସମାହିତ ସମାଜରେ ଏହା କ୍ରିୟାନ୍ୱିତ କରିବା ଅସମ୍ଭବ ଥିଲା । ଜମିଦାର ଓ ଠାକୁରମାନେ ଜମି ହଡପ କରି ନିଜ ଅକ୍ତିଆରରେ ରଖିଥାଆନ୍ତି । ଜମିହୀନ ଲୋକଟି ଅସହାୟ ଭାବେ ଦେଖୁଥାଏ ଯେ ସେ ପଟ୍ଟା ପାଇ ମଧ୍ୟ ଜମି ଦଖଲ କରିପାରୁ ନାହିଁ । କେହି ତାହାର ସାହାଯ୍ୟ କରିବାକୁ ନାହାନ୍ତି । କଥାବାର୍ତ୍ତା ବର୍ଷ ବର୍ଷ ଧରି ଚାଲିଛି, କିନ୍ତୁ ତା'ପାଇଁ ଆଶାର ଆଲୋକ ମଉଳିବାରେ ଲାଗିଛି । ରାଜସ୍ଥାନ କିନ୍ତୁ ଓଡ଼ିଶା ନୁହେଁ । ସେଠାକାର ବ୍ୟବସ୍ଥା ଆମ ରାଜ୍ୟର ବ୍ୟବସ୍ଥାଠାରୁ ଭିନ୍ନ । ଅଳ୍ପ କେତେ ଦିନ ମଧ୍ୟରେ ଆଦିବାସୀ ଗାଁମାନଙ୍କୁ ଅଧ୍ୟୟନ କରିବା ପରେ ମୁଁ ଯାହାକିଛି ବୁଝିଥିଲି ସେ ବିଷୟରେ ମିଟିଂରେ ଆଲୋଚନା ହେଉ ବୋଲି ମୁଁ ପ୍ରସ୍ତାବ ଦେଲି ।

ଲୋକମାନେ କିନ୍ତୁ ସେମାନଙ୍କର ସମସ୍ୟା କଥା କହିବାକୁ ଚେଷ୍ଟା କରୁ ଥାଆନ୍ତି । କିଏ କହୁଥାଏ ଯେ ଆମ୍ବ ଟାକୁଆ ଖାଇବା ତାଙ୍କର ଅଭ୍ୟାସ ହୋଇଯାଇଛି । ଆଉ କିଏ କହୁଥାଏ ଯେ କେସ୍‌ବାଡି ଲାଗିଛି ସବୁଆଡେ । ଫରେଷ୍ଟ କେସ୍, ରେଭିନ୍ୟୁ ଇନସ୍‌ପେକ୍ଟରର କେସ୍, ମଦରାନ୍ଧିବା କେସ୍, ପୋଲିସ୍‌ର କେସ୍ ଆଦି ସେମାନଙ୍କ ଉପରେ ବୋଝ ହୋଇ ପଡିଛି । ରାୟଗଡା ଗଲେ ଓକିଲ ଦେବାକୁ ପଡିବ ଓ ଖର୍ଚ୍ଚାନ୍ତ ହେବାକୁ ପଡିବ । ଏସବୁ ପାଇଁ ଋଣବାଡି କରିବାକୁ ପଡୁଛି । ସାହୁକାରର ଦ୍ୱାରସ୍ଥ ହେବାକୁ ପଡୁଛି । ସାହୁକାର ସବୁ ଫସଲ ଓ ଜଙ୍ଗଲଜାତ ଦ୍ରବ୍ୟ ଅସୁଲ କରୁଛି ସୁଧ ସହ । ସେମାନଙ୍କର ଅଣ୍ଟା ଭାଙ୍ଗି ଯାଇଛି ଋଣ ପରିଶୋଧ କରିକରି । ବର୍ଷସାରା ମୁହଁକୁ ଦାନା ଦେହକୁ ବସ୍ତ୍ର ଯୋଗାଡ କରିବା ଅସମ୍ଭବ ହୋଇପଡୁଛି । କିଏ କହୁଥାଏ ଯେ ସେମାନେ ଡଙ୍ଗର ଚାଷ କରିବାକୁ ବାଧ ହେଉଛନ୍ତି । ଡଙ୍ଗର ଉପରକୁ ଗଲେ ଫରେଷ୍ଟର ଆଉ ଗାର୍ଡମାନେ କେସ୍‌ରେ ପକାଇ ଦେଉଛନ୍ତି । ଡଙ୍ଗର ଚାଷରେ ଖୁବ୍ ପରିଶ୍ରମ । କେଉଁ ବର୍ଷ ଭଲ ଫସଲ ହେବତ କେଉଁ ବର୍ଷ କିଛି ମିଳବ ନାହିଁ । ସବୁ କିଛି ସାହୁକାର ପାଇଁ । ଫସଲ ସାହୁକାର ଘରକୁ ଯିବ । ମୁଁ ସାହୁକାର ବିଷୟରେ ଅଧିକ ଜାଣିବାକୁ ଚାହିଁଥିଲି । କିଏ ସେ? କେତେ ବର୍ଷ ହେଲା କାଶୀପୁର ଅଞ୍ଚଳକୁ ଆସିଛି? କେଉଁ ହିସାବରେ ଋଣବାଡି ଦେଉଛି ? ସାହୁକାର ବିରୁଦ୍ଧରେ ମହାଜନୀ କାରବାର ପାଇଁ କେସ୍ ଲାଗୁ ନାହିଁ କାହିଁକି ? ବ୍ୟାଙ୍କ ଓ ସମବାୟ ସମିତିମାନେ କ'ଣ କରୁଛନ୍ତି ? ଏସବୁ ପ୍ରଶ୍ନ ମୁଁ ପଚାରୁଥିଲି । କିନ୍ତୁ ଉତ୍ତର ଖୁବ୍ କମ୍ ଆସୁଥିଲା । ସାହୁକାର ବିରୁଦ୍ଧରେ କରିବା ଯେମିତି ଏକ ଗୁରୁତର ଅପରାଧ । ଯେତେବେଳେ ସେ ସାହା ଭରସା, ସେତେବେଳେ ତାହା ବିରୁଦ୍ଧରେ କିଛି କହିବା ସମ୍ଭବତଃ ଅନୈତିକ । ସିରିପାଇ ଭଳି ଜାଗାରେ ବାହାରୁ ପ୍ରଭାବ ପକାଇ ଥିବା ପ୍ରତ୍ୟେକ ଧରଣର ଲୋକ ହେଉଛି ସାହୁକାର । ସିଏ କାଶୀପୁରର ବ୍ରାହ୍ମଣ କିମ୍ବା ସିକରପାଇର କୁମୁଟି । ସିଏ ବନ୍ଧମାଣ୍ଡି କଲୋନୀରେ ଘର କରିଥିବା ସରକାରୀ ଶିକ୍ଷକ ନହେଲେ ଶଙ୍କରଡା ପାଖ ବିହାରରୁ ଆସି ମଦରାନ୍ଧୁଥିବା ବିହାରୀ ସାହୁ ।

କେଜାଣି କାହିଁକି କାଶୀପୁରର ବିକାଶ ଇତିହାସର ପୃଷ୍ଠା ଉନ୍ମୋଚନ କରିବା ଠିକ୍ ହେବ । ସ୍ୱାଧୀନତା ପରେ ନୂତନ କରି ଆରମ୍ଭ କରାଯାଇଥିବା ଓ ତତ୍‌କାଳୀନ ମନ୍ତ୍ରୀ ସ୍ୱର୍ଗତ ଏସ.କେ.ଦେଙ୍କ ଦ୍ୱାର ପରିକଳ୍ପିତ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ ପାଇଁ ଦେଶରେ ଯେଉଁ କେତୋଟି ବ୍ଲକ୍‌କୁ ଚୟନ କରାଯାଇଥିଲା ତାହା ଭିତରେ କାଶୀପୁର ଅନ୍ତର୍ଭୁକ୍ତ ହୋଇଥିଲା । କାଶୀପୁର କିନ୍ତୁ ସେତେବେଳେ (ପଚାଶ ଦଶକରେ) ଥିଲା କଳାହାଣ୍ଡି ଜିଲ୍ଲାର ଅଂଶ ବିଶେଷ । ବର୍ଷକୁ ସେ ସମୟରେ କୁଆଡେ ବଜେଟ୍ ଥିଲା ଏକକୋଟି ଟଙ୍କା । ଜିଲ୍ଲା ସଦର ମହକୁମା ଭବାନୀପାଟଣାରୁ ପ୍ରତ୍ୟକ୍ଷ ଯୋଗାଯୋଗ ନଥିଲା କାଶୀପୁର ସହିତ । ଏଣୁ ସେତେବେଳେ ଅଫିସର, ଠିକାଦାର ଓ ସ୍ଥାନୀୟ ପଞ୍ଚାୟତର କର୍ମକର୍ତ୍ତାମାନେ ଏସବୁ ବିକାଶର ଅର୍ଥକୁ ବାଟମାରଣା କରିଥିଲେ । ତା'ପରଠାରୁ କାଶୀପୁରକୁ ଯେତେ ଅନୁଦାନ ଆସୁଥିଲା ତାହା ବାଟମାରଣା ହେବାର ପରମ୍ପରାକୁ ସମୃଦ୍ଧ କରିଥିଲା । ଆଦିବାସୀଙ୍କ ପାଇଁ ଆଇ.ଟି.ଡି.ଏ ଏବଂ ଟିଡିସିସି ଆଦି ସଂସ୍ଥାମାନେ ଆଦିବାସୀଙ୍କ ବିରୋଧରେ କାର୍ଯ୍ୟମାନ କରୁଥିଲେ । କାରଣ ଏସବୁ ସଂସ୍ଥା ଅଣ ଆଦିବାସୀ ସାହୁକାର ଓ ମହାଜନଙ୍କ ନିୟନ୍ତ୍ରଣରେ ଥିଲା । ମୁଁ ଅନୁଭବ କରିଥିଲି ଯେ ଆଦିବାସୀଙ୍କ ନାମରେ

ଆସୁଥିବା ଅନୁଦାନକୁ ଆତ୍ମସାତ କରି ଗୋଟାଏ ଗୋଷ୍ଠୀ ବେଶ୍ ଲାଭ ଉଠାଇଛନ୍ତି । ଅଫିସର ଓ ସାହୁକାରଙ୍କ ସମ୍ପର୍କ କାଶୀପୁରର ସାମାଜିକ, ଆର୍ଥିକ ଓ ରାଜନୈତିକ ପ୍ରକ୍ରିୟାକୁ ବିନା ପ୍ରତିରୋଧରେ ପରିଚାଳନା କରୁଛି । ଏଇ ଗୋଷ୍ଠୀ ନିଷ୍ପତ୍ତି ନେଇଛନ୍ତି ସବୁବ୍ୟାପାରରେ । ସିରିପାଇର ମିଟିଂରେ ସେ ଦିନ ମୁଁ କିଛି କହିବି କହିବି ବୋଲି କହି ପାରିଲି ନାହିଁ । ମିଟିଂ ଉହାଡରେ ସାହୁକାରର ଉପସ୍ଥିତି ମୁଁ ଅନୁଭବ କରୁଥିଲି । ମୁଁ କିନ୍ତୁ ସେଦିନ ମନେ ମନେ ନିଷ୍ପତ୍ତି ନେଇଥିଲି ଯେ, କାଶୀପୁରରେ ମୁଁ ସ୍ୱାସ୍ଥ୍ୟକେନ୍ଦ୍ର ବା ଅନାଥାଶ୍ରମ ଖୋଲିବି ନାହିଁ । ମୁଁ ଲୋକଙ୍କୁ ସାହୁକାର ବିରୁଦ୍ଧରେ ଲଢ଼ିବା ଶିଖାଇବି ।



# ୪

କାଶୀପୁରକୁ ବିକାଶ ଓ ସମାଜ ପରିବର୍ତ୍ତନର କାର୍ଯ୍ୟକ୍ରମ ପାଇଁ ମୁଁ କାହିଁକି ଚିହ୍ନଟ କଲି ? ଏ ପ୍ରଶ୍ନ ବାରମ୍ବାର ଉଠିଛି ଓ ମୋତେ ଅନେକ ସ୍ପଷ୍ଟୀକରଣ ଦେବାକୁ ପଡିଛି । ଓଡ଼ିଶାରେ ଆଦିବାସୀ ଅଧ୍ୟୁଷିତ ଜିଲ୍ଲାମାନଙ୍କରେ ଏତେ ପଛୁଆ ଓ ଅବହେଳିତ ଅଞ୍ଚଳ ଥାଉ ଥାଉ କାହିଁକି ଏ ବ୍ଲକଟିକୁ ମୁଁ ଚୟନ କଲି ? ମୋ ମନ ଭିତରର ସବୁକଥା ଆଜି ପର୍ଯ୍ୟନ୍ତ ଖୋଲିକରି ମୁଁ କହିନାହିଁ । କିଛି ବ୍ୟକ୍ତ କରିସାରିଛି । ଆଉ କିଛି ଆବେଗ ଓ ତଥ୍ୟ ମୁଁ ପର୍ଯ୍ୟାୟକ୍ରମେ ପ୍ରକାଶ କରିବି । କିନ୍ତୁ ଅନେକ ଅକୁହାକଥା ରହିଯିବ ସବୁଦିନ ପାଇଁ । କାଶୀପୁରର ଆୟତନ ୧୫୦୦ ବର୍ଗ କିଲୋମିଟର । ୪୨୦ଟି ରାଜସ୍ୱ ଗାଁ ଓ ୮୦ଟି ପଡା । ୧୯୮୧ ମସିହା ଜନଗଣନା ଅନୁସାରେ ଜନସଂଖ୍ୟା ପ୍ରାୟ ଲକ୍ଷେ । ସେତେବେଳେ ଆଦିବାସୀ ଜନସଂଖ୍ୟା ପ୍ରାୟ ଶତକଡ଼ା ଅଶୀ । ହରିଜନମାନେ ପ୍ରାୟ ଶତକଡ଼ା ପନ୍ଦରଭାଗ ଓ ଅନ୍ୟାନ୍ୟ ଉଚ୍ଚବର୍ଗର ଜନସଂଖ୍ୟା ଶତକଡ଼ା ପାଞ୍ଚ । ପାହାଡ ପର୍ବତ, ଉପତ୍ୟକା, ଅରଣ୍ୟ ଓ ସବୁଜିମା, ନଦୀନାଳ ଓ ଚିରସ୍ରୋତା ଝରଣା ସବୁଆଡେ । ପାହାଡ ଶେଷ ହେଲେ ଉପତ୍ୟକାର ଆରମ୍ଭ । ଉପତ୍ୟକାର ସୀମାରେ ପୁଣି ପାହାଡ ଆଉ ପାହାଡ । ଆଖି ପାଇବ ନାହିଁ । ଅସମତଳ ଜମିକୁ ପାହାଚ ପାହାଚ କରି କଟାଯାଇ ଜମି କରାଯାଇଛି । ଧାଡିଏ ମଞ୍ଚା ତିଆରି କରାଯାଇଛି ଫସଲ ଜଗିବା ପାଇଁ । ଫସଲ ନଥିଲେ ଗାଈଆଳ ପିଲା ଗାଈ, ମଇଁଷି ଓ ଛେଳି ଚରାଉଛି ଏକେଲା । ମଇଁଷି ଉପରେ କେତେବେଳେ ବସିପଡି ବଇଂଶୀ ବଜାଉଛି ତ ଆଉ କେତେବେଳେ ଗୀତ ଗାଉଛି । ଦୂର ପାହାଡ ଉପରେ ଧାଙ୍ଗଡୀ ପୋଡୁ ଚାଷ କରି ଥକି ପଡିଲେ ପଦେ ଗୀତ ମଧ୍ୟ ବୋଲି ଦେଉଛି । ଏଠାକୁ ଆସିବାର କିଛି ଦିନ ପୂର୍ବରୁ ମୁଁ ତାମିଲ୍‌ନାଡୁର କୋଡାଇ କେନାଲ୍ ଅଞ୍ଚଳକୁ ଯାଇଥିଲି । କୋଡାଇ ପର୍ବତମାଳାର ଅବର୍ଣ୍ଣନୀୟ ସବୁଜିମା, ଚିରସ୍ରୋତା ଝରଣା ଓ ଜଳପ୍ରପାତ, ଲାଲ୍‌ମାଟିରେ ଆଦିବାସୀଙ୍କ ପୋଡୁଚାଷର ମୋଜାଇକ୍, ଖରାଦିନର ଶୀତଳ ଜଳବାୟୁ, ଆକାଶର ମେଘ ଘସି ହୋଇଯାଉଛି ଦୂର ପର୍ବତ ମାଳାରେ । ମୁଁ ଆନନ୍ଦ ବିଭୋର ହୋଇ ଅଟକି ଯାଇଥିଲି କେତେ ଦିନ । କାଶୀପୁରର ଦୃଶ୍ୟପଟ ଦେଖି ହଠାତ୍ କୋଡାଇ ସହ ସାମଞ୍ଜସ୍ୟ ଥିବା ଲକ୍ଷ୍ୟ କରିଲି । କାଶୀପୁରର ଉଚ୍ଚତା କୋଡାଇର ଉଚ୍ଚତାର ପ୍ରାୟ ଅଧା । ତଥାପି ରାୟଗଡାର ଲୋକେ କାଶୀପୁରକୁ କାଶ୍ମୀର କହିଥାଆନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି ନାହିଁ ।

କାଶୀପୁରରେ ବ୍ଲକ୍ ମହକୁମା ଓ ତହସିଲ୍ ଅଫିସ । ସେଠାରେ ଲକ୍ଷେ ଲୋକଙ୍କ ପାଇଁ ଗୋଟିଏ ଥାନା, ଗୋଟିଏ ଡାକ୍ତରଖାନା, ଗୋଟିଏ ଜାତୀୟକରଣ ବ୍ୟାଙ୍କ୍ । ବ୍ରାହ୍ମଣ ସାହି, ପାଇକସାହି, ହରିଜନ ପଡା, ଆଦିବାସୀ ପଡା, ବ୍ଲକ୍ କଲୋନୀର ରହୁଥିବା ସରକାରୀ

କର୍ମଚାରୀଙ୍କ ଘର । ପୂର୍ବପଟେ ରାଜାଙ୍କ ଛୋଟ ନଅର । ରାଜାଙ୍କ ନଅରକୁ ଲାଗି ସିଲିଂ ଜମି ପାଇଥିବା ମନ ନାମକ ଆଦିବାସୀର ବଗିଚ଼ । ବଗିଚ଼ରେ ମିଠା ଲିଚୁ ଗଛ । ୧୯୮୦ ମସିହାରେ ଲିଚୁ ମିଳୁଥିଲା ଟଙ୍କାକୁ କୋଡିଏଟା । ଆଉ ଜାମ ରୋଲର ଗଛ । କାଶୀପୁର ରାଜା କେଉଁ ଦୂରଦେଶରୁ ଚାରା ଆଣି ଲଗାଇଥିଲେ ରାଜବାଟୀରେ । ଜମି ସିଲିଂରେ ଯିବାରୁ ମନ ଆଦିବାସୀ ଏବେ ଭୋଗ କରୁଛି । ବ୍ରାହ୍ମଣ ସାହିକୁ ପଶିବା ବେଳକୁ ଜଗନ୍ନାଥଙ୍କ ମନ୍ଦିର । ରଥଯାତ୍ରା ହୁଏ କାଶୀପୁରରେ, ଆଦିବାସୀଙ୍କ ଭୀଷଣ କୋଳାହଳରେ । ରାଜା ମରି ଗଲେଣି । ନେପାଳୀ ରାଣୀ ଦାର୍ଜିଲିଂ ବା କଲିକତାରେ ରହନ୍ତି । ରାଜାଙ୍କର ଆଉ ଜଣେ ରାଣୀ ରହନ୍ତି ଟିକିରିରେ । ସେ ସ୍ୱତନ୍ତ୍ର ଓ ସ୍ୱାଧୀନ । କାଶୀପୁର ସହ କିଛି ସମ୍ପର୍କ ନାହିଁ । ରାଜା ନିଃସନ୍ତାନ । ଏଣୁ ତାଙ୍କର ଭଣଜା ଡକ୍ଟର ଦେବ୍ ରଥଯାତ୍ରା ଓ ଦଶହରାକୁ ରାୟଗଡାର ପ୍ରାକ୍‌ଟିସ୍ ଛାଡି ଆସନ୍ତି ରାଜକୀୟ ପରମ୍ପରା ରକ୍ଷା କରିବା ପାଇଁ । କିନ୍ତୁ ଜଗନ୍ନାଥ ମନ୍ଦିର ବେଶ୍ ପୁରୁଣା । ପାଖରେ ବ୍ରାହ୍ମଣ ବସ୍ତି, କାଶୀପୁରର ସାମାଜିକ, ଆର୍ଥିକ, ରାଜନୈତିକ ଓ ସାଂସ୍କୃତିକ କ୍ଷମତା ଓ ଐତିହ୍ୟର ମୂଳକେନ୍ଦ୍ର ବା ନ୍ୟୁକ୍ଲିୟସ୍ । ରାଜା ସେମାନଙ୍କୁ ଆଣିଥିଲେ କାଶୀପୁରକୁ ପୂଜା ଅର୍ଚ୍ଚନା କରିବା ପାଇଁ । ରାଜାଙ୍କ ପାଖଲୋକ ହିସାବରେ ସେମାନେ ଧୀରେ ଧୀରେ ନିଜର ପ୍ରାଧାନ୍ୟ ବିସ୍ତାର କରିଥିଲେ । ଜମିଦାର, ଠିକାଦାର, ସାହୁକାର ହେବାକୁ ସେମାନଙ୍କୁ ବେଶୀଦିନ ଲାଗି ନଥିଲା । ପଞ୍ଚାୟତ ଓ ପଞ୍ଚାୟତ ସମିତିର ପଦପଦବୀ ଅକ୍ତିଆର କରିବାକୁ ବିଶେଷ ପରିଶ୍ରମ କରିବାକୁ ପଡିନଥିଲା । କାଶୀପୁରର ପ୍ରଧାନ ରାସ୍ତା ବ୍ଲକ୍ ଅଫିସ ପାଖରେ ଯେମିତି ଶେଷ ହୋଇଯାଇଥାଏ । ଦୂର ପଞ୍ଚାୟତ ଗୁଡିକ ହେଲା ମାଣ୍ଡିବିଶି, ଗୋଡିବାଲି, ଶୁଙ୍ଗେର, ଅଡାଜୋର, ଚନ୍ଦ୍ରଗିରି, ମୁନୁଷଗାଁ, ମାଇକଞ୍ଚ, କୋଡିପାରି, ଡଙ୍ଗାସିଲ, ଶଙ୍କରଡା, ଶିରିପାଇ । ଦୂରଦୂରାନ୍ତର ପଞ୍ଚାୟତର ମୁଖ୍ୟାଳୟ ଗୁଡିକ ବର୍ଷରେ ଆଠ ଦଶ ମାସ କାଶୀପୁରରୁ ବିଚ୍ଛିନ୍ନ ହୋଇପଡନ୍ତି । କୌଣସି ଜଣେ ହେଲେ ସରକାରୀ କର୍ମଚାରୀ ସେ ଅଞ୍ଚଳକୁ ଯାଆନ୍ତି ନାହିଁ । ଶିକ୍ଷକମାନେ ସ୍କୁଲରେ ନଥାନ୍ତି । ଏ.ଏନ୍.ଏମ୍ ଦିଦି ବା ମ୍ୟାଲେରିଆ ୱାର୍କର ପହଞ୍ଚି ନାହିଁ । ଚାଉଳ, କିରୋସିନ୍ ଦେଖିବା ସ୍ୱପ୍ନ । ସରକାରୀ ଉନ୍ନୟନ କାର୍ଯ୍ୟକ୍ରମ ପହଞ୍ଚିବା ତ ଅନେକ ଦୂରରେ । ସମସ୍ତଙ୍କୁ ଆସିବାକୁ ପଡେ କାଶୀପୁର ହାଟକୁ । ଜିନିଷ କିଣାବିକା ଅପେକ୍ଷା ସାହୁକାର ପିଣ୍ଡାରେ ଘଣ୍ଟାଏ ବସି ଆଦିବାସୀ ପିକା ଟାଣେ ଓ ଆଶ୍ୱାସନା ଦିଏ ଯେ, ଏ ବର୍ଷ ସେ ଋଣ ପରିଶୋଧ କରିଦେବ । ସେ ପଳାୟନ କରିବ ନାହିଁ କି ଠକିବ ନାହିଁ । ସେ ଆଦିବାସୀ ଓ ସେ ମିଛ କେବେହେଲେ କହିବ ନାହିଁ ।

ମୋର ହୃଦୟଙ୍ଗମ ହୋଇଥାଏ ଯେ, ଦୂର ପଞ୍ଚାୟତରେ ଥିବା ଅପହଞ୍ଚ ଗାଁ ମାନଙ୍କୁ ସର୍ଭେ ନକଲେ କାଶୀପୁରର ସାମାଜିକ, ଆର୍ଥିକ, ରାଜନୈତିକ ଓ ଢ଼ାଞ୍ଚାଗତ ସ୍ଥିତିର ଅବଧାରଣା ସମ୍ଭବ ନୁହେଁ । ସିରିପାଇ ପରେ ମୋର ଦୃଷ୍ଟି ପଡିଥାଏ ମାଣ୍ଡିବିଶି ପଞ୍ଚାୟତ ଉପରେ । ମାଣ୍ଡିବିଶି ପହଞ୍ଚିବାକୁ ତିନୋଟି ପାଦଚଲା ରାସ୍ତା । ଗୋଟାଏ କୁଡକି ପଦର ଓ ନାଳଚୂଆଁ ଦେଇ ଯାଇଥାଏ, କିନ୍ତୁ ଘାଟି ରାସ୍ତା ଆବଡା ଖାବଡା । ଆଉ ଗୋଟିଏ ରାସ୍ତା ବ୍ଲକ୍

କଲୋନୀ ପଛପଟ ଶାଶୁବହୁମାଳୀ ପାହାଡ କାଟି ତିଆରି କରାଯାଇ ଥାଏ । ତଥାପି ତଳପଙ୍ଗା ଗାଁ ଦେଇ ମାଣ୍ଡିବିଶି ପହଞ୍ଚିବାକୁ ଏହା ଥିଲା ସହଜତମ ରାସ୍ତା ଓ ଦୁଇଟି ପଞ୍ଚାୟତର ଲୋକେ ଏ ରାସ୍ତାକୁ ବ୍ୟବହାର କରୁଥିଲେ । କିନ୍ତୁ ସବୁଠାରୁ ଦୁର୍ଗମ ରାସ୍ତା ଥିଲା ରସ୍ଗୁଡ଼ା ଗାଁ ଦେଇ ମାଣ୍ଡିବିଶି ଗାଁକୁ ପାଦଚଲା ରାସ୍ତା ସମୟ କମ୍ ଲାଗେ ପହଞ୍ଚିବାକୁ ।

ମୁଁ ଓ ମୋର ସାଥୀମାନେ ଏଇ ରସ୍ଗୁଡ଼ା ଘାଟି ଦେଇ ମାଣ୍ଡିବିଶି ଯିବାକୁ ନିଷ୍ପତ୍ତି ନେଇଥାଉ । କାରଣ ରସ୍ଗୁଡ଼ା ଘାଟି କୁଆଡେ ଚଢ଼ିବା ଓ ଓହ୍ଲାଇବା କାଶୀପୁର ବାହାରୁ ଆସିଥିବା ଲୋକଙ୍କ ପାଇଁ ଏକ ଚ୍ୟାଲେଞ୍ଜ ହୋଇଯାଇଥାଏ । ମାଣ୍ଡିବିଶି ପହଞ୍ଚିବାକୁ ହେଲେ ଭୋର ସକାଳୁ କୁକୁଡ଼ା ଡାକରୁ ବାହାରିବାକୁ ହେବ । ଜଗନ୍ନାଥ ମନ୍ଦିର ଅତିକ୍ରମ କଲା ପରେ ମନ ବଗିଚ୍ଛ ଦେଇ ରାଜାଙ୍କ ଉଆସ ପାଚେରି କଡରେ ଶାଶୁବହୁମାଳୀ ପର୍ବତ ତଳେ ପହଞ୍ଚିବାକୁ ହୁଏ । କାନ୍ଥଭଳି ପର୍ବତ ଛିଡା ହୋଇଛି ଓ ତା'ଉପରେ ଅଙ୍କାବଙ୍କା ପାଦଚଲା ରାସ୍ତାଟିଏ କେଉଁ ଯୁଗରୁ ମଣିଷ, ପଶୁ ଓ ବନ୍ୟଜନ୍ତୁଙ୍କ ପାଦଚିହ୍ନରେ ତିଆରି ହୋଇଛି । ଗୋଡ ଖସିବାର ସମ୍ଭାବନା ଖୁବ୍ ବେଶୀ । ଭାରି ସତର୍କତାର ସହ ଘାଟି ଉଠିବାକୁ ପଡେ । ମଝିରେ ମଝିରେ ଟିକିଏ ବସି ଥକ୍କା ମାରିବାକୁ ପଡେ । ଦମ୍ ହଜିଯାଏ ଘାଟି ଚଢିଲା ବେଳକୁ ।

ମାଳୀ ଉପରେ ବିସ୍ତୀର୍ଣ୍ଣ ସମତଳ ପଡିଆ । ଲାଲ୍ ଓ କଳାରଙ୍ଗରେ ମିଶ୍ରିତ ପଥର ଖଣ୍ଡମାନ ପଡିଥାଏ । ଲୌହ ମିଶ୍ରିତ ପଥର ବୋଲି ଜଣା ପଡୁଥାଏ ଓ ଓଜନିଆ ହୋଇଥାଏ । ମଝିରେ ମଝିରେ ପଥର ଗଦାର ସ୍ତୁପ ସବୁ ତିଆରି ହୋଇଥାଏ । ସ୍ଥାନୀୟ ଲୋକମାନେ କୁହନ୍ତି ଯେ ପ୍ରତ୍ୟେକଟି ମଣିଷ ଖିଆ ବାଘ ମରାଯିବାର ସ୍ମୃତି । କାଶୀପୁରର ରାମଗଣ୍ଡା(ବାଣୁଆ) ସେ ପଥର ଗଦା ଭିତରେ ଲୁଚିଥାଏ ବନ୍ଧୁକଧରି । ସଞ୍ଜ ନଇଁ ଆସିଲାବେଳକୁ ମଣିଷ ଖିଆ ବାଘ କାଶୀପୁର ବସ୍ତିକୁ ଆସିଥାଏ ପ୍ରାୟ । ରାମଗଣ୍ଡା ସେ ସମୟରେ ବାଘକୁ ନିର୍ଭୟରେ ମାରିଥାଏ । ମାଳୀ ଉପରେ ଛୋଟ ଛୋଟ ଗୁମ୍ଫା ବି ଥାଏ । ତା' ଭିତରୁ ଲାଲ୍ ମାଟି ମିଳେ ଯାହାକୁ କାଶୀପୁରର ସବୁ ଆଦିବାସୀ ମାଆମାନେ ଘରକାନ୍ଥରେ ଲିପନ୍ତି । ଆଦିବାସୀ ଗାଁ ସାରା ଲାଲ୍ ରଙ୍ଗ ଚହଟୁ ଥାଏ । ରସ୍ଗୁଡ଼ା ଗାଁରେ ପହଞ୍ଚିଲା ପୂର୍ବରୁ ଝରଣାଟିଏ (ପ୍ରାକୃତିକ ସ୍ରୋତ) ବା ନାଚୁରାଲ ସ୍ପ୍ରିଙ୍ଗ୍ (Natural Spring) ଭଳି ରାସ୍ତା କଡରେ ବହୁଥାଏ । ଗାଁ ଲୋକେ ଓ ପଥିକମାନେ ସମସ୍ତେ ସେଇଠି ଦଣ୍ଡେ ବସନ୍ତି ଓ ପାଣି ପିଅନ୍ତି । ସେ ପାଣି ଯିଏ ପିଇଛି ସେ କେବେ ହେଲେ ଭୁଲିପାରିବ ନାହିଁ । ରସ୍ଗୁଡ଼ା ଗାଁର ଅବସ୍ଥିତି ଅନେକ ଥର ବଦଳିଛି । ଯେତେ ଥର ମଣିଷଖିଆ ବାଘ ମାତିବ ଓ ଗାଁ ଲୋକଙ୍କୁ ଖାଇବ ସେତେଥର ଗାଁର ଅବସ୍ଥିତି ବଦଳିଯିବ । ଏବେ ରସ୍ଗୁଡ଼ା ଗାଁ ପାଖରେ କେତେବର୍ଷ ହେଲା ମଣିଷଖିଆ ବାଘ ଦେଖା ଦେଉନି । ଡୁରୁକା (କଲରା ପଟିରିଆ ବାଘ), ଭାଲୁ ବହୁତ ଅଛନ୍ତି । ସେମାନଙ୍କୁ ଡର ନାହିଁ କାହାର ।

ଶାଶୁବହୁମାଳୀ ଉପରେ କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟ ଏକ ଦୃଶ୍ୟ ଦେଖିବାକୁ ମିଳେ । ତାହା ହେଉଛି ଗାଈ, ମଇଁଷିଙ୍କ ଗୋଠ ଓ ତାହା ସମ୍ଭାଳୁଥିବା ଧୋବଲା ମାଝୀ । ଖରା ବର୍ଷା ଶୀତ ସବୁଦିନେ ମାଳୀ ଉପରେ ସେ ଗାଈ ଜଗିଥାଏ । ସାହୁକାରକୁ ନିର୍ଦ୍ଦିଷ୍ଟ ପରିମାଣର ଘିଅ ମାସକୁ ମାସ ଦେଇଆସେ । ବରାଦ ହେଲେ ଟାଙ୍ଗଡା ଦହି (ଖୁବ୍ ମୋଟା ଦହି) ଓ ଛେନା

ପିଠା ମଧ ଦେବାକୁ ପଡିଥାଏ । ସାହୁକାର ତାକୁ ବର୍ଷକୁ ଖାଇବା ପାଇଁ ଖାଦ୍ୟ ଓ ଖଣ୍ଡେ ଲୁଗା ଦେଇଥାଏ ।  ଛୋଟ କୁଡିଆଟିଏ କରିଥାଏ ସେଠି । ପାଖ ଚୁଲାରେ ଦୁଧ ଡେକ୍‌ଚିରେ ଫୁଟୁଥାଏ । ହାଣ୍ଡିରେ ଦହି ବସିଥାଏ  । ଚାଗଡା ଦହି ପ୍ରସ୍ତୁତ କରିବା ପ୍ରଣାଳୀ ସ୍ୱତନ୍ତ୍ର । ମସ୍ତବଡ ପଥର ତଳେ ଓଜନଦ୍ୱାରା ଛେନା ପିଠା ତିଆରି ହେଉଥାଏ । ଏକ ବର୍ଷଣ ମୁଖର ଅପରାହ୍ନରେ ମୁଁ ଧୋବଲା ମାଝୀର କୁଡିଆ ପାଖରେ ଥରେ ଅଟକି ଥିଲି । ତା'ର ଜୀବନ ଇତିହାସ, କାଶୀପୁରର ଇତିହାସ, ସାହୁକାରର ଗାଈ, ମଇଁଷି ଗୋଠ ଯାହାକୁ କାଶୀପୁରରେ ଅଡାର କହନ୍ତି, ତାହାର ଖାଦ୍ୟପେୟ, ଲାଭକ୍ଷତି ଜାଣିବାକୁ ମୁଁ କଥାବାର୍ତ୍ତାର ସୂଅ ଲମ୍ବାଇଥିଲି । ତା'ର ବାପା ସାହୁକାରର ଗୋଡିହୋଇ ଗାଈ ଜଗୁଥିଲା । ପିଲାଟି ଦିନରୁ ବାପା ପାଖରେ ରହି ଆସିଛି ସେ । ବାଘ ଭାଲୁଙ୍କୁ ଦେଖିଛି । ବର୍ଷା କାକର ଶୀତ ସବୁ ସହିଛି । କାଶୀପୁରର ହାଟ, ରଥଯାତ୍ରା ବା ଦଶହରା ଯିବାର ଆବଶ୍ୟକତା ନାହିଁ । ସାହୁକାର ତାର ପାଖଲୋକକୁ ପଠାଇ ହିସାବକିତାବ କରିଥାଏ । କେତେ ଗାଈ, ମଇଁଷି ଛୁଆ ଜନ୍ମ କଲେ, କେତେ ଘିଅ ଦହି ବାହାରିଲା ଓ କେତେ ଲାଭ କ୍ଷତି ହେଲା । ସବୁର ହିସାବ ଦେବାକୁ ହୁଏ ଓ ମିଛ କହି ହୁଏ ନାହିଁ । ମାସିକ ଯେତିକି ପ୍ରାପ୍ୟ ସେ ସାହୁକାରକୁ ଦେଲାପରେ ଯାହା ମିଳିଯାଏ ତାହା ବଞ୍ଚିବା ପାଇଁ ଯଥେଷ୍ଟ । ଗାଁରେ ସ୍ତ୍ରୀ । କୁଲି ଭୂତି କରି ଚଳେ । ଜମି ନାହିଁ । ବେଳେବେଳେ ଧୋବଲା ମାଝୀର ସାଥୀରେ ମାଳୀ ଉପରେ ଆସି ରହିଥାଏ ।

ଧୋବଲା ମାଝୀ କଥା ଶୁଣିଲାବେଳେ ମୁଁ ରୋମାଞ୍ଚିତ ହୋଇଥିଲି ଓ ନିଜକୁ ପୁନଃ ଆବିଷ୍କାର କରୁଥିଲି । ଜୀବନରେ ମୋର ଏକମାତ୍ର ଅଭିଳାଷ ଥିଲା ଭଲ ପାଇବା ଓ ବନ୍ଧୁତା । ଅନାବିଳ ସମ୍ପର୍କ ଓ ସସ୍ନେହ ଅନ୍ୱେଷା । ରେଭେନ୍‌ସା କଲେଜର ପଡିଆ ଭିତରେ ଥିବା ଭଗ୍ନପ୍ରାୟ ସିମେଣ୍ଟ ବେଞ୍ଚରେ ୧୯୬୮ରୁ ୧୯୭୨ ମସିହା ପର୍ଯ୍ୟନ୍ତ  ଖରା, ବର୍ଷା, ଶୀତ ସବୁ ସନ୍ଧ୍ୟାରେ ଆମେ ଯେଉଁମାନେ ଆସର ଜମାଉଥିଲୁ, ସେଥିରେ ଥିଲେ ଲଳିତ ପଟ୍ଟନାୟକ, ଅରବିନ୍ଦ ବେହେରା, ଗୋପବନ୍ଧୁ ପଟ୍ଟନାୟକ, ଆଶୁତୋଷ ମିଶ୍ର, ଦୁର୍ଗା ମହାପାତ୍ର, ଭଞ୍ଜ ମହାପାତ୍ର ଓ ଆହୁରି ଅନେକ ସାଙ୍ଗସାଥୀ । ଆମେ ସବୁ ଥିଲୁ ସ୍ୱପ୍ନବାଦୀ -ସ୍ୱପ୍ନରେ ଭାସୁଥିଲୁ । ଆମେ ଦୂରଦୂରାନ୍ତରର ଲକ୍ଷ୍ୟ ଭ୍ରଷ୍ଟ ପଥିକ ହେବାକୁ ଚାହୁଁଥିଲୁ । ଅସୀମ ଆକାଶର ଉଡନ୍ତା ଚଢେଇ ଭଳି ଦିଗ୍‌ବଳୟ ତଳେ ହଜି ଯିବାକୁ ଚାହୁଁଥିଲୁ । ଆମେ ଅମଡାବାଟରେ ଯିବାକୁ ବ୍ୟାକୁଳ ହେଉଥିଲୁ ଓ ସଂସାରର ବନ୍ଧନରେ ବାନ୍ଧି ନହେବାକୁ ପ୍ରତିଜ୍ଞାବଦ୍ଧ ହୋଇଥିଲୁ ।

ଆମେ ସମ୍ପର୍କର କ୍ୟାସଲ୍ ଗଢୁଥିଲୁ । ଭଲ ପାଇବା ଓ ବନ୍ଧୁତାର ଡୋରିରେ ବାନ୍ଧି ହୋଇଯାଇଥିଲୁ । ଆମେ ପଢିଥିଲୁ ମାଥ୍ୟୁ ଆର୍ନୋଲଡଙ୍କ 'ସ୍କଲାର ଜୀପ୍‌ସୀ' (Scholar Gypsy) ଏବଂ ହରମାନ୍ ହେସେଙ୍କ 'ସିଦ୍ଧାର୍ଥ' ଏବଂ 'କୁଲ୍‌ପ' । ଆମେ ପଢ଼ିଥିଲୁ ଗୋପୀ ମହାନ୍ତିଙ୍କ 'ପରଜା', ମନୋଜ ଦାସଙ୍କ 'କଥା ଓ କାହାଣୀ' ଏବଂ ଚିତ୍ତରଞ୍ଜନ ଦାସଙ୍କ 'ଜୀବନ ବିଦ୍ୟାଳୟ' । ଆମେ ଉତ୍‌ପ୍ରେରିତ ହୋଇଥିଲୁ, ରୋମାଞ୍ଚିତ ହୋଇଥିଲୁ । ଆଦିବାସୀ ଅଞ୍ଚଳକୁ ଯାଇ ଭଲ ପାଇବା ଓ ବନ୍ଧୁତ୍ୱର ଏକ ପରୀକ୍ଷା କରିବାର ସ୍ୱପ୍ନରେ ମସଗୁଲ୍ ହୋଇଥିଲୁ । ଆମେ ଶପଥ କରିଥିଲୁ ବୋଧେ ଯେ ଯିଏ ଯେଉଁ ପେଶାରେ ରହୁ, କିନ୍ତୁ ଏ

ସ୍ୱପ୍ନ ସମ୍ଭବତାର ପ୍ରକ୍ରିୟାରେ ଯୋଗ ଦେଉ । ଲଳିତ ରସାୟନ ବିଜ୍ଞାନର ଛାତ୍ର ଥିଲା ଓ ବଞ୍ଚିବା ଅପେକ୍ଷା ମରିବା ସହଜ ବୋଲି ଆତ୍ମ ହତ୍ୟା କରିଥିଲା । ଭଞ୍ଜ ଗଣିତର ଛାତ୍ର ଥିଲା ଓ ଶେଷରେ ଜ୍ଞାନବିଜ୍ଞାନର ଗବେଷଣାରେ ମାନସିକ ଭାରସାମ୍ୟ ହରାଇ ବସିଲା । ଅନ୍ୟ ବନ୍ଧୁ ଓ ସହଧର୍ମୀମାନେ ଆଜି ବିଭିନ୍ନ ସ୍ତରରେ ଔପଚାରିକତାର ସହ ପ୍ରତିଷ୍ଠିତ । ମୁଁ କିନ୍ତୁ ସେଇ ଅଜଣା ଉତ୍ତେଜନାରେ ପ୍ରଭାବିତ ଉତ୍‌ପ୍ରେରିତ ହୋଇଥିଲି ଓ କାଶୀପୁର ପହଞ୍ଚିବା ସେଇ ସ୍ୱପ୍ନର ଅଂଶ ବିଶେଷ । ଏକ ଅବଚେତନ ମନର ଅଜଣା ପୁଲକ । ସିରିପାଇ, ମାଣ୍ଡିବିଶି, ରସ୍ତୁଗୁଡା ଓ ସେଠାରେ ରହୁଥିବା ସରଳ ଆଦିବାସୀ ମଣିଷଙ୍କ ସହ ଚିରନ୍ତନ ସମ୍ବନ୍ଧ ସ୍ଥାପନ ଓ ଭଲପାଇବାର ଏକ ନୂତନ ଅଧ୍ୟାୟ ଆରମ୍ଭ କରିବାକୁ ସମ୍ଭବତଃ ମୁଁ କାଶୀପୁରରେ ପହଞ୍ଚିଥିଲି ।



## ୬

କାଶୀପୁରରେ ପ୍ରତି ବୁଧବାର ଦିନ ସାପ୍ତାହିକ ହାଟ ବସେ । ଏହା କିଣାବିକାର ମୁଖ୍ୟକେନ୍ଦ୍ର । ଏଠିକି ଆସନ୍ତି କାଚ ବେପାରୀ, ଶୁଖୁଆ ବେପାରୀ, ଲୁଗା ବେପାରୀ, ଗୁଡାଖୁ ବେପାରୀ । ଆହୁରି ମଧ୍ୟ ବେଶୀ ବିକ୍ରି ହୁଏ ବସ୍ତାବସ୍ତା ଲଙ୍କା ମରିଚ । ହାଟ ଭିତରେ ଚା, ପକୋଡିର ଗୁଡିଆ ଦୋକାନ ବି ଅନେକ ବସିଥାଏ । ଆଦିବାସୀମାନେ କାଶୀପୁର ହାଟକୁ ବଜାର କୁହନ୍ତି । କିଏ ବିକିବାକୁ ଆଣିଥାଏ ମକା, ମାଣ୍ଡିଆ । କେଉଁ ସମୟରେ କେଉଁ ଜିନିଷ ମିଳେ ତାହାର ଏକ ହିସାବ ଥାଏ । ଫସଲ ଅମଳ ପରେ ପରେ କାନ୍ଦୁଲ(ହରଡ), କଟିଙ୍ଗ୍(ଡାଲିଜାତୀୟ ଫସଲ), ଅଳସୀ (ତୈଳବୀଜ) ଆଦି ଜିନିଷ ଆସେ ବିକ୍ରିବଟା ପାଇଁ। ରଥଯାତ୍ରା, ଦଶହରା, ପୌଷପର୍ବ ଓ ଚଇତିପର୍ବ ବେଳକୁ ହାଟରେ ଗହଳି ବଢିଯାଏ । ଲୁଗାପଟା ଖୁବ୍ ବିକ୍ରି ହୁଏ । ଛେଳି, କୁକୁଡା ବି । କାଶୀପୁର ବଜାରକୁ ଆସନ୍ତି ଆଖପାଖ ଛଅଟି ପଞ୍ଚାୟତର ପୁରୁଷ, ସ୍ତ୍ରୀ ଓ ପିଲାଛୁଆ । ସେଦିନ ସବୁଆଡେ ଭିଡ । ବ୍ୟାଙ୍କ, ବ୍ଲକ୍ ଅଫିସ୍, ତହସିଲ୍ ଅଫିସ, ଟି.ଡି.ସି.ସି. ଅଫିସ୍, ଡାକ୍ତରଖାନା ଆଦି ସବୁଠାରେ ଭିଡ । ବସ୍ ବି ଭିଡ । ବେପାରୀମାନେ ଆସନ୍ତି ରାୟଗଡାରୁ । ବସ୍ ଛଡା ଦୁଇ ତିନୋଟି ଟ୍ରକ୍ ମଧ୍ୟ ଆସେ ପ୍ରତ୍ୟେକ ହାଟ ଦିନ । ସିଜିନ୍ ସମୟରେ ଆଠ ଦଶଟି ଟ୍ରକ୍ ଆସେ ଜିନିଷ ଧରି । ଫେରିଲା ବେଳକୁ ପୂରା ଲୋଡ୍ ନେଇ ଫେରେ ।

କାଶୀପୁର ହାଟଦିନ ସବୁଠାରେ ବେଶୀ ଭିଡ ହୁଏ ସାହୁକାରମାନଙ୍କ ଘରେ । ସାହୁକାର ପିଣ୍ଡାରେ ଆଦିବାସୀମାନେ ନିଶ୍ଚିତ ଭାବେ ଆସି ବସିବେ ଓ ନମସ୍କାର କରି ଦି'ପଦ ସୁଖଦୁଃଖ ହୋଇ ଫେରିବେ । ବ୍ୟାଙ୍କ୍ ମ୍ୟାନେଜର ମୋତେ ତଥ୍ୟ ଦେଇ କହୁଥିଲେ ଯେ, ବ୍ୟାଙ୍କ୍ ଖୋଲିବା ପରେ ଏବେ ସାହୁକାରର ଋଣ ଲଗାଣି ସାମାନ୍ୟ କମ୍ ହୋଇଛି । କିନ୍ତୁ ଆଦିବାସୀ ପ୍ରଥମେ ଋଣ ପାଇଁ ସାହୁକାର ପାଖକୁ ଯିବ । ସୁନା ବନ୍ଧା ରଖିବାକୁ ହେଲେ ସାହୁକାରକୁ ବାଛିବ । ଏଥିରେ ଫେଲ୍ ମାରିଲେ ବ୍ୟାଙ୍କ୍‌କୁ ଆସିବ । ପ୍ରତ୍ୟେକ ସାହୁକାରଙ୍କ ଦଖଲରେ ଏରିଆ ରହିଛି । ନିର୍ଦ୍ଦିଷ୍ଟ ଗାଁ ଓ ପଞ୍ଚାୟତ ପାଇଁ ନିର୍ଦ୍ଦିଷ୍ଟ ସାହୁକାର । କାଶୀପୁରରେ ବ୍ୟାଙ୍କ୍ ଓ କୋଅପରେଟିଭ୍ ଲୋକପ୍ରିୟ ହୋଇନାହିଁ ଜାଣିବାକୁ ବେଶୀ ସମୟ ଲାଗେ ନାହିଁ । କାଶୀପୁର ଅଞ୍ଚଳରେ ବିଭିନ୍ନ ଦିନ ବିଭିନ୍ନ ସ୍ଥାନରେ ହାଟବସେ । ଗୁରୁବାର ଦିନ ସୁଙ୍ଗେର ଠାରେ, ଶୁକ୍ରବାର ଟିକିରି ଠାରେ, ଶନିବାର ଗୋରଖପୁର, ଓ ରବିବାର ଦିନ ଡଙ୍ଗାସିଲ୍‌ଠାରେ ଛୋଟ ଛୋଟ ହାଟ ବସେ । ଏଇସବୁ ହାଟକୁ କାଶୀପୁର ଓ ରାୟଗଡାର ବେପାରୀମାନେ ବିଭିନ୍ନ ସାମଗ୍ରୀ ଧରି କେମିତି କେମିତି ପହଞ୍ଚନ୍ତି । କିନ୍ତୁ ସବୁ ହାଟବଜାର ପାଖରେ ସାହୁକାରମାନେ ଆସ୍ଥାନ ଜମାଇଛନ୍ତି । ଘରଦ୍ୱାରା କରିଛନ୍ତି । ଜମି ବାଡି କିଣିଛନ୍ତି । ଦୋକାନ ଖୋଲିଛନ୍ତି ।

ଆଖ ପାଖ ଗାଁରେ ଭୀଷଣ ପ୍ରଭାବ ବିସ୍ତାର କରିଛନ୍ତି । ରାଜନୈତିକ ନେତା ମଧ୍ୟ ଜଣେ ଅଧେ ହୋଇ ବିଭିନ୍ନ ପାର୍ଟିରୁ ସରପଞ୍ଚ ପାଇଁ ପ୍ରତିଦ୍ୱନ୍ଦିତା ମଧ କରିଛନ୍ତି । କାଶୀପୁରର ସାମାଜିକ, ଆର୍ଥିକ ଓ ରାଜନୈତିକ ପରିସ୍ଥିତି ଜାଣିବାକୁ ହେଲେ, ସବୁ ହାଟ ବଜାର ବୁଲି ଦେଖିବାକୁ ହେବ ବୋଲି ମୋର ହୃଦ୍‌ବୋଧ ପ୍ରଥମେ ହୋଇଥିଲା ।

ବ୍ୟାଙ୍କ ମ୍ୟାନେଜର ରତାଚୁଆଁ ଗାଁର ଆଦିବାସୀ ନେତା ରାଜୀବ ମାଝୀ ସହ ପରିଚିତ କରାଇ ଦେଇଥିଲେ । ଡେଙ୍ଗା ହୋଇ 'ମଧ୍ୟ ବୟସ୍କ' ମଣିଷଟିଏ । ଗୋରଖପୁର ସ୍କୁଲରେ ନବମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢିଛି । ଝଲାକ ଚତୁର ବୋଲି କଥାବାର୍ତ୍ତାରୁ ଜାଣି ହେଲା । ଭୂଦାନକର୍ମୀ ହିସାବରେ କିଛି ଦିନ କାର୍ଯ୍ୟ କରିଥିଲା ବୋଲି କହୁଥିଲା । ସବୁ ସରକାରୀ କର୍ମଚାରୀଙ୍କର ସେ ପାଖଲୋକ । ଡାକ୍ତର ହୁଅନ୍ତୁ କି ଥାନା ବାବୁ ହୁଅନ୍ତୁ, ତାକୁ ନଧରିଲେ କୋଡିପାରି ଓ ଡଙ୍ଗାସିଲ୍ ଦୁଇଟି ପଞ୍ଚାୟତ ଭିତରେ ପଶିହେବ ନାହିଁ ବା କୌଣସି କାର୍ଯ୍ୟ ହୋଇପାରିବ ନାହିଁ । ବ୍ୟାଙ୍କକୁ କେହି ଋଣ ନେବାକୁ ଆସିବେ ନାହିଁ । କେୟାର ଖାଦ୍ୟ ସେ ଅଞ୍ଚଳକୁ ଯିବ ନାହିଁ । ବି.ଡି.ଓ ସେ ଅଞ୍ଚଳରେ କୌଣସି ଉନ୍ନୟନ କାମ ମଧ୍ୟ କରିପାରିବେ ନାହିଁ । ତହସିଲ୍‌ଦାର ଓ ଆର.ଆଇ.(RI)ଟିକସ ଆଦାୟ କରିପାରିବେ ନାହିଁ । ରାଜୀବ ମାଝୀ ସହ ପ୍ରଥମ ଦେଖାରେ ମୁଁ ଖୁବ୍ ପ୍ରଭାବିତ ହୋଇଥିଲି । ବ୍ୟାଙ୍କ ମ୍ୟାନେଜର୍ ମଧ୍ୟ ମୋର ପରିଚୟ ତା'କୁ ଦେଇ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲେ । ମୁଁ ତା'ସହ ପରାମର୍ଶ କରିବାକୁ ମନସ୍ଥ କରିଥିଲି । ଆଦିବାସୀଙ୍କ ଭାଷା ଓ ସଂସ୍କୃତି ବିଷୟରେ ଆଦିବାସୀଙ୍କ ଉପରେ 'ବନଫୁଲ' ନାମରେ ଗୋଟିଏ ପତ୍ରିକା ବାହାରୁ ଥାଏ । ଗୋଟାଏ ସଂଖ୍ୟାରେ ଆଦିବାସୀମାନଙ୍କ କନ୍ଧ, କୁଭି ଭାଷା କେମିତି ଶିଖିବ ଉଲ୍ଲେଖ କରାଯାଇଥାଏ । ରାଜୀବ ମାଝୀ କହୁଥିଲା ଯେ ତା'ପାଖରେ 'ବନଫୁଲ'ର ଅନେକ ପୁରୁଣା ସଂଖ୍ୟା ଅଛି । ତା'ର ଲେଖା ମଧ୍ୟ କେବେ କେମିତି ବାହାରିଛି । ମୁଁ ଚାହିଁଲେ ତା'ପାଖରୁ ସେ ସବୁ ନେଇ ପଢ଼ି ପାରିବି । ଭୂଦାନ କର୍ମୀ ହିସାବରେ ସେ ପଦଯାତ୍ରା କରିଛି ଓ ସମାଜସେବା କହିଲେ କିଛି ସେ ବୁଝିଛି । କାଶୀପୁରରେ ମୁଁ ପ୍ରକଳ୍ପଟିଏ ଆରମ୍ଭ କରିବାର ଯୋଜନା ରଖିଛି ବୋଲି ଜାଣିଲା ପରେ, ତା'ଅଞ୍ଚଳକୁ ବୁଲି ଆସିବାକୁ ସେ ଅନୁରୋଧ କରିଥିଲା । ତା'ର ପ୍ରସ୍ତାବ ଥିଲା ଯେ ମାଇକଞ୍ଚ, କୋଡିପାରି ଓ ଡଙ୍ଗାସିଲ ଭଳି ପଞ୍ଚାୟତମାନେ ବର୍ଷକୁ ଆଠମାସ ବିଚ୍ଛିନ୍ନ ହୋଇଯାଆନ୍ତି । ନଦୀନାଳ ଘେରି ରହିଛି । କାଶୀପୁର ପଟୁ ସେ ଅଞ୍ଚଳକୁ ଆସିଲେ ମାଇକଞ୍ଚ ନାଳ, ରତାଚୁଆଁ ନଦୀ, କୋଡିପାରି ନାଳ ଲଂଘିବାକୁ ପଡିବ । ଟିକିରି ପଟୁ ଆସିଲେ କରଳ-କମ୍ବର ନାଳ, କୁଚେଇ ପଦର ନାଳ, ଡଙ୍ଗାସିଲ୍ ନଦୀ ଅତିକ୍ରମ କରିବାକୁ ପଡିବ । ବର୍ଷା ମାସ କଥା ଛାଡନ୍ତୁ, ଖରା ଦିନକୁ ଛାଡି ଦେଲେ ଅନ୍ୟମାସମାନଙ୍କରେ ଗାଡି ମଟର ଆସିବା ଅସମ୍ଭବ । ଚାଲି ଚାଲି ଯିବାକୁ ହେବ । ସାଙ୍ଗରେ ତଉଲିଆ, ଲୁଙ୍ଗି ନେବାକୁ ହେବ । ନଦୀଗୁଡିକୁ ପାର ହେବାକୁ ହେଲେ ପ୍ୟାଣ୍ଟ, ଟ୍ରାଉଜର୍‌କୁ ଖୋଲି ତଉଲିଆ, ଲୁଙ୍ଗି ପିନ୍ଧିବା ଛଡା ଅନ୍ୟ କିଛି ବାଟ ନାହିଁ । ରାଜୀବ ମାଝୀକୁ ମୁଁ କଥା ଦେଇଥିଲି ଯେ, ଯେମିତି ହେଉ ପନ୍ଥକେ ମୁଁ ତା'ଗାଁରେ ପହଞ୍ଚିବି ଓ କୋଡିପାରି ତଥା ଡଙ୍ଗାସିଲ୍ ନିଶ୍ଚୟ ଦେଖିବି ।

କାଶୀପୁରରୁ ଡଙ୍ଗାସିଲ୍ ପ୍ରାୟ ୨୫ କିଲୋମିଟର । ଭୋର ସକାଳୁ ବାହାରିବାକୁ ପଡିଥିଲା । ଆମେ ସବୁ ଆମର ଖାଦ୍ୟ ସାମଗ୍ରୀ ସାଥୀରେ ଧରିଥାଉ । ଏକା ନିଃଶ୍ୱାସରେ ଚାଲିଲେ ବି ଡଙ୍ଗାସିଲରେ ପହଞ୍ଚିବାକୁ ୬-୭ଘଣ୍ଟା ଲାଗିଯିବ । ଏକା ଦିନରେ ଫେରି ହେବ ନାହିଁ । ସେ ଅଞ୍ଚଳରେ କ୍ୟାମ୍ପ୍ କରିବାକୁ ପଡିବ । ଆମେ ସବୁ ପ୍ରସ୍ତୁତ ହୋଇଥାଉ । କାଶୀପୁରର ହରିଜନ ସାହି ଦେଇ ଡଙ୍ଗାସିଲ୍‌କୁ ଯିବା ବାଟରେ ପଡିଲା ପରଜାଶୀଳା ଗାଁ । ତା'ପରେ କାକୁଡି ପଦର ଗାଁ ଦେଇ ମାଇକଞ୍ଚରେ ପହଞ୍ଚିଲା ବେଳକୁ ବହୁତ ଥକ୍‌କା ଲାଗିଥିଲା । ମାଇକଞ୍ଚରେ ଅଛି ଗ୍ରାମ ପଞ୍ଚାୟତର କାର୍ଯ୍ୟାଳୟ । ଗାଁକୁ ପଶିଲାବେଳକୁ ସ୍କୁଲଘର । ତା'ପରେ ହରିଜନ ସାହି । ତା'ପରେ ଦୁଇଟି ଝୋଡିଆ ସାହି । ଗାଁ ମୁଣ୍ଡରେ ଶୁଣ୍ଢି ସାହୁକାରର ସାହି । ଗାଁ ମଝିରେ କାଠରେ ତିଆରି 'ପାତ୍ର ବୁଢା' । ଏହା ହେଉଛି ଗାଁର ଇଷ୍ଟ ଦେବ ଓ ଆଦିବାସୀମାନଙ୍କ ପୂଜାସ୍ଥଳ । ଜାନି, ଦିସାରୀ ଓ ପୂଜାରୀ ସବୁ ଏକାଠି ହୁଅନ୍ତି 'ପାତ୍ର ବୁଢା' ପାଖେ । କେଉଁ ଦିନ ପୂଜା ପରବ ହେବ, କେଉଁ ଦିନ ଧାନ ବୁଣାଯିବ, ଫସଲ କଟାଯିବ, ସେଇଠି ନିଷ୍ପତ୍ତି ହୁଏ । ମୁଁ କିଛି କ୍ଷଣ ଅଟକି ଯାଇ ସେଠାରେ ଝୋଡିଆ ଆଦିବାସୀମାନଙ୍କ ସହ କଥାବାର୍ତ୍ତା କରିଥିଲି । ଅତି ସନ୍ତର୍ପଣରେ ସେମାନେ ସାହୁ ସରପଞ୍ଚ କଥା କହୁଥିଲେ । ଶୁଣ୍ଢି ସାହୁକାରର ପରିବାର ମଦ ବେପାରରେ ବ୍ୟସ୍ତ । ଗାଁର ଅଧା ଜମି ମାଡି ବସିଛି । ଏବେ ସରପଞ୍ଚ ମଧ୍ୟ ହୋଇଛି । ଚାଉଳ ଓ କେୟାର ଖାଦ୍ୟ ମଧ୍ୟ ସେ ପରିବାରକୁ ପରିଚାଳନା ପାଇଁ ଦିଆଯାଇଛି । ଅନ୍ୟ ଅର୍ଥରେ କହିବାକୁ ହେଲେ, ଶୁଣ୍ଢିମାନେ ମାଇକଞ୍ଚର ସବୁ କ୍ଷମତା ଓ ସମ୍ବଳର ମୂଳକେନ୍ଦ୍ର ବୋଲି ଜଣାପଡୁଛି । ହରିଜନ ପିଲାମାନେ କେବଳ ଦିନ ସ୍କୁଲକୁ ଯାଉଛନ୍ତି । କେତେଜଣ ଝୋଡିଆ ପିଲା ଗୋରଖପୁର ଆଶ୍ରମ ସ୍କୁଲରୁ ପାଠ ପଢି ଫେଲ୍ ହୋଇ ଘରେ ବସିଛନ୍ତି । ଆଉ କେତୋଟି ପିଲା ଆଶ୍ରମ ସ୍କୁଲରେ ପଢୁଛନ୍ତି ଏବେ ।

ଏହାପରେ ନୂଆଁ ଗାଁ ବାଟ ଦେଇ କଞ୍ଚଗୁମା ପାହାଡ ଅତିକ୍ରମ କରି ରତାଚୁଆଁ ଗାଁରେ ଆମେ ପହଞ୍ଚିଥିଲୁ । ଗାଁ ପାଖ ଦେଇ ବୋହି ଯାଉଛି ଚିରସ୍ରୋତା ନଦୀଟିଏ । ନାମ 'ସାନନଦୀ' । ଏହା ଯାଇ ଇନ୍ଦ୍ରାବତୀ ନଦୀ ସହ ମିଶିଛି । କିଛି ଦୂରରେ ଇନ୍ଦ୍ରାବତୀ ପାଖେ ଡ୍ୟାମ କାମ ଆରମ୍ଭ ହୋଇଛି । ଡିନାମାଇଟ୍ ବ୍ୟବହାର କରି ପଥର ପାହାଡ ଫଟା ଯାଉଛି । ଗାଁ ପାଖେ ସୁଦୂରପ୍ରସାରୀ ବାଫଲିମାଳୀ । ତାକୁ ଅତିକ୍ରମ କରିଗଲେ ପଡେ ଝାଲିଆଗୁଡା, ଯେଉଁଠି ବଡ ହାଟ ବସେ । ଝାଲିଆଗୁଡା ସେପଟେ ନବରଙ୍ଗପୁରର ଝାଡ ଦେଶ ଅଥବା ଜଙ୍ଗଲ ଅଞ୍ଚଳ । କେତେ ଆଦିବାସୀ ପରିବାର ଏ ଅଞ୍ଚଳରୁ ସେ ଅଞ୍ଚଳକୁ ଦେଶାନ୍ତରୀ ହୋଇଛନ୍ତି । ଝାଡଦେଶରେ ଜଙ୍ଗଲ ସଫାକରି ପୋଡୁ ଚାଷ କରିହେବ । ଏ ଅଞ୍ଚଳରେ ଜଙ୍ଗଲ କମି ଆସିଲାଣି । ପୋଡୁ ଚାଷରୁ ଆଉ ଆଶାଜନକ ଫସଲ ପାଚି ହେଉ ନାହିଁ । ରତାଚୁଆଁ ଗାଁରେ ୩୦ଟି କନ୍ଧ ପରିବାର । ଗାଁକୁ ପଶିବା ପୂର୍ବରୁ ଗାଁ ଗଉନ୍ତିଆ ବଗିଚଟିଏ କରି ସବୁରକମର ଫଳ ଗଛ ଲଗାଇଛି । ଗାଁଟି ଛୋଟ ହେଲେ ବି ସ୍ୱଚ୍ଛଳ ଜଣା ପଡୁଥିଲା । ଭୂଦାନକର୍ମୀମାନେ ଏ ଗାଁରେ କ୍ୟାମ୍ପ କରିଥିଲେ କେତେ ବର୍ଷ ତଳେ । ମୁଣ୍ଡା (ଚେକ୍‌ଡ୍ୟାମ୍)

ଓ ବାଟିଆ(କେନାଲ) କରିବାକୁ ସବୁ ପ୍ରତିଶ୍ରୁତି ଦେଇ ମଧ ଶେଷରେ କ୍ୟାମ୍ପ ଉଠାଇ ନେଇଥିଲେ ବୋଲି ଗାଁ ଲୋକ ଅଭିଯୋଗ କରିଥିଲେ । କିନ୍ତୁ ଭୂଦାନକର୍ମୀମାନଙ୍କ ସଂସ୍ପର୍ଶରେ ଆସି ରାଜୀବ ମାଝୀ ଭଳି ଯୁବକମାନେ ଶିକ୍ଷାପ୍ରତି ଆଗ୍ରହ ପ୍ରକାଶ କରିଥିଲେ ।

ଗୋରଖପୁର ଆଶ୍ରମ ସ୍କୁଲ, ଡଙ୍ଗାସିଲ୍‌ର କନ୍ୟାଶ୍ରମରେ ପ୍ରାୟ ଦଶଜଣ ପୁଅଝିଅ ପଢୁଥିବା କଥା ଗାଁ ଲୋକେ କହିଥିଲେ । ଗାଁରେ ସମସ୍ତଙ୍କର ଚାଷବାସ ପ୍ରତି ଖୁବ୍ ଆଗ୍ରହ ଅଛି ବୋଲି ଜଣା ପଡୁଥିଲା । ରାଜୀବମାଝୀ କହୁଥିଲା ଯେ, ସଂସ୍ଥା ଯଦି କର୍ମୀ ଚାହିଁବ ସେ କାମ କରିବାକୁ ଆଗ୍ରହୀ । ଏହାଛଡା ସବୁପ୍ରକାର ସାହାଯ୍ୟ କରିବାକୁ ସେ ଆଗଭର । ଆଦିବାସୀମାନେ ପଛରେ ପଡିଛନ୍ତି ଓ ସରକାର କିଛି କରୁନାହିଁ । ଭୂଦାନୀମାନେ ହାରିଗଲେ । ଏବେ ଅନ୍ୟ ଯେ କେହି ସେ ଗାଁରେ ଜଳସେଚନ ଯୋଜନା କରିପାରିଲେ କୃତଜ୍ଞ ରହିବେ ସେମାନେ । ମୁଁ ରାଜୀବ ମାଝୀ କଥାରେ ସହମତ ହୋଇଥିଲି ସେଦିନ । କିନ୍ତୁ କେଉଁ କାମ ହେବ ଓ କେଉଁ କାମ ହେବ ନାହିଁ ସେ କଥା ସର୍ଭେ ଶେଷ ହେଲାପରେ ନିଷ୍ପତ୍ତି ନିଆଯିବ ବୋଲି ମୁଁ ସ୍ପଷ୍ଟ କରି ଦେଇଥିଲି । ରାଜୀବ ମାଝୀ ଆମକୁ କୋଡିପାରି ଓ ଡଙ୍ଗାସିଲ୍ କଥା କହୁଥିଲା । କୋଡିପାରିରେ ଏ ଅଞ୍ଚଳର ସବୁଠାରୁ ଲୋକପ୍ରିୟ ନେତା ଶ୍ରୀ ଝାଙ୍ଗୁ ଝୋଡିଆ । ପୂର୍ବତନ ଏମ୍.ଏଲ୍.ଏ(MLA) । ଅନ୍ୟ କିଛି ନକରନ୍ତୁ ପଛେ, ନିଜ ଗାଁରେ ସମସ୍ତଙ୍କର ଟିଣଛପର ଘର କରିଦେଇଛନ୍ତି । ପୁରୁଣା ସ୍ୱାଧୀନତା କର୍ମୀ ଓ କଂଗ୍ରେସ ପାର୍ଟିର ଜଣେ ସ୍ଥାନୀୟ ନେତା । କିଛି ପାଠ ପଢିଛନ୍ତି । ପୁଅ ସୋମନାଥ ଏବେ ସରପଞ୍ଚ ହୋଇଛି । ଝୋଡିଆମାନଙ୍କ ଉପରେ ପ୍ରଭାବ ଅଛି ତାଙ୍କ ପରିବାରର । ସବୁକଥାରେ ଅନ୍ୟମାନେ ପରାମର୍ଶ କରୁଛନ୍ତି । କୋଡିପାରି ଗାଁଟି ରାସ୍ତାଠାରୁ କିଛି ଦୂରରେ ଥିଲା । ପଞ୍ଚାୟତର କାର୍ଯ୍ୟାଳୟ ସେଠାରେ ଅଛି । ମୁଁ ଭାବିଲି ଆଉ କେଉଁଦିନ ଝାଙ୍ଗୁ ଝୋଡିଆଙ୍କ ସହ ଲମ୍ବା ସମୟ ଧରି କଥାବାର୍ତ୍ତା କରିବା ଠିକ୍ ହେବ ।

ଅବଶେଷରେ ଆମେ ପହଞ୍ଚିଥିଲୁ ଡଙ୍ଗାସିଲ୍‌ର ହାଟ ପଦାରେ । ପାଖରେ ଡଙ୍ଗାସିଲ କନ୍ୟାଶ୍ରମ । ଆଜବେଷ୍ଟସ୍ ଘର କେତୋଟି । ଗୋଟାଏ ପଟେ ବିହାରୀ ସାହୁକାର ଘର । ସ୍କୁଲକୁ ଲାଗି ଦୁଇ ଜଣ କୃଷି କର୍ମଚାରୀ ଗ୍ରାମସେବକ ଓ ଅଫିସରଙ୍କ ଘର । ତିଆରି ସରି ନଥାଏ । ଡଙ୍ଗାସିଲ୍‌ରେ ହରିଜନମାନଙ୍କ ବସତି ଓ ପ୍ରଭାବ ଖୁବ୍ ବେଶୀ । ସେମାନଙ୍କର ମୁଖ୍ୟ ନେତା ଶ୍ରୀ କବିସୂର୍ଯ୍ୟ ନାୟକ । ଏକଦା ପଞ୍ଚାୟତ ସମିତିର ଚେୟାରମ୍ୟାନ ଥିଲେ । ସେକାଳର ମ୍ୟାଟ୍ରିକ୍ ପାସ୍ । ଇଂରାଜୀରେ ବି କଥାବାର୍ତ୍ତା କରିପାରିବେ । ସେ ଦାବି କରୁଥିଲେ ଯେ ସମାଜ ସେବାରେ ସେ ସବୁଠାରୁ ଆଗୁଆ ଅଛନ୍ତି । ଡଙ୍ଗାସିଲ୍‌ର କନ୍ୟାଶ୍ରମ ପାଇଁ, କୃଷି କର୍ମଚାରୀଙ୍କ ଅଫିସ ପାଇଁ, ଜମିଦାନ କରିଛନ୍ତି । ଯଦି ହସ୍‌ପିଟାଲ ଖୋଲାଯିବ, ଆହୁରି ଜମି ଦେବେ । ତାଙ୍କର ଜୀବନ ସାର୍ଥକ ହୋଇଛି ଯେ ସେ ସର୍ବସାଧାରଣଙ୍କ ସୁବିଧା ପାଇଁ ଜୀବନ ଉତ୍ସର୍ଗ କରିଛନ୍ତି । କଂଗ୍ରେସ କର୍ମୀ ସେ । ତେଣୁ ରାଜନୀତି ସହ ସମାଜ ସେବାକୁ ମିଶାଇଛନ୍ତି । ବେଳେବେଳେ ବି ଠିକାଦାରି କରନ୍ତି । ଯେଉଁ ଦିଗକୁ ଦେଖିବ, ଜମି ତାଙ୍କର ଅଛି । ଡଙ୍ଗାସିଲ ପଞ୍ଚାୟତର ସରପଞ୍ଚ ହେଉଛି କିନ୍ତୁ ଶୁଣି ଓ ଜନତାପାର୍ଟିର । ମୁଁ ଚାଷବାସ କଥା

ଜାଣିବା ପାଇଁ ଚାହିଁଥିଲି କବିସୂର୍ଯ୍ୟ ବାବୁଙ୍କଠାରୁ ଓ ଆଦିବାସୀମାନଙ୍କ ଅବସ୍ଥା ସମ୍ପର୍କରେ ମଧ୍ୟ । କିନ୍ତୁ ମଦ ଖାଇ ଆଦିବାସୀ କିପରି ହୀନସ୍ତା ହେଉଛି ଓ ସରକାରୀ କାର୍ଯ୍ୟକ୍ରମର ଲାଭ ଉଠାଇ ପାରୁନାହିଁ ସେକଥା ବିଭିନ୍ନ ଉଦାହରଣ ଦେଇ ସେ କହିଥିଲେ । ଜଙ୍ଗଲ ସେ ଅଞ୍ଚଳରେ ଶେଷ ହୋଇ ଯାଇଛି । କୁଲିଭୂତି ମିଳୁନାହିଁ । ଚାରି ଆଡେ ନଦୀନାଳ ଘେରି ରହିଥିବାରୁ କୌଣସି ଜିନିଷର ବିକାକିଣା ହୋଇ ପାରୁନାହିଁ । ଗୋରୁ ପିଠିରେ ଲଦା ହୋଇ କାଶୀପୁର ଓ ଟିକିରିକୁ ଜିନିଷ ନେବା ଆଣିବା ଚାଲିଛି । ସ୍ୱାସ୍ଥ୍ୟ କର୍ମଚାରୀ ଆସୁନାହାନ୍ତି । ଡଙ୍ଗାସିଲ୍ ବଡ ପଞ୍ଚାୟତଟିଏ । ଡଙ୍ଗାସିଲ୍ ଗାଁ ପାଖକୁ ନଦୀଟିଏ ବୋହୁଛି ଯାହାର ନାମ 'ବଡ଼ନଦୀ' । ଇନ୍ଦ୍ରାବତୀ ନଦୀରେ ଯାଇ ମିଶିଛି । ପାଟିଆସିଲ, ବଣ୍ଡାଧାର, ଧଡାପାସ ଗାଁ ଗୁଡିକ ହେଉଛି କାଶୀପୁର ସୀମାର ଶେଷ ଗାଁ । ସେ ପଟେ କଳାହାଣ୍ଡି ଆରମ୍ଭ ହୋଇଛି । ଡଙ୍ଗାସିଲ୍‌କୁ ନେଇ ଅନେକ କିମ୍ବଦନ୍ତୀ ଗଢି ଉଠିଛି ।



# ୭

ବର୍ଷା ଓ ଶୀତ । ଛଅ ମାସ ବର୍ଷା ଓ ଛଅ ମାସ ଶୀତ । କାଶୀପୁରକୁ ଆନ୍ତରିକତାର ସହ ବୁଝିବାକୁ ହେଲେ, ଏ ଋତୁଚକ୍ରକୁ ଅନୁଭବ କରିବାକୁ ହେବ । ପ୍ରଥମ ବର୍ଷର ପ୍ରତ୍ୟେକଟି ଦିନ ଓ ମାସକୁ ମୁଁ ଜଣେ ଆବିଷ୍କାରକର ମନ ଓ ପ୍ରାଣ ନେଇ ଅତିକ୍ରମ କରୁଥିଲି । ସବୁକଥା ନୂଆ ଲାଗୁଥିଲା । କାଶୀପୁରର ୪୨୦ଟି ଗାଁ । ପ୍ରତ୍ୟେକ ଦିନ ଗୋଟିଏ ଗୋଟିଏ ଗାଁକୁ ଗଲେ ବି, ଗୋଟିଏ ବର୍ଷରେ ସବୁକିଛି ଦେଖି ହେବ ନାହିଁ । ନଦେଖିଲେ ଗାଁର ସାମାଜିକ, ଆର୍ଥିକ, ରାଜନୈତିକ, ସାଂସ୍କୃତିକ ସ୍ଥିତି ଓ ଢାଞ୍ଚାକୁ ବୁଝି ହେବ ନାହିଁ । ଏକଥା ନବୁଝିଲେ, ମୌଳିକ ସମସ୍ୟା ସବୁ ଚିହ୍ନଟ ହେବ ନାହିଁ । ସମସ୍ୟା ନଜାଣିଲେ ଯୋଜନା କରିହେବ ନାହିଁ । ବିନା ଯୋଜନାରେ ଆର୍ଥିକ ସମ୍ବଳ ଓ ମାନବ ସମ୍ବଳର ଆୟୋଜନ ହୋଇପାରିବ ନାହିଁ । ମୋର କାଶୀପୁର ଆସିବା ସମ୍ଭବତଃ ନିରର୍ଥକ ହୋଇଯିବ । କାଶୀପୁରରେ ରହି ମଧ୍ୟ ଦୂର ଦୂରାନ୍ତର ଗାଁକୁ ପହଞ୍ଚିହେବ ନାହିଁ । ମୋର ରୋମାଣ୍ଟିକ୍ ମନ ଡାକୁ ଥିଲା ସିରିପାଇଠାରେ କାର୍ଯ୍ୟାଳୟ ସ୍ଥାପନ କରି ଆମର କାର୍ଯ୍ୟକ୍ରମର ମୂଳଦୂଆ ପକାଇବା । ସରକାର ସେଠାରେ ପହଞ୍ଚି ନାହିଁ । ସର୍ବୋଦୟ କର୍ମୀ ଅଥବା ଖ୍ରୀଷ୍ଟିୟାନ୍ ମିଶନାରୀ କେହି ପହଞ୍ଚି ନାହାନ୍ତି ସେଠାରେ । କେବଳ ପହଞ୍ଚିଛି ସାହୁକାର । ମୁଁ କାହିଁକି ପହଞ୍ଚିପାରିବି ନାହିଁ ? କାହିଁକି ସେଠାରେ ଜଣେ ଆଦିବାସୀ ଭଳି ରହିପାରିବି ନାହିଁ ? ମୋ ଭିତରେ ଥିବା ଜ୍ଞାନଗାରିମାକୁ କାହିଁକି ମୁଁ କବର ଦେଇ ପାରିବି ନାହିଁ ? କାହିଁକି ମୁଁ ମୋର ମଧ୍ୟବର୍ଗୀୟ ମୂଲ୍ୟବୋଧକୁ ଜଳାଞ୍ଜଳି ଦେଇ ପାରିବି ନାହିଁ । ଏସବୁ ଆହ୍ୱାନ ବାରମ୍ବାର ଆସୁଥିଲା । ବାଘହେଣ୍ଟାଳିବାର ଭୟ, ଘଞ୍ଚଅରଣ୍ୟର ନିସ୍ତବଧ୍ତା ଓ ତଥାକଥିତ ସଭ୍ୟ ମଣିଷଙ୍କ ବସବାସରୁ ଦୂରତା, ମୋର ସହକର୍ମୀମାନଙ୍କ ମନରେ ଭୟ ସୃଷ୍ଟି କରିଥିଲା । ସେମାନେ କାଶୀପୁରରେ ରହି କାମ ଆରମ୍ଭ କରିବାକୁ ପସନ୍ଦ କରୁଥିଲେ ।

ବଙ୍କର୍ ରାୟ ତିଲୋନିଆରୁ ତାଗିଦ୍ କରିଥିଲେ ବାରମ୍ବାର । ସେ କହୁଥିଲେ ଯେ କାଶୀପୁର ଭଳି ଦୁର୍ଗମ ଅଞ୍ଚଳରେ କାମ କରିବାକୁ ହେଲେ ଟିମ୍ ଗଢ଼ିବା ନିତାନ୍ତ ଜରୁରୀ । ତିଲୋନିଆରେ ଟିମ୍ ଜରିଆରେ ସେ କାମ ଆରମ୍ଭ କରିଥିଲେ । ସହରର ଶିକ୍ଷିତ ପେଶାଦାର ଯୁବକ ଯୁବତୀ ଓ ଗାଁର ଅର୍ଦ୍ଧଶିକ୍ଷିତ ବା ଅଶିକ୍ଷିତଙ୍କ ସହ ସମ୍ବନ୍ଧ ସ୍ଥାପନ କରି, ସାମାଜିକ ଓ ଆର୍ଥିକ କାର୍ଯ୍ୟକ୍ରମ କରିବା ତିଲୋନିଆ ମଡେଲ ଥିଲା । ତିଲୋନିଆର ଯୋଗାଯୋଗ ଥିଲା ଦିଲ୍ଲୀର ସେଣ୍ଟଷ୍ଟିଫନ୍ସ କଲେଜ୍, ବମ୍ବେର ଟାଟା ଇନ୍ଷ୍ଟିଚ୍ୟୁଟ ଅଫ ସୋସିଆଲ ସାଇନ୍ସ୍, ଅହମ୍ମଦାବାଦର ମ୍ୟାନେଜ୍‌ମେଣ୍ଟ ଇନ୍ଷ୍ଟିଚ୍ୟୁଟ୍, ଆଜ୍‌ମୀରର ମେୟୋକଲେଜ୍, ଦେଶର ବିଭିନ୍ନ ଆଇ.ଆଇ.ଏମ୍. ମାନଙ୍କ ସହ । ଧନୀ ପରିବାରର ଉଚ୍ଚ ଶିକ୍ଷିତ ଯୁବକ ଯୁବତୀ କୌଣସିନା

କୌଣସି ଆଦର୍ଶରେ ଅନୁପ୍ରାଣିତ ହୋଇ ସେଠାକୁ ବର୍ଷେ ଦୁଇବର୍ଷ କାମ କରିବାକୁ ଆଗ୍ରହ ଦେଖାଉଥିଲେ । ସହରର ବିଳାସବ୍ୟସନ ଏବଂ ପାରିବାରିକ ନିରାପତ୍ତା ତାଙ୍କୁ ପଛକୁ ଟାଣୁ ନଥିଲା । ବଙ୍କର୍ ରାୟଙ୍କ ଟିମ୍ ସମୃଦ୍ଧ ଓ ବଳିଷ୍ଠ ଥିଲା ଅନେକ ବର୍ଷଧରି । ତିଲୋନିଆରେ 'ବିକେନ୍ଦ୍ରୀ କରଣ'କୁ ପ୍ରାଧାନ୍ୟ ଦିଆଯାଉଥିବାରୁ, ସିଲୋରା ବ୍ଲକ୍‌ରେ ବିଭିନ୍ନ ଆଭ୍ୟନ୍ତରୀଣ ଇଲାକାରେ ଉପକେନ୍ଦ୍ରମାନ ଖୋଲାଯାଇଥିଲା । ପ୍ରତ୍ୟେକ ଉପକେନ୍ଦ୍ର ତିଲୋନିଆ ମୁଖ୍ୟକେନ୍ଦ୍ରର ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟଜଳ ଏବଂ ହସ୍ତକଳା କାର୍ଯ୍ୟକ୍ରମ ଗୁଡିକୁ ରୂପାୟିତ କରୁଥିଲେ । ଚାରୋଟି ଉପକେନ୍ଦ୍ର ଏହି ଢ଼ାଞ୍ଚାରେ ପ୍ରତିଷ୍ଠା କରାଯାଇଥିଲା । କର୍ମୀମାନଙ୍କ ରହିବା ବ୍ୟବସ୍ଥା କରାଯାଇଥିଲା । ଏହାଦ୍ୱାରା ଦୂର ଗାଁ ମାନଙ୍କରେ ପହଞ୍ଚି ହେଉଥିଲା ଓ ବିଭିନ୍ନ ସେବା ଓ ସାହାଯ୍ୟ ମଧ୍ୟ ପହଞ୍ଚିପାରୁଥିଲା । ସମ୍ପର୍କ ଓ ଯୋଗାଯୋଗ ଦୃଷ୍ଟିକୋଣରୁ ଏହା ଏକ ବାସ୍ତବବାଦୀ ରଣ ନୀତି ଥିଲା ବୋଲି ମୋର ହୃଦ୍‌ବୋଧ ହୋଇଥିଲା । କାଶୀପୁରରେ ଏହାର ନକଲ କରାଯାଇପାରେ ବୋଲି ମଧ୍ୟ ଧାରଣା ସୃଷ୍ଟି ହୋଇଥିଲା ।

କିନ୍ତୁ କାଶୀପୁରରେ କର୍ମୀମାନଙ୍କର ଟିମ୍‌ଟିଏ ଗଢ଼ିବା ସହଜ କଥା ନୁହେଁ । କାଶୀପୁରର ଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଅଣଆଦିବାସୀ ଯୁବକମାନେ ବିଭିନ୍ନ ବେପାର କାରବାର ଓ ଠିକାଦାରୀରେ ସମ୍ପୃକ୍ତ । ଯେଉଁ କେତେଜଣ ଉଚ୍ଚ ଶିକ୍ଷିତ, ସେମାନେ ବିଭିନ୍ନ ପଦପଦବୀରେ ପ୍ରତିଷ୍ଠିତ । ରାୟଗଡା ଓ କୋରାପୁଟରେ ଯେଉଁ ବେକାର ଯୁବକମାନେ ଥିଲେ, ସେମାନେ ସରକାରୀ ଚାକିରୀ ପାଇଁ ଏମ୍ପ୍ଲୟମେଣ୍ଟ ଏକ୍‌ସଚେଞ୍ଜକୁ ଦୌଡିବାରେ ବ୍ୟସ୍ତ । କିଏ ମୋ ସହ ଯୋଗ ଦେବ ଓ ସହକର୍ମୀ ହେବ ତାହା ଏକ ପ୍ରଶ୍ନବାଚକ ଚିହ୍ନ ଥିଲା । ମୋର କଲେଜ ବନ୍ଧୁ ଦୁର୍ଗା ପ୍ରସାଦ ମହାପାତ୍ର, ମୋର ହାଇସ୍କୁଲ ଜୀବନର ଶିକ୍ଷକ ଶ୍ରୀ ବିନାୟକ ମିଶ୍ରଙ୍କ ପୁଅ ଢ଼େଙ୍କାନାଳରୁ ମଦନ ମିଶ୍ରଙ୍କୁ ମୋ ସହ କାମ କରିବା ପାଇଁ ପ୍ରବର୍ତ୍ତାଇ ଥିଲେ । ବାରିପଦାରୁ କ୍ଷୀତିଶ୍ ଦାସ ବୋଲି ଜଣେ ଯୁବକ ମଧ୍ୟ କେଉଁଠାରୁ ମୋ ଠିକଣା ଆଣି, ସହକର୍ମୀ ହେବାକୁ ଆଗ୍ରହ ପ୍ରକାଶ କରିଥିଲେ । ବଙ୍କର୍ ରାୟଙ୍କ ପରାମର୍ଶ ଅନୁସାରେ ମଦନ, କ୍ଷୀତିଶ୍ ତିଲୋନିଆ ଯାଇଥିଲେ ତାଲିମ୍ ପାଇଁ । ମୁଁ କାଶୀପୁରରେ ପ୍ରକଳ୍ପଟିଏ ଆରମ୍ଭ କରିବା ବେଳକୁ, ସେମାନେ ତିଲୋନିଆରୁ ଫେରି ମୋ ସହ ଯୋଗ ଦେଇଥିଲେ ୧୯୮୧ ମସିହାରେ । ସେପ୍ଟେମ୍ବର ମାସ ବେଳକୁ ପ୍ରମୋଦ ଦାସ ଓ ଭାଗିରଥୀ ସା ନାମକ ଆଉ ଦୁଇଜଣ ଶିକ୍ଷିତ ଯୁବକ ଯୋଗ ଦେଲେ । ପ୍ରମୋଦ କଟକର ଜଗତସିଂହପୁର ଅଞ୍ଚଳର ମଧ୍ୟବିତ୍ତ ପରିବାରର, ଭାଗିରଥୀ ବାଲେଶ୍ୱରର ନିମ୍ନମଧ୍ୟବିତ୍ତ ପରିବାରର । ଆମେ ସମସ୍ତେ ଏକାଠି ହୋଇ ଗୋଟାଏ ପ୍ରକାରର ଦଳ ଗଢ଼ିଲୁ । କ୍ଷୀତିଶ୍‌ର ଦେହ ଭଲ ରହୁନଥିଲା ଓ ଅଳ୍ପ କେତେଦିନ ପରେ ଆମ ସଂସ୍ଥା ଛାଡିଦେଲା ପରେ ମୟୂରଭଞ୍ଜର କୁଶଳଦାର ସତ୍ୟବ୍ରତ ବାରିକ ବୋଲି ପିଲାଟିଏ ମଧ୍ୟ ଆମ ସହ ଯୋଗ ଦେଲା ।

ଆମେ କାଶୀପୁରରେ ସମସ୍ତେ ନୂଆ । ବେଶୀ କିଛି ଜାଣି ନାହୁଁ । ଏ ଅଞ୍ଚଳର ଇତିହାସ, ଭୂଗୋଳ, ଭାଷା ଓ ସଂସ୍କୃତି ସମ୍ପର୍କରେ ବିଶେଷ ଅବଗତି ନାହିଁ । ୧୫୦୦ ବର୍ଗ କିଲୋମିଟର ବ୍ୟାପୀ ବ୍ଲକ୍ ଏବଂ ଦୁର୍ଗମ ଗ୍ରାମ ସମୂହ । କେମିତି ସବୁକଥା ଆମେ ଜାଣି

ପାରିବୁ । ଆମ ଭିତରେ ନିଷ୍ପତ୍ତି ହେଲା ଯେ, ଆମେ ଆଦିବାସୀ ଯୁବକମାନଙ୍କୁ ଚିହ୍ନଟ କରିବା ଯେଉଁମାନେ ଆମ ଦଳରେ ମିଶିବେ । ସେମାନେ ମ୍ୟାଟ୍ରିକ୍ ପର୍ଯ୍ୟନ୍ତ ପଢିଥିବେ ଓ ଚାଲାକ୍ ହୋଇଥିବେ । ଲୋକଙ୍କ ସହ ମିଶିପାରୁଥିବେ । କାଶୀପୁରରେ ଯେଉଁ ଆଦିବାସୀ ଯୁବକ ମ୍ୟାଟ୍ରିକ୍ ପାସ୍ କରୁଥିଲେ ସରକାରୀ ଚାକିରି ସହଜରେ ମିଳିଯାଉଥିଲା । କିଏ ଆଶ୍ରମ ସ୍କୁଲର ସେବକ ହେଉଥିଲା ତ କିଏ ଅନ୍ୟ କେଉଁଠି ପିଅନ ହୋଇ ନିଯୁକ୍ତି ପାଉଥିଲା । କେହି ବେକାର ରହୁ ନଥିଲେ । ଆଦବାସୀମାନଙ୍କ ପାଇଁ ସଂରକ୍ଷିତ ଚାକିରି ସବୁ ଖାଲି ରହୁଥିଲା । ଅନେକ ସମୟରେ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରୁ ଆସି ସ୍ଥାୟୀଭାବେ ବସବାସ କରୁଥିବା ଲୋକମାନେ ମିଥ୍ୟା ସାର୍ଟିଫିକେଟ୍ ଦେଇ, ବିଭିନ୍ନ ସରକାରୀ ଚାକିରିରେ ନିଯୁକ୍ତି ପାଉଥିଲେ । ଆଦିବାସୀ ଶିକ୍ଷିତ ହୋଇ ତ ବେକାର ବସୁଥିଲା । କିନ୍ତୁ ମ୍ୟାଟ୍ରିକ୍ ଫେଲ୍ ହୋଇ ଗାଁ ମାନଙ୍କରେ ଅନେକ ଯୁବକ ଚାଷବାସ କରୁଥିଲେ । ସେମାନଙ୍କୁ ଠାବ କରିବା ପାଇଁ ଆମେ ଉଦ୍ୟମ କରିଲୁ ଓ ସେମାନେ ଆମ ସହ ସାମିଲ ହେବେ କି ନାହିଁ ଅନୁସନ୍ଧାନ କରୁଥିଲୁ ।

ଏ ଭିତରେ ଆମର ଏକ ଦଳ ହୋଇଛି ଓ ଆମେ କିଛି ଉନ୍ନତିକର କାର୍ଯ୍ୟ କରିବାକୁ କାଶୀପୁର ଆସିଛୁବୋଲି ବିଭିନ୍ନ ଗାଁକୁ ଖବର ଯାଇଥାଏ । ଏ ଖବର ପହଞ୍ଚାଇବାରେ ଦୁଇଜଣ ବନ୍ଧୁ ବିଶେଷ ସାହାଯ୍ୟ କରିଥିଲେ । ଜଣେ ଥିଲେ ବ୍ୟାଙ୍କ ମ୍ୟାନେଜର ଶ୍ରୀଯୁକ୍ତ ରାଓ ଓ ଅନ୍ୟଜଣେ ଥିଲେ ଡାକ୍ତର ଗନ୍ଧର୍ବ ରାୟ । ସେମାନଙ୍କ ସହାୟତାରେ ରାଇସିଂ ମାଝୀ କୋଡପାରି ପଞ୍ଚାୟତରୁ, ସାରଙ୍ଗ ମାଝୀ, ମାଇକଞ୍ଚ ପଞ୍ଚାୟତରୁ, କାର୍ତ୍ତିକ ଝୋଡିଆ ଗୋରଖପୁର ପଞ୍ଚାୟତରୁ, ସରିପାଇ ପଞ୍ଚାୟତରୁ ରାମସିଂ ମାଝୀ ଓ ମାଣ୍ଡିବିଶି ପଞ୍ଚାୟତରୁ ରୂପଧର ମାଝୀ ଆଦି ବଛା ଯାଇଥିଲେ ଗ୍ରାମ ସଚେତକ ବା ଭିଲେଜ୍ ଆନିମେଟର ହିସାବରେ । ଏମାନଙ୍କ ଭିତରେ କେତେଜଣ ଡକ୍ଟର ଗନ୍ଧର୍ବ ରାୟଙ୍କ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମରେ ସାମୟିକ ଭାବେ ସ୍ୱାସ୍ଥ୍ୟକର୍ମୀ ଥିଲେ । ଡକ୍ଟର ଗନ୍ଧର୍ବ ରାୟ ମୋର କଲେଜ ବନ୍ଧୁ ଥିଲେ ଏବଂ ପଶ୍ଚିମଛାତ୍ରାବାସରେ ଏକାଠି ଥିଲୁ । ତାଙ୍କୁ କାଶୀପୁରର ଅନେକ ବର୍ଷ ବ୍ୟବଧାନ ପରେ ଭେଟିବା ଗୋଟାଏ ଅମୃତ ଅନୁଭବ ଥିଲା । କାଶୀପୁରରେ ୧୯୮୧ ମସିହା ସେ ମୋର ସବୁ ଦିଗରେ ପଥପ୍ରଦର୍ଶକ ଓ ପରାମର୍ଶଦାତା ଥିଲେ । କାଶୀପୁର ଆମର ପ୍ରକଳ୍ପର ମୂଳଦୂଆ ସ୍ଥାପନରେ ସେ ମୁଖ୍ୟ ଦାୟିତ୍ୱ ଗ୍ରହଣ କରିଥିଲେ । କାଶୀପୁରରେ ପରିବାର ନିୟୋଜନ ପାଇଁ ଡାକ୍ତର ନିଯୁକ୍ତି ହୋଇଥାଏ, ମାତ୍ର କେହି ଡାକ୍ତର ନଥାନ୍ତି । ଗନ୍ଧର୍ବ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ସବୁକିଛି ଓ ପ୍ରାୟ ଲକ୍ଷେ ଆଦିବାସୀଙ୍କ ପ୍ରାଣରକ୍ଷା କରିବାର ଏକମାତ୍ର ବ୍ୟକ୍ତି । ରୋଗବେମାର ସବୁଆଡେ ଲାଗି ରହିଥାଏ । ଦୂରଦୂର ଗାଁକୁ ଚାଲି ଚାଲି ଯାଇ କ୍ୟାମ୍ପ କରିବା ଓ ସ୍ୱାସ୍ଥ୍ୟ ସେବା ପହଞ୍ଚାଇବାରେ ତାଙ୍କ ଭଳି ଦ୍ୱିତୀୟ ବ୍ୟକ୍ତି ମୁଁ ଦେଖି ନାହିଁ । କାଶୀପୁରରେ ଥିଲାବେଳେ ଦିନରାତି ରୋଗୀଙ୍କ ଭିଡ ସ୍ୱାସ୍ଥ୍ୟକେନ୍ଦ୍ରରେ ଓ ନିଜ ଘରେ । ସମୟ ମିଳେ ନାହିଁ ଖାଇବାକୁ ଓ ଶୋଇବାକୁ । ମୋ ସହ କଥାବାର୍ତ୍ତା କରିବାକୁ ବି ସୁଯୋଗ ମିଳେ ନାହିଁ । ରାୟଗଡା ଓ କୋରାପୁଟରେ ପୁଣି ମିଟିଂ । ବିଭିନ୍ନ ବିଭାଗୀୟ ପଦାଧିକାରୀଙ୍କ ପରିଦର୍ଶନ । ଔଷଧ ଆସିବ

ବଣ୍ଟାଯିବ । ରିପୋର୍ଟ ତିଆରି ହେବ ଓ ପୁଣି ତାହା ସ୍ୱତନ୍ତ୍ର ପତ୍ରବାହକ ହାତରେ ପଠାଯିବ । ମୁଁ ଅବାକ୍ ହେଉଥାଏ ଯେ ଗନ୍ଧର୍ବ ଏତେ କାମ କରିପାରେ ବୋଲି ।

ଆମେ ବାହାରୁ ପାଞ୍ଚ ଛଅ ଜଣ ଶିକ୍ଷିତ ଯୁବକ ଓ ଆମ ଦଳରେ ଛଅଜଣ ସ୍ଥାନୀୟ ଆଦିବାସୀ ଯୁବକ । ଡକ୍ଟର ଗନ୍ଧର୍ବ ରାୟ ଖାଲିଥିବା ଡାକ୍ତର କ୍ୱାର୍ଟରଟିକୁ ରହିବାକୁ ଅନୁମତି ଦେଇଥିଲେ । ଏ ଘରଟି ଆମର ତାଲିମ୍ କେନ୍ଦ୍ରଥିଲା । ଯୋଜନା ଓ ସଂଯୋଜନାର ମୁଖ୍ୟକେନ୍ଦ୍ର ଥିଲା । କାଶୀପୁରର ସମସ୍ତ ପଦସ୍ଥ କର୍ମଚାରୀ ଆସୁଥିଲେ ସନ୍ଧ୍ୟାରେ ଗପ ଜମାଇବା ପାଇଁ । ବିଡିଓ ହୁଅନ୍ତୁ କି ତହସିଲ୍‌ଦାର ହୁଅନ୍ତୁ, ଥାନା ବାବୁ ହୁଅନ୍ତୁ କି ବ୍ୟାଙ୍କ ମ୍ୟାନେଜର୍ ହୁଅନ୍ତୁ ଆମ ସହ ମିଶୁଥିଲେ ଓ ଆମକୁ ବିଭିନ୍ନ ପରାମର୍ଶ ଦେଉଥିଲେ ନିଜ ନିଜ ବାଟରେ । କାଶୀପୁରର ରାଜନୀତିରେ ଲିପ୍ତ ନେତାମାନେ ଆଶ୍ଚର୍ଯ୍ୟ ହେଉଥିଲେ ଓ ଆତଙ୍କିତ ହେଉଥିଲେ । ମୁଁ କିଏ, କେଉଁଠୁ ଆସିଛି, କ'ଣ କରୁଛି ଓ କ'ଣ କରିବାକୁ ଯାଉଛି, ସେମାନେ ପ୍ରତି ପଦକ୍ଷେପରେ ସମ୍ବାଦ ସଂଗ୍ରହ କରୁଥିଲେ । ଆମେ କିନ୍ତୁ କାହାକୁ କିଛି କହୁନଥାଉ । ଯିଏ ପଚାରିଲେ ଗୋଟିଏ ଉତ୍ତର ଦେଉ ଯେ ସର୍ଭେ ଚାଲିଛି । କାଶୀପୁରକୁ କେନ୍ଦ୍ରକରି ଆମେ ମୋଟାମୋଟି ସ୍ଥିର କରିଥାଉ ଯେ ସବୁଠାରୁ ଦୁର୍ଗମ ପଞ୍ଚାୟତମାନଙ୍କୁ ଦେଖିବାକୁ ହେବ । ସେ ପଞ୍ଚାୟତ ଗୁଡିକ ହେଲା, ଡଙ୍ଗାସିଲ, ମାଣ୍ଡିବିଶି, ଚନ୍ଦ୍ରଗିରି, ସିରିପାଇ । କାଶୀପୁର ପାଖେ ଗୋରଖପୁର ଓ ମାଇକଞ୍ଚ ପଞ୍ଚାୟତର କିଛି ଗାଁ ବି ଅପହଞ୍ଚ ଥାଏ । ଆମ ଭିତରେ ବିଭିନ୍ନ ପ୍ରକାର ଆଲୋଚନା ଓ ବିଚାର ବିମର୍ଷ ପରେ ନିଷ୍ପତ୍ତି ହେଲା ଯେ, ଜଣେ ଜଣେ ବାହାରର କର୍ମୀ ସ୍ଥାନୀୟ ଆଦିବାସୀ କର୍ମୀ ବାଛି ଦୂର ପଞ୍ଚାୟତମାନଙ୍କୁ ଯିବେ ଓ କ୍ୟାମ୍ପ କରି ସେ ପଞ୍ଚାୟତର ଭଲ ମନ୍ଦ ବୁଝିବେ ।

ମଦନ ପ୍ରଥମେ ମାଣ୍ଡିବିଶି ଅଞ୍ଚଳକୁ ଯାଇଥିଲା ଓ ସେ ଅଞ୍ଚଳରେ ସେ ଉପକେନ୍ଦ୍ର ପ୍ରତିଷ୍ଠା କରିବାକୁ ନିଷ୍ପତ୍ତି ନେଇଥିଲା । ରୂପ୍‌ଧର ମାଝୀ ତା'କୁ ସହାୟତା କରିଥିଲା । ପ୍ରଥମେ ଗୋଟିଏ ଭଙ୍ଗା ସ୍କୁଲ ଘରେ ସେ ରହିଥିଲା ଓ ସେ ଭିତରେ ଗୋଖର ସାପ ରହୁଥିବାରୁ ଛାଡି ଦେଇ ପୁଣି ଏକ ଭଙ୍ଗା ସ୍ୱାସ୍ଥ୍ୟକେନ୍ଦ୍ରରେ ଆସି ରହିଥିଲା । ପ୍ରମୋଦ ରାଇ ସିଂ ମାଝୀକୁ ନେଇ ଡଙ୍ଗାସିଲର କୃଷିକର୍ମଚାରୀଙ୍କ ଅର୍ଦ୍ଧନିର୍ମିତ କାର୍ଯ୍ୟାଳୟରେ ବସା ବାନ୍ଧିଥିଲା । ସତ୍ୟବ୍ରତ ଭୁବନା ଝୋଡିଆକୁ ନେଇ ଗୋରଖପୁର ପାଖ ଚାରଯୋଡି ଗାଁରେ ଭଡାଘରଟିଏ ବାଛିଥିଲା ରହିବାକୁ । ଭାଗିରଥୀ ଚନ୍ଦ୍ରଗିରି ପଞ୍ଚାୟତର ଗନ୍ଦପୁର ଗାଁ ବାଛିଥିଲା । କାଶୀପୁର ଠାରୁ ତାହା ବେଶୀଦୂର ନଥିଲା । ରାମ ସିଂ ମାଝୀ ସହ ମୁଁ ସିରିପାଇ ଆଡକୁ ମୁହାଁଉ ଥିଲି । ସମସ୍ତେ ଗାଁମାନଙ୍କ ଓ ଆଦିବାସୀମାନଙ୍କ ଗହଣରେ ଏକାଠି ସମୟ କାଟୁ ଥିଲୁ । ଦଶ-ପନ୍ଦର ଦିନ ପରେ ପୁଣି ଏକାଠି କାଶୀପୁରରେ ମିଳିତ ହୋଇ ନିଜନିଜର ଅନୁଭୂତି ଜଣାଉଥିଲୁ । ଏ ଅଧ୍ୟୟନ ଭିତରେ ଆମେ ଖୋଜୁଥିଲୁ ବିକାଶର ଏକ ରାସ୍ତା । ଆମ ସାଙ୍ଗରେ ଥିବା ଆଦିବାସୀ ଭାଇମାନେ ଆମକୁ କେତେ କଥା କହୁଥିଲେ ଓ ଗାଁର ସୁଖଦୁଃଖ ସବୁଶୁଣି ଆମକୁ ବୁଝାଉଥିଲେ । ଆଦିବାସୀ ଭାଷା ବୁଝିବା କଠିନ ଥିଲା । ଗାଁରେ ପ୍ରବେଶ କରିବା ମାତ୍ରକେ ଲୋକେ ଆମକୁ ଦେଖି ଡରିଯାଉଥିଲେ । କିନ୍ତୁ ଆମ ଆଦିବାସୀ କର୍ମୀମାନେ ସବୁକଥା ବୁଝାଉଥିଲେ । ଆମର

ଆସିବାର ଉଦ୍ଦେଶ୍ୟ କ'ଣ ଓ ଗାଁରେ ମିଟିଂର ବିଷୟବସ୍ତୁ ସବୁ ତାଙ୍କ ଭାଷାରେ କହୁଥିଲେ ।

ମୁଁ ଲକ୍ଷ୍ୟ କରିଥାଏ ଯେ କୌଣସି ଗୋଟିଏ ଗାଁରେ ସନ୍ଧ୍ୟାରେ ପହଞ୍ଚିଲା ମାତ୍ରକେ, ଗାଁ ଭିତରେ ଟିକିଏ କୋଳାହଳ ବଢିଯାଏ । ହଠାତ୍ ଚାଲାଣ ଡକା ପକାଏ । କାହାଘରୁ କାଠ ଆସେ, କାହାଘରୁ ଚାଉଳ, କାହାଘରୁ ଡାଲି ଓ ପରିବା ଆସି ରୋଷେଇ କରିବା ଆରମ୍ଭ ହୋଇଯାଏ । ପଚାରିଲେ ଗାଁର ଜାନୀ କହେ ଯେ ଆମ ଭଳି ଜମାନ ବା ସରକାରୀ ଲୋକଙ୍କ ପାଇଁ ଏସବୁ ଅତିଥି ଚର୍ଚ୍ଚା । ଆମେ ଯଦି ଅସନ୍ତୁଷ୍ଟ ହେବୁ, ତେବେ ଗାଁରେ ଘୋର ବିପଦ ପଡିବ । ସେମାନଙ୍କର ଖାଇବାକୁ ନାହିଁ, ଅଥଚ ଏଭଳି ଚାଉଳ ଡାଲି କାହିଁକି ରଖନ୍ତି ବୋଲି ପଚାରିଲେ ସେମାନେ କହନ୍ତି ଯେ କେଉଁ କାଳରୁ ଏ ପ୍ରଥା ଚାଲି ଆସିଛି । ଗାଁକୁ କେହିଜଣେ ବିଦେଶୀ ଲୋକ ଆସିଲେ ତା'କଥା ବୁଝିବାକୁ ହେବ । ଆମେ କିନ୍ତୁ ନିଷ୍ପତ୍ତି କରିଥାଉ ଯେ ଗାଁକୁ ଗଲେ, ଆମେ ଆମର ଭାତ ଡାଲି ପରିବା ସାଙ୍ଗରେ ନେଇଯିବୁ । କୌଣସି ଜିନିଷ ମିଳିଲେ କିଣିବୁ । ଏକଥା ବିଶ୍ୱାସ ହେଉନଥିଲା କାହାର ।

ଡଙ୍ଗାସିଲ ଅଞ୍ଚଳରେ ଗାଁଲୋକ ପଛରେ ପଡୁଥିଲେ ଜିନିଷ ଗ୍ରହଣ କରିବାକୁ ମାଗଣାରେ । ଆମେ ପ୍ରତ୍ୟାଖାନ କରିଲେ ସେମାନେ ଆଶ୍ଚର୍ଯ୍ୟ ହେଉଥିଲେ । ସେଦିନଠାରୁ ସବୁଆଡେ ଖବର ବ୍ୟାପିଗଲାଯେ ଆମେ ଦଳେ ସର୍ଭେ କରୁଛୁ ଓ ଆଦିବାସୀଙ୍କ ହାନିଲାଭ ବିଷୟରେ ପଚାରୁଛୁ, କୌଣସି ଜିନିଷ ମାଗଣାରେ ଗ୍ରହଣ କରୁନାହିଁ । ଏହା କାଶୀପୁର ଇତିହାସରେ ପ୍ରଥମ କଥା ଯେ, କେହି ଜଣେ ବ୍ୟକ୍ତି ଆଦିବାସୀଙ୍କ ଠାରୁ ଉଚିତ ଦରରେ ଜିନିଷ କିଣିଛି, ଠିକ୍ ନାହିଁ କି ଲୁଣ୍ଠନ କରିନାହିଁ । ତା'ପରଠାରୁ ବିଭିନ୍ନ ଗାଁର ସୁଅ ଛୁଟିଲା ଆମ ପାଖକୁ ଓ ନିମନ୍ତ୍ରଣ ଆସୁଥିଲା ସେମାନଙ୍କର ମାଟି ବୁଲି ଯିବାକୁ । କାଶୀପୁରରେ ଆମକୁ ଗ୍ରହଣ କରିବା ଓ ଆଦିବାସୀଙ୍କ ଶୁଭ ଚିନ୍ତକ ବୋଲି ପ୍ରମାଣିତ କରିବା ବେଶୀ ସମୟ ଲାଗି ନଥିଲା ।





ମୋର ଅନ୍ତରଙ୍ଗ ବନ୍ଧୁମାନେ କାଶୀପୁର ପରିକଳ୍ପନାକୁ "କାଶୀପୁର ଥଣ୍ଡରବଲ୍" (Kashipur Thunderball) ବୋଲି କହୁଥିଲେ । କାରଣ ଏହା ଭୀଷଣ ରୋମାଞ୍ଚକାରୀ ଥିଲା ବିକାଶ ଓ ପରିବର୍ତ୍ତନ ଦୃଷ୍ଟିରୁ । ପାଞ୍ଚବର୍ଷ ଭିତରେ କାଶୀପୁରର ସାମାଜିକ, ଆର୍ଥିକ ଓ ରାଜନୈତିକ ମାନଚିତ୍ର ବଦଳିଯିବ, ଏହା ମୋତେ ବାରମ୍ବାର ଉତେଜିତ କରୁଥିଲା । ସବୁକିଛି ଗୋଟାଏ ବୌଦ୍ଧିକ ଓ ଆଦର୍ଶବାଦୀ ଆହ୍ୱାନ ଥିଲା । କାଶୀପୁର ପରିକଳ୍ପନା ସମ୍ଭବତଃ ଏକ ତୀବ୍ର ପ୍ରତିକ୍ରିୟା ଥିଲା । ଓଡ଼ିଶାରେ ସମାଜସେବା କହିଲେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ବନ୍ୟା ରିଲିଫ ଓ ଚୁଡ଼ା ଚାଉଳ ବାଣ୍ଟିବା ବା ସମ୍ମାନନୀୟା ରମାଦେବୀଙ୍କ ଗାନ୍ଧୀବାଦୀ ଆଶ୍ରମ ସ୍ଥାପନ କରିବା ବା ନବଜୀବନ ମଣ୍ଡଳ ତରଫରୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଆଦିବାସୀମାନଙ୍କୁ ଶିକ୍ଷା, ସ୍ୱାସ୍ଥ୍ୟ ସେବା ଯୋଗାଇଦେବା ଆଦି ଉଦାହରଣ ଦିଆ ଯାଉଥିଲା । ଭୂଦାନ ବା ଗ୍ରାମଦାନ ଆନ୍ଦୋଳନ ଓଡ଼ିଶାରେ ଏଇ ସମାଜ ସେବାର ଅନ୍ୟ ଏକ ଦିଗ ଥିଲା ଓ ସେଥିରେ ବୈପ୍ଳବିକ ଚେତନା କମ୍ ଥିଲା । ଖ୍ରୀଷ୍ଟିୟାନ୍ ମିଶନାରୀମାନେ ମଧ୍ୟ ସ୍କୁଲ, ହସ୍ପିଟାଲ୍ ସ୍ଥାପନ କରିଥିଲେ । କୁଷ୍ଠ ନିବାରଣ ମଧ୍ୟ ସେମାନଙ୍କର ଅନ୍ୟତମ ଉଦ୍ୟମ ଥିଲା । ମରୁଡ଼ି ଓ ବନ୍ୟା ହେଲେ ଦୈନିକ ସମ୍ବାଦ ପତ୍ର "ସମାଜ" ତରଫରୁ ସେବାମୂଳକ ସାହାଯ୍ୟ ମଧ୍ୟ ଦିଆଯିବା କଥା ପତ୍ର ପତ୍ରିକାରେ ବାହାରୁ ଥିଲା । ସ୍ୱାଧୀନତା ପରେ ପରେ ଓଡ଼ିଶାରେ ସମାଜସେବାର ପୃଷ୍ଠଭୂମି ଏଇଭଳି ଥିଲା । ଉତ୍ସର୍ଗୀକୃତ ସେବାର ଏକ ପରମ୍ପରା ସୃଷ୍ଟି ହୋଇଥିଲା । କିନ୍ତୁ ଓଡ଼ିଶାରେ ସେମିତି କୌଣସି ଆଖି ଦୃଶିଆ ବଳିଷ୍ଠ ସାମାଜିକ ଆନ୍ଦୋଳନ ମୁଣ୍ଡଟେକି ନଥିଲା । ଓଡ଼ିଶାରେ ସମାଜସେବା ପଛରେ ଏକ ପାରିବାରିକ ଆଭିଜାତ୍ୟ ଓ ମୂଲ୍ୟବୋଧର ପରୋକ୍ଷ ଭୂମିକା ସମ୍ଭବତଃ ବେଶିଥିଲା ।

ସମାଜସେବା ଓ ବିକାଶ ପ୍ରକ୍ରିୟାକୁ ମୋ ଭଳି ଜଣେ ପୁସ୍ତକକୀଟ ଭିନ୍ନ ଢ଼ଙ୍ଗରେ ବୁଝୁଥିଲା । ମୁକ୍ତି ଓ ସ୍ୱାଧୀନତା, ସମତା ଓ ସହଭାଗିତା, ଚିନ୍ତା ଓ ଚେତନା, ମଣିଷକୁ ଭଲ ପାଇବାର ଆନନ୍ଦ, ମୁଁ କାଲି ମାର୍କସ ବା ଫ୍ରେଡେରିକ୍ ଏଞ୍ଜେଲ୍‌ଙ୍କୁ ନପଢି ମଧ୍ୟ ବୁଝି ଥିଲି । କିନ୍ତୁ ମୁଁ ଦସ୍ତୋଭସ୍କି, ଟଲଷ୍ଟୟ, କାମ୍ୟୁ, ସାର୍ତ୍ତ, ହେସେ, ଏଲିଅଟ୍, କାଜାନ୍ ଜାକିସ୍ (Kazan Jakis)ଙ୍କୁ ଗୁରୁତ୍ୱର ସହ ପଢିଥିଲି ଛାତ୍ର ଜୀବନରେ । ଆଉ ପଢ଼ିଥିଲି ମହାତ୍ମାଗାନ୍ଧୀ, ନେହେରୁ, ଟାଗୋର, ଶରତଚନ୍ଦ୍ର, ବିମଳମିତ୍ର, ପ୍ରେମଚନ୍ଦ । ଓଡ଼ିଶା ପରିପ୍ରେକ୍ଷୀରେ ଆବେଗର ସହ ମୁଁ ପଢ଼ିଥିଲି ଗୋପୀ ମହାନ୍ତି ଓ ଚିତ୍ତରଞ୍ଜନ ଦାସଙ୍କ ଅଦ୍ୱିତୀୟ ପୁସ୍ତକ ଗୁଡିକୁ । ମୁଁ ଯେମିତି କ'ଣ ଗୋଟେ ଖୋଜୁଥିଲି ବର୍ଷ ବର୍ଷ ଧରି କିନ୍ତୁ ପାଉନଥିଲି । ବୌଦ୍ଧିକତାର ବାହାରେ, ବିଜ୍ଞାନର ପରୀକ୍ଷାଗାର ବାହାରେ, ଗଣିତର ତାତ୍ତ୍ୱିକ ସତ୍ୟତାର ସୀମାରେଖା ସେପାଖେ ଆଉ ଏକ

ଜୀବନ ଓ ଜିଜ୍ଞାସା ଅଛି ତାହା ମୁଁ ସ୍ପଷ୍ଟ ଦେଖିପାରୁଥିଲି । ମୁଁ ଜୀବନବାଦୀ ଥିଲି ଓ ବଞ୍ଚିବାର ଜଟିଳତାକୁ ସମ୍ପୂର୍ଣ୍ଣଭାବେ ବୁଝିବାକୁ ନିରନ୍ତର ଚେଷ୍ଟା କରୁଥିଲି । ଏଥିପାଇଁ ମୁଁ ସବୁବେଳେ ପାରମ୍ପରିକ ଚିନ୍ତାଧାରାକୁ ଅଥବା ଜୀବନଶୈଳୀକୁ ଗ୍ରହଣ କରିପାରୁ ନଥିଲି । ମୁଁ ଜଣେ ବିଦ୍ରୋହୀ ଥିଲି ଗୋଟାଏ ଦୃଷ୍ଟିରେ କିନ୍ତୁ ପଳାୟନ ପନ୍ଥୀ ଅଥବା ସୁବିଧାବାଦୀ ନୁହେଁ । କେବେ କେମିତି ନିର୍ବାସିତ ହେବାର ଭୟ ମିଶ୍ରିତ ସ୍ୱପ୍ନ ମୁଁ ଦେଖୁଥିଲି । କିନ୍ତୁ ମୋର ବିଶ୍ୱାସ ଥିଲା ଯେ ମୁଁ ନିଜକୁ ସମ୍ପୂର୍ଣ୍ଣ ଭାବେ ସଂଶ୍ଲିଷ୍ଟ କରିବାକୁ ରାସ୍ତା ପାଇଯିବି ।

କାଶୀପୁରକୁ ମୁଁ ରାଜସ୍ଥାନର ତିଲୋନିଆରୁ ଆସିଥିଲି । କିନ୍ତୁ ତିଲୋନିଆ ପହଞ୍ଚିବା ପୂର୍ବରୁ ମୋତେ କିଛି ଦିନ ପଶ୍ଚିମ ଓଡ଼ିଶାରେ ଅକ୍ସଫାମ୍ ନାମକ ଏକ ବ୍ରିଟିଶ ସାହାଯ୍ୟକାରୀ ସଂସ୍ଥାରେ ୧୯୭୮ ମସିହାରେ କାମ କରିବାକୁ ସୁଯୋଗ ମିଳିଥିଲା । ଏ ଅଞ୍ଚଳରେ କ୍ରମାଗତ ମରୁଡି ଲାଗି ରହିଥିଲା ଓ ତାହାର ମୁକାବିଲା ପାଇଁ ଏହି ଆନ୍ତର୍ଜାତିକ ସଂସ୍ଥା ଏକ ସ୍ୱତନ୍ତ୍ର ପ୍ରକଳ୍ପ ଆରମ୍ଭ କରିଥିଲା ୧୯୭୭ ମସିହାରେ । ଆମ ଭଳି ଯୁବକଯୁବତୀମାନଙ୍କୁ ବିଭିନ୍ନ ପରୀକ୍ଷା ନିରୀକ୍ଷା ପରେ ଚୟନ କରାଯାଇ ସେତେବେଳେର ସମ୍ବଲପୁର ଜିଲ୍ଲାର ପଦ୍ମପୁର ଅଞ୍ଚଳ ଓ କଳାହାଣ୍ଡି ଜିଲ୍ଲାର ଖରିଆର ଅଞ୍ଚଳରେ ବିଭିନ୍ନ ପ୍ରକାରର କାର୍ଯ୍ୟକ୍ରମ ହାତକୁ ନିଆଯିବା ପାଇଁ ପ୍ରଶିକ୍ଷଣ ଦିଆଗଲା । ଏହି ପ୍ରକଳ୍ପର ମୁଖ୍ୟଥିଲେ ଜଣେ ପୋଖତ ଓ ଅଭିଜ୍ଞ ସର୍ବୋଦୟ କର୍ମୀ ଶ୍ରୀ ଏ.ଭି.ସ୍ୱାମୀ । ସେ କଥା କଥାକେ ସ୍ୱର୍ଗୀୟ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ସଦାଶିବ ତ୍ରିପାଠୀ, ଶ୍ରୀ ଆନ୍ନା ସାହେବ ସହସ୍ରବୁଦ୍ଧେ ଆଦି ବିଶିଷ୍ଟ ସମାଜସେବୀ ଓ ନେତୃ ସ୍ଥାନୀୟ ବ୍ୟକ୍ତିଙ୍କ ନାମ ଉଚ୍ଚାରଣ କରନ୍ତି । ବୈପାରୀଗୁଡାରେ ଯୋଜନା କମିଶନଙ୍କ ସହାୟତାରେ କିଭଳି ସବୁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ନିଆଯାଇଥିଲା ଓ ସେଠାରେ ଅପାମାନେ ଓ ଭାଇମାନେ କିପରି ଉତ୍ସର୍ଗୀଗୃତ ଭାବେ କାମ କରୁଥିଲେ ତାହାର ଉଦାହରଣ ସେ ଦେଉଥାଆନ୍ତି । ଆମକୁ ପ୍ରଭାବିତ କରିବା ପାଇଁ ସେ ବିଭିନ୍ନ ପ୍ରକାର କୌଶଳ ଅବଲମ୍ବନ କରୁଥିଲେ । ମୁହଁରେ ଲମ୍ବା ଲମ୍ବା ୫୫୫ ଷ୍ଟେଟ୍ ଏକ୍ସପ୍ରେସ୍ ସିଗାରେଟ୍ । ଦରମା ଭାରତର ରାଷ୍ଟ୍ରପତିଙ୍କଠାରୁ ଅଧିକ । ଲ୍ୟାଣ୍ଡ ରୋଭରଗାଡି ତାଙ୍କର ଅଧିକ ପ୍ରିୟ । କଥାବାର୍ତ୍ତାରେ ସାହେବୀ ଆଦବ୍‌କାଇଦା । ଚାଲିଚଳନରେ ସାମନ୍ତବାଦୀ ଚରିତ୍ରର ପରିପ୍ରକାଶ । କିନ୍ତୁ ଗରିବଙ୍କ ପାଇଁ ଯେମିତି ପ୍ରାଣ କାନ୍ଦୁଛି । ଆମ ଯୁବକର୍ମୀ ଭିତରୁ ଯଦି କିଏ ବେଶୀ ଜାଣିଛି ବା ପଢ଼ିଛି ବା ଅସଲ ମର୍ମକଥା କହୁଛି ତେବେ ସେ ଗୋଟାଏ ଅଭିନବ ଆହ୍ୱାନର ସମ୍ମୁଖୀନ ହେଉଥିଲେ । ତା'ପରେ ଆରମ୍ଭ କରୁଥିଲେ ଗୋଟାଏ ପ୍ରକାର ଖେଳ ଯାହା "ଗେମସ୍ ପିପୁଲ ପ୍ଲେ" (Games People Play) ନାମକ ବହିରେ ଉଦାହରଣ ରୂପେ ଦିଆଯାଇଛି । ପୁଅମାନଙ୍କ ଅପେକ୍ଷା ଝିଅମାନେ ଏଥିରେ ଆଗୁଆ ଥିଲେ । ଶ୍ରୀଯୁକ୍ତ ଏ.ଭି.ସ୍ୱାମୀ ଜଣେ କରିତ୍‌କର୍ମା ଲୋକ ଓ ଅନେକ ଗୁଣର ଅଧିକାରୀ । ସେ ସମୟରେ ଜଣେ ବିଶିଷ୍ଟ ସମାଜସେବୀ ହେବାକୁ ଯେଉଁଭଳି ଯୋଗ୍ୟତା ଆବଶ୍ୟକ ତାଙ୍କ ପାଖରେ ଥିଲା ଭରପୂର । ଯେକୌଣସି ବର୍ଗର ଲୋକଙ୍କ ମନଛୁଇଁଲାଭଳି କଥାବାର୍ତ୍ତା କରିବାର କଳା ଥିଲା ତାଙ୍କ ପାଖରେ । ତାଙ୍କର ପାଖଲୋକମାନେ ସ୍ୱୀକାର କରୁଥିଲେ ଯେ ତାଙ୍କୁ ବୁଝିବା ଖୁବ୍ କଠିନ । ଅନେକ ଦେଶ ବୁଲିଛନ୍ତି । ଅତିକମ୍

ସମୟ ଭିତରେ ମୁଁ ତାଙ୍କୁ ଚିହ୍ନି ଦେଇଥିଲି । ମୋ ଭିତରେ ଏକ ବିଦ୍ରୋହର ମନୋଭାବ ସୃଷ୍ଟି ହୋଇଥିଲା । ସେ ଯଦି ଗରିବ ଓ ଅବହେଳିତଙ୍କ ପାଇଁ ପ୍ରକଳ୍ପ ଆରମ୍ଭ କରି ପାରୁଛନ୍ତି, ତେବେ ମୁଁ କାହିଁକି ପାରିବି ନାହିଁ ? ମୁଁ ଅତି ଶୀଘ୍ର ବିଦାୟ ନେଲି ଏ ପ୍ରକଳ୍ପରୁ ଏବଂ ପଶ୍ଚିମ ଓଡ଼ିଶାରୁ । ତିଲୋନିଆରେ ପହଞ୍ଚି ମୁଁ ପ୍ରଥମେ ତାଙ୍କୁ ଓ ତାଙ୍କର ସହକର୍ମୀମାନଙ୍କୁ ଚିଠିଟିଏ ଲେଖି ଜଣାଇଥିଲି ଯେ କୋରାପୁଟ ଭଳି ଆଦିବାସୀ ଅଞ୍ଚଳରେ ମୁଁ ବି ପ୍ରକଳ୍ପଟିଏ ଆରମ୍ଭ କରିବାକୁ ଯାଉଛି । ତାହା କେବଳ ସୂଚନାରେ ସୀମିତ ନଥିଲା । ଆଦିବାସୀ ଅଞ୍ଚଳରେ କାମ କରିବାବେଳେ ସର୍ବୋଦୟୀ ବା ଖ୍ରୀଷ୍ଟିୟାନ ମିଶିନାରୀଙ୍କ ଏକଚାଟିଆ ଅଧିକାର ନୁହେଁ । ଯୁବଗୋଷ୍ଠୀଙ୍କ ସାମାଜିକ କର୍ମୀମାନେ ସାରାଦେଶରେ ନୂଆଁ କରି ବିକାଶର ପଦ୍ଧତି ନିର୍ଦ୍ଧାରଣ କରୁଛନ୍ତି ।

ଓଡ଼ିଶାର ଆଦିବାସୀ ଅଞ୍ଚଳରେ ପ୍ରକଳ୍ପ ଖୋଲିବାର ନିଷ୍ପତ୍ତି ନିଆଯିବା ଓ ସ୍ଥାନ ନିର୍ଦ୍ଧାରଣ କରିବାରେ ମୁଁ ଅନେକ ଲୋକଙ୍କ ପରାମର୍ଶ ଲୋଡିଥିଲି । ମୋର ଅନ୍ତରଙ୍ଗ ବନ୍ଧୁ ଶ୍ରୀ ଅରବିନ୍ଦ ବେହେରା, ଶ୍ରୀ ଗୋପବନ୍ଧୁ ପଟ୍ଟନାୟକ, ଶ୍ରୀ ସୁଧାକର ରାୟ, ଶ୍ରୀ ପ୍ରଦୀପ ଦାସ, ଶ୍ରୀ ଅଶୋକ ଆଚାର୍ଯ୍ୟ, ଶ୍ରୀ ପ୍ରଫୁଲ୍ଲ ବେହେରା ଆଦି ଆଦିବାସୀ ଅଞ୍ଚଳରେ କାମ କରିବା ଯୋଜନା ଜାଣି ଉଲ୍ଲସିତ ହୋଇଥିଲେ । ବିଭିନ୍ନ ମତାମତ ଦେଇଥିଲେ ମଧ୍ୟ । କିନ୍ତୁ ସେମାନେ କେହି ଜଣେ ହେଲେ କାଶୀପୁରର ଇତିହାସ-ଭୂଗୋଳ ଜାଣିନଥିଲେ । ମୁଁ ଶ୍ରୀ ବଙ୍କର ରାୟ ଓ ଶ୍ରୀମତୀ ଅରୁଣା ରାୟଙ୍କୁ ପଚାରିବାରେ ତାଙ୍କର ପ୍ରସ୍ତାବ ଥିଲା ଯେ ଓଡ଼ିଶାରେ ଅନେକ ଦିନରୁ ବିକାଶମୂଳକ କାର୍ଯ୍ୟ କରିଆସୁଥିବା ଶ୍ରୀ ଜୋ ମାଡିଆଥ୍, ତାଙ୍କ ସ୍ତ୍ରୀ ଶ୍ରୀମତୀ ଆନ୍ଧ୍ୟା ମାଡିଆଥ୍ ଓ ତାଙ୍କର ସଂସ୍ଥା "ଗ୍ରାମ ବିକାଶ" ପରିଦର୍ଶନ ମୋ ପକ୍ଷେ ଉଚିତ୍ ହେବ । ସେମାନେ କୁଆଡେ ଓଡ଼ିଶାରେ ଖୁବ୍ ଭଲକାମ କରି ଦେଶ ବିଦେଶରେ ନାମ କମାଇଛନ୍ତି ଓ ପ୍ରଶଂସିତ ହୋଇଛନ୍ତି । ଓଡ଼ିଶାରେ ଥିଲାବେଳେ "ଗ୍ରାମ ବିକାଶ" ବୋଲି ଗୋଟିଏ ସଂସ୍ଥା ଅଛି ଓ ଜୋ ଏବଂ ଆନ୍ଧ୍ୟା ବୋଲି ସ୍ୱାମୀ-ସ୍ତ୍ରୀ ଗଞ୍ଜାମର ଆଦିବାସୀ ଅଞ୍ଚଳରେ କାର୍ଯ୍ୟରତ ଅଛନ୍ତି ତାହା ମୁଁ କେବେହେଲେ ଶୁଣି ନଥିଲି । କେହି କହିନଥିଲେ । ମୋତେ ଅବାକ୍ ଲାଗିଲା ଯେ ରାଜସ୍ଥାନରେ ସାମାଜିକ କାର୍ଯ୍ୟ କ୍ଷେତ୍ରରେ ଓଡ଼ିଶାର ଏକ ସଂସ୍ଥାର ନାମ ଅଛି ଅଥଚ ଓଡ଼ିଶାର ଲୋକଲୋଚନକୁ ଏହା ଆସିନାହିଁ । ମୁଁ ତିଲୋନିଆରୁ ସିଧା ବ୍ରହ୍ମପୁର ଦେଇ ମହୁଡା ଗ୍ରାମରେ ପହଞ୍ଚିଥିଲି । ରିକ୍ସା କେହି ଷ୍ଟେସନ୍‌ରୁ ରାଜି ହେଲେ ନାହିଁ । ଚାଲି ଚାଲି ପହଞ୍ଚି ଥିଲି "ଗ୍ରାମ ବିକାଶ" ସଂସ୍ଥାରେ । ଜୋ ଓ ଆନ୍ଧ୍ୟା ହାର୍ଦ୍ଦିକ ସ୍ୱାଗତ କରିଥିଲେ ଓ ମୁଁ ମୋର ଆସିବାର ଅଭିପ୍ରାୟ ଜଣାଇଥିଲି । ସେମାନେ କହୁଥିଲେ ଯେ ବଙ୍କର ରାୟ ତାଙ୍କୁ ମୋର ପ୍ରକଳ୍ପ ଆରମ୍ଭ କରିବାର ଯୋଜନା ଜଣାଇଛନ୍ତି ଓ ମୁଁ ପରାମର୍ଶ ଲୋଡିବା ପାଇଁ ଆସିଥିବା କଥା ସେମାନଙ୍କୁ ଜଣା ଅଛି ।

ମହୁଡାର ଆଦିବାସୀ ଅଞ୍ଚଳରେ ସେମାନେ କିପରି ପହଞ୍ଚିଲେ ତାହାର ଇତିହାସ ସେମାନେ ଶୁଣାଇଥିଲେ । କେରଣ୍ଡିମାଳ ଅଞ୍ଚଳରୁ ଆରମ୍ଭ ହୋଇଛି କନ୍ଧମାନଙ୍କର ଦେଶ । ସେଠାରୁ ଫୁଲବାଣୀ ସହ ଦକ୍ଷିଣ ଓଡ଼ିଶାକୁ ବ୍ୟାପିଛି କନ୍ଧମାନଙ୍କର ବସତି । ବିଭିନ୍ନ ପ୍ରକାର

କନ୍ଧ ଅଛନ୍ତି ଓ ଓଡ଼ିଶାରେ ଏମାନେ ଅନ୍ୟତମ ମୁଖ୍ୟ ଆଦିବାସୀ ଗୋଷ୍ଠୀ । କେରଣ୍ଡିମାଳ ପ୍ରକୃତରେ ପୂର୍ବଘାଟ ପାର୍ବତ୍ୟମାଳାର ଅଂଶ ବିଶେଷ । ଲାଗି ଲାଗି ହୋଇ ପାହାଡ । ରାସ୍ତାଘାଟ ନାହିଁ ବଣ ଜଙ୍ଗଲ ଓ ବନ୍ୟ ଜନ୍ତୁଙ୍କ ଦ୍ୱାରା ପରିପୂର୍ଣ୍ଣ । ସେ ଭିତରେ ଜୋ ଏବଂ ଆନ୍ଥ୍ୟା ମାଡିଆଥ୍ କେତେ ବର୍ଷ ହେଲା କଠିନ ପରିଶ୍ରମ କରୁଛନ୍ତି । ଜୋଙ୍କ ଘର କେରଳରେ ଓ ଆନ୍ଥ୍ୟାଙ୍କ ଘର ତାମିଲ୍‌ନାଡୁରେ । ୧୯୭୧ ମସିହା ଘୂର୍ଣ୍ଣିବାତ୍ୟାରେ କଟକର ରାଜନଗର ଅଞ୍ଚଳରେ ରିଲିଫକାମ କରିବାକୁ ଏ ଦୁହେଁ ଆସିଥିଲେ । ଉଭୟେ କଲେଜ ପାଠ ସଦ୍ୟ ଶେଷ କରିଥିଲେ । ରିଲିଫ୍ କାମ କରୁ କରୁ ରହିଗଲେ ସେ ଅଞ୍ଚଳରେ । ତା'ପରେ ସେଠାରେ କାମ ସରିଗଲା ଓ ରହିବା କଠିନ ହୋଇପଡିଲା । ଏଥିପାଇଁ ସେମାନେ ବାଧ୍ୟ ହୋଇ କେରଣ୍ଡିମାଳ ଅଞ୍ଚଳରେ କାମ କରିବାକୁ ଆସିଥିଲେ । ଅନୁନ୍ନତ ଓ ଅପହଞ୍ଚ ଅଞ୍ଚଳ । ବ୍ରହ୍ମପୁରର ପାଖରେ ନଅଦଶ କିଲୋମିଟର ଦୂରରେ । ଅଥଚ ସର୍ବନିମ୍ନ ସୁବିଧାରୁ ଆଦିବାସୀମାନେ ବଞ୍ଚିତ । ଅନ୍ୟପକ୍ଷରେ ବ୍ରହ୍ମପୁର ଓ ଆଖପାଖର ସାହୁକାରମାନଙ୍କର ଏ ଅଞ୍ଚଳ ଏକ ଉପନିବେଶ । ଆଦିବାସୀମାନେ ସବୁ ତେନ୍ତୁଳି ଗଛ, ଜମି ଓ ବଗଡ ବା ପୋଡୁ ଚାଷର ଫସଲ ବନ୍ଧା ଦିଅନ୍ତି ସାହୁକାରମାନଙ୍କୁ । ଶୋଷଣ ଓ ଅତ୍ୟାଚରର ଏକ ଚରମ ପରିସ୍ଥିତି । ଜୋ ଓ ଆନ୍ଥ୍ୟା ମୋତେ ବୁଝାଇ ଥିଲେ ଯେ ସେ ଅଞ୍ଚଳରେ ସେମାନେ ଯଦିଓ ଦୁଗ୍ଧ ଉତ୍ପାଦନ ସମବାୟ ସମିତି ସହାୟତାରେ ଗୋପାଳନକୁ ପ୍ରାଥମିକତା ଦେଇଥିଲେ, କିନ୍ତୁ ଆଦିବାସୀମାନଙ୍କୁ ଋଣମୁକ୍ତ କରିବାକୁ ସେମାନେ ବଦ୍ଧପରିକର ଥିଲେ । ଆନ୍ଥ୍ୟା ମାଡିଆଥ୍ ଜଣେ ଗ୍ରାଜୁଏଟ୍ ନର୍ସଥିଲେ ଓ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ଆଦିବାସୀଙ୍କ ଗ୍ରହଣରେ ବ୍ୟାପକଭାବେ ନେଇଥିଲେ । କିନ୍ତୁ ସବୁମୂଳରେ ଥିଲା ଏକ ସଂଗଠନ ଗଢି ଲୋକଙ୍କୁ ଶୋଷଣ, ଅତ୍ୟାଚାର ଓ ଅନ୍ୟାୟରୁ ମୁକ୍ତ କରିବା ।

ଏହାଦ୍ୱାରା କେରଣ୍ଡିମାଳ ଗଣ ସଂଗଠନ ନାମକ ଲୋକ ସଂଗଠନ ସେ ଅଞ୍ଚଳରେ ଗଢି ଉଠିଥିଲା । ଜୋ ଏବଂ ଆନ୍ଥ୍ୟା ଲୋକ ସଂଗଠନର ଆଭିମୁଖ୍ୟ ମୋତେ ବୁଝାଇବାକୁ ଯାଇଁ ଦୁଇତିନି ଦିନ କେତେକ ଆଭ୍ୟନ୍ତରିଣ କନ୍ଧ ଗାଁକୁ ବୁଲାଇ ନେଇଥିଲେ । ମୁଁ ସ୍ତମ୍ଭୀଭୂତ ହୋଇପଡିଥିଲି । ଲୋକମାନେ ସାହୁକାରୀ ମହାଜନୀର ଶୃଙ୍ଖଳରୁ ମୁକ୍ତ ହେବାପାଇଁ ଲଢେଇ କରୁଛନ୍ତି ତାହା ମୋ ମନରେ ଆଣି ଦେଇଥିଲା ଅନେକ ପ୍ରତ୍ୟୟ । ଜଣେ ଆସିଛି ସୁଦୂର କେରଳରୁ ଓ ଅନ୍ୟଜଣେ ତାମିଲ୍‌ନାଡୁରୁ । ଅଣ ଓଡ଼ିଆ ଖ୍ରୀଷ୍ଟିଆନ୍ । ଅଥଚ ଜନସଂଗଠନ ଗଢି ସାହୁକାରମାନଙ୍କ ବିରୁଦ୍ଧରେ ମୁକାବିଲା କରିବା ଓଡ଼ିଶାର ଆଦିବାସୀ ଅଞ୍ଚଳରେ ନୂଆ ଇତିହାସ ସୃଷ୍ଟି କରିବା ସହ ସମାନ । ମୁଁ କାଶୀପୁର ଅଞ୍ଚଳରେ କେଉଁଭଳି କାର୍ଯ୍ୟ ଆରମ୍ଭ କରିବାକୁ ଚାହୁଁଛି ସେମାନଙ୍କ ଆଗରେ ଉପସ୍ଥାପନା କରିଥିଲି । ସେମାନେ କଳାହାଣ୍ଡିର ଥୁଆମୂଳ ରାମପୁର ଅଞ୍ଚଳରେ କାମ ଆରମ୍ଭ କରିବାକୁ ପ୍ରସ୍ତାବ ଦେଇଥିଲେ । ମୁଁ କିନ୍ତୁ ମନେମନେ ଏକ ଶପଥ କରିଥିଲେ ଯେ ଜୋ ଏବଂ ଆନ୍ଥ୍ୟା ମାଡିଆଥ୍ ଅଣଓଡିଆ ହୋଇ ଯଦି ଏତେ କଥା କରି ପାରୁଛନ୍ତି ମୁଁ କାଶୀପୁରରେ ମଧ୍ୟ ସଂଗଠନାତ୍ମକ କାର୍ଯ୍ୟକରିପାରିବ । ବଙ୍କର ରାୟ କହିଥିଲେ ଯେ ଜୋ ମାଡିଆଥ୍‌ଙ୍କୁ ଏକ ପରାମର୍ଶ ଦାତା ରୂପେ ଗ୍ରହଣ କରିବା

ପାଇଁ । ସମ୍ଭବତଃ ପ୍ରତ୍ୟେକ ପ୍ରଦେଶରେ ଜଣେ ଜଣେ ଗଡ଼୍‌ଫାଦର ଥାନ୍ତି ଓ ତାଙ୍କର ଆଶୀର୍ବାଦ ନ ପାଇଲେ ସାହାଯ୍ୟ ଓ ସହାନୁଭୂତି କାହାଠାରୁ ଆସିବ ନାହିଁ । ସବୁଠି ଗୋଟାଏ ପାୱାର ପ୍ଲେ (Power Play) ହେଉଥାଏ । ସମାଜ କାର୍ଯ୍ୟ ଓ ବିକାଶ କ୍ଷେତ୍ରରେ ଭିନ୍ନ ନୁହେଁ । କିନ୍ତୁ ୧୯୮୧ ମସିହାରେ ମୁଁ ଜୋ ମାଡିଆଥ୍‌ଙ୍କୁ ଜଣେ ଗଡ଼୍‌ଫାଦର ଭାବେ ନ ଦେଖି ଜଣେ ପ୍ରଗତିଶୀଳ ଓ ପରିବର୍ତ୍ତନ ଯୁଦ୍ଧର ସେନାପତି ଭାବେ ଦେଖୁଥିଲେ । ମୁଁ ଗ୍ରାମ୍ୟ ଗରିବଙ୍କ ଜନସଂଗଠନର ସ୍ୱପ୍ନ ମଧ୍ୟ ଦେଖୁଥିଲି ମୋର ଆପଣାର ବାଟରେ ।

"କାଶୀପୁର ଥଣ୍ଡରବଲ" ଏକ ମିଶନ୍ ଥିଲା । ଗୋଟାଏ ପଟେ ଶ୍ରୀ ଏ.ଭି. ସ୍ୱାମୀ, ଅନ୍ୟପଟେ ଶ୍ରୀ ଜୋ ମାଡିଆଥ୍ ଏବଂ ଶ୍ରୀମତୀ ଆନ୍ନ୍ୟା ମାଡିଆଥ୍ । ମୁଁ ମୋ ସ୍ଥିତି ନିର୍ଦ୍ଧାରଣ କରି ପାରିଥିଲି ଅନାୟାସରେ । ମୁଁ ଦେଖାଇ ଦେବାକୁ ଚାହିଁଥିଲି ଯେ ଗରିବ ଓ ଶୋଷିତ ଆଦିବାସୀଙ୍କ ଗହଣରେ ଜଣେ ରହିପାରିବ ଓ ତାଙ୍କ ସହ କାନ୍ଧରେ କାନ୍ଧ ମିଳାଇ ଏକ ନୂତନ ଶୋଷଣମୁକ୍ତ ସମାଜ ଗଠନ କରିବାର ପ୍ରକ୍ରିୟା ଆରମ୍ଭ ହୋଇପାରିବ ।



# ୯

ଆଦିବାସୀ ଅଞ୍ଚଳରେ ଜଣେ ନୂଆଭାବେ ପ୍ରକଳ୍ପଟିଏ ଆରମ୍ଭ କଲେ କେତେବର୍ଷ ପାଇଁ କାର୍ଯ୍ୟକ୍ରମ ହାତକୁ ନେବ ? ଏ ପ୍ରଶ୍ନ ବାରମ୍ବାର ପଚରା ଯାଇଥିଲା ମୋତେ । ସ୍ୱେଚ୍ଛାସେବୀ ସଂଗଠନମାନେ ଯେଉଁଠାରେ କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି, ସେଠାରେ ବର୍ଷ ବର୍ଷ ଧରି କାର୍ଯ୍ୟରତ ଅଛନ୍ତି ଏହା ମୁଁ ବିଶେଷ ଭାବେ ଅଧ୍ୟୟନ କରିଥିଲି । ତିଲୋନିଆରେ ଥିବାବେଳେ ଏଇଭଳି କେତୋଟି ପୁରୁଣା ଓ ଅଭିଜ୍ଞତା ସମ୍ପନ୍ନ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ମୂଲ୍ୟାଙ୍କନ କରିବାକୁ ମୋତେ ମଧ୍ୟ ସୁଯୋଗ ମିଳିଥିଲା । ଗାନ୍ଧିବାଦୀ ଓ ମିଶନାରୀମାନଙ୍କର ସଂସ୍ଥାସବୁ କୋଡିଏ ତିରିଶ ବର୍ଷ ଧରି କାମ କରି ଆସୁଛନ୍ତି ଦେଶସାରା । କେତୋଟି ସଂସ୍ଥା ସ୍ୱାଧୀନତା ପୂର୍ବରୁ ମଧ୍ୟ ଦାତବ୍ୟ ଅନୁଷ୍ଠାନର ଲକ୍ଷ୍ୟରଖି ବିଭିନ୍ନ ସମାଜସେବା କରି ଆସୁଛନ୍ତି । ଇତିହାସରେ କୌଣସି ସଂସ୍ଥା ନିଜର ଲକ୍ଷ୍ୟ ହାସଲ କରି ଓହରି ଯିବାର ଦୃଷ୍ଟାନ୍ତ ମୁଁ ଦେଶସାରା କେଉଁଠି ଦେଖିନାହିଁ । ସେସମୟରେ ମୋତେ ଅବାନ୍ତର ଲାଗୁଥିଲା ଯେ ଜଣେ ଗୋଟିଏ ସ୍ଥାନରେ ଗୋଟାଏ ପ୍ରକାର ପରିସ୍ଥିତିରେ ନିଜର ଜୀବନବ୍ୟାପୀ ସାମାଜିକ କର୍ମକର୍ତ୍ତା ହିସାବରେ କାମ କରିବ । ଥକି ଯିବ ନାହିଁ କି ପଛକୁ ଫେରିବ ନାହିଁ । ସେତେବେଳେ ମୋର ମନେ ହେଉଥିଲା ଯେଉଁମାନେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ବର୍ଷ ବର୍ଷ ଧରି କାର୍ଯ୍ୟରତ ଅଛନ୍ତି, ସେମାନେ ଗୋଟାଏ ଧରଣର ସ୍ୱାର୍ଥପରତା ଓ ସ୍ୱେଚ୍ଛାଚାରିତାର ଆଶ୍ରୟ ନେଇଛନ୍ତି । ସ୍ୱେଚ୍ଛାସେବୀ ସଂସ୍ଥା ଓ ତାହାର ନେତୃତ୍ୱ ଗରିବଙ୍କ ନାମରେ ସମ୍ଭବତଃ ବଞ୍ଚି ରହିଛି ବୋଲି ଗୋଟାଏ ସ୍ଥୁଳ ଧାରଣା ସୃଷ୍ଟି ହେଉଥାଏ । ସମାଜ ସେବାରେ ତ୍ୟାଗ ଅଛି କି ନାହିଁ ପ୍ରଶ୍ନ ମୋ ମନରେ ଉଠୁଥାଏ । ସମାଜସେବା ସମାହିତ ବିକାଶଧାରାର ଗତି ଦୀର୍ଘଦିନ ରହେ କି ନାହିଁ ପୁରୁଣା ସଂସ୍ଥାମାନଙ୍କୁ ଦେଖିଲେ ମନରେ ଅନେକ ପ୍ରଶ୍ନ ଉଙ୍କି ମାରେ । ଅନେକ କ୍ଷେତ୍ରରେ ସମାଜସେବା ଏକ ପାରିବାରିକ ବ୍ୟବସାୟରେ ପରିଣତ ହୋଇଯିବାର ଆଶଙ୍କା ଦେଖାଦିଏ ଓ କେତେ କ୍ଷେତ୍ରରେ ତାହା ବାସ୍ତବରେ ପରିଣତ ହୋଇଯାଏ । ଏସବୁ କଥା ମୁଁ ଦେଶସାରା ଦେଖିଦେଖି କାଶୀପୁରରେ କେବଳ ପାଞ୍ଚବର୍ଷର ପ୍ରକଳ୍ପ ଯଥାର୍ଥ ବୋଲି ପରିକଳ୍ପନା କରିଥିଲି । ଏହା ମୋ ପାଇଁ ଏକ ରୋମାଞ୍ଚକାରୀ ଅଭିଯାତ୍ରା ଥିଲା । ମୋର ଅଭିଜ୍ଞ ବନ୍ଧୁମାନେ ହସୁଥିଲେ ଆଉ କହୁଥିଲେ - "ତମେ ତ ଆରମ୍ଭ କରି ନାହଁ । ଅପସାରଣ କଥା କେମିତି ଭାବୁଛ ?" ମୁଁ କିନ୍ତୁ ଯୁକ୍ତି ବାଢିବାରେ ପାରଙ୍ଗମ ଥିଲି ଓ ଦୃଢ ସଂକଳ୍ପ ସହ କହୁଥିଲି, ଗୋଟିଏ ସ୍ଥାନରେ ପାଞ୍ଚ ବର୍ଷରୁ ଅଧିକ କାମ କରିବା ନିରର୍ଥକ । ଯଦି ଜନ ସହଭାଗିତା ଠିକ୍ ଥାଏ ଓ କାର୍ଯ୍ୟ କରିବାର ପ୍ରକ୍ରିୟା ଠିକ୍ ରହେ ତେବେ ଗୋଟିଏ ଅନୁନ୍ନତ ଓ ଅବହେଳିତ ଇଲାକାର ନକ୍ସା ନିଶ୍ଚୟ ବଦଳିଯିବ । ଲୋକ ଯୋଜନାର ଯଦି ସଫଳ ରୂପାୟନ ହୁଏ ତେବେ ଲକ୍ଷ୍ୟ

ସ୍ଥଳରେ ପହଞ୍ଚିହେବ । ବିକାଶ ଓ ପରିବର୍ତ୍ତନର ଏକ ନୂତନ ଅଧ୍ୟାୟ ସୃଷ୍ଟି ହୋଇ ପାରିବ । ମୁଁ ସମ୍ଭବତଃ ଏକ ନୂତନ ଇତିହାସ ସୃଷ୍ଟି କରିବାକୁ ଚାହୁଁଥିଲି କାଶୀପୁରରେ । ମୁଁ ନିଶ୍ଚିତ ଏକ ସ୍ୱପ୍ନ ସମ୍ଭବତାର ଗଭୀର ସମୁଦ୍ରରେ ସନ୍ତରଣ କରୁଥିଲି ।

ମୋର ଘନିଷ୍ଠବନ୍ଧୁ ଡ଼କ୍ଟର ଗନ୍ଧର୍ବ ରାୟ କାଶୀପୁରପ୍ରତି କ୍ରମେ ବିମୁଖ ହୋଇ ପଡୁଥିଲେ । ପରିବାର ଠାରୁ ଦୂରରେ ରହିଥିଲେ ନିଶ୍ଚିତ । ବିଶ୍ୱ ବିଦ୍ୟାଳୟରୁ ମେଡିସିନ୍‌ରେ ଗୋଲ୍‌ଡ ମେଡାଲ ସେ ପାଇଥିଲେ ଓ କାଶୀପୁର ଭଳି ସୀମିତ ପୃଥିବୀରେ ତାଙ୍କର ଜ୍ଞାନ ଓ ଦକ୍ଷତାର ଉପଯୁକ୍ତ ବିନିଯୋଗ ହୋଇପାରି ନାହିଁ ବୋଲି ସେ ଖୁବ୍ ବ୍ୟସ୍ତ ହେଉଥିଲେ । ମୋ ସହ ପରାମର୍ଶ କରୁଥିଲେ ବାରମ୍ବାର । ମୁଁ କିନ୍ତୁ ତାଙ୍କର ଭବିଷ୍ୟତ ପାଇଁ କାଶୀପୁରରୁ ବଦଳି ହେବା ପ୍ରସ୍ତାବରେ ଏକମତ ହୋଇଥିଲି । ଏପରିକି ସେ ଲେଖିଥିବା ଦରଖାସ୍ତର ବିଷୟ ବସ୍ତୁ ଓ ଇଂରାଜୀ ଭାଷା ମୁଁ ମୋଟାମୋଟି ସ୍ଥିର କରିଥିଲି । କିନ୍ତୁ ତାଙ୍କର ବଦଳି ଆମ ପାଇଁ ସମସ୍ୟା ସୃଷ୍ଟି କରିଥିଲା । ପ୍ରଥମେ ତାଙ୍କର ପ୍ରତ୍ୟକ୍ଷ ହସ୍ତକ୍ଷେପ ଯୋଗୁଁ ଯେଉଁ ଦୃଢ଼ ଲୋକ ସମ୍ପର୍କ ପ୍ରତିଷ୍ଠା ହୋଇଥିଲା ତାହା ଦୁର୍ବଳ ହୋଇଯିବ ବୋଲି ଡର ଥିଲା । ଦ୍ୱିତୀୟରେ ସେ ବଦଳି ହେଲେ ଆମକୁ ମିଳିଥିବା ଡାକ୍ତରଙ୍କ କ୍ୱାର୍ଟରଟି ମଧ୍ୟ ହାତରୁ ଚାଲିଯିବ । ମୁଁ ସଚେତନ ହୋଇଥିଲି ଏବଂ ଆମର ନିଜ ଟ୍ରେନିଂ ସେଣ୍ଟର ପ୍ରତିଷ୍ଠାର ପ୍ରକ୍ରିୟା ଆରମ୍ଭ କରିଦେଇ ଥିଲି । କାଶୀପୁରର ତହସିଲଦାର, ରାୟଗଡାର ସବ୍-କଲେକ୍ଟର ଓ କୋରାପୁଟର ଜିଲ୍ଲାପାଳ ସମସ୍ତେ ପରିଚିତ ବନ୍ଧୁଥିଲେ ।

ମୁଁ ପ୍ରଥମେ କାଶୀପୁର ପାଖରେ ଜମି କିଛି ଲିଜ୍ ନେବାକୁ ଚେଷ୍ଟା କରିଥିଲି । କାଶୀପୁର ବସ୍ତି ଓ ପାଖକୁ ଲାଗିଥିବା ଇଲାକାରେ ସରକାରୀ ଜମି ଖାଲି ନଥିଲା । ଯାହା ଥିଲା କୌଣସି ନା କୌଣସି ଅଫିସ୍ ପାଇଁ ଉଦ୍ଦିଷ୍ଟ ଥିଲା ଅଥବା ବସ୍‌ଷ୍ଟାଣ୍ଡ ଆଦି ନିର୍ମାଣ କରିବାର ପ୍ରସ୍ତାବ ଥିଲା । ମୋତେ ନିରାଶ ହେବାକୁ ପଡିଲା । କାଶୀପୁର ଆଦିବାସୀ ଅଞ୍ଚଳ ହୋଇଥିବାରୁ ଆଦିବାସୀ ଓ ହରିଜନ ଜମି କିଣିବା ଏକ କଷ୍ଟକର ବ୍ୟାପାର । "ସିରିପାଇ" ଅଞ୍ଚଳରେ ଅଫିସ୍ ଖୋଲିବା ପାଇଁ ମୋ ମନରେ ଖୁବ୍ ଆଶା ଥିଲା । ମୋର ସହକର୍ମୀମାନଙ୍କର ସେଠାକୁ ଯିବାରେ ଦ୍ୱିଧା ଓ ଅନିଚ୍ଛା ପ୍ରକାଶିତ ହୋଇଥିଲା । ମୁଁ ବାଧ୍ୟ ହୋଇ କାଶୀପୁର ଆଖପାଖରେ ଟ୍ରେନିଂ ସେଣ୍ଟର ଖୋଲିବା କଥା ଚିନ୍ତା କରୁଥିଲି । ବ୍ୟାଙ୍କ୍ ମ୍ୟାନେଜର କହୁଥିଲେ, ତାଙ୍କର ବନ୍ଧୁମାନେ ଚମ୍ପାଯୋଡ ଗାଁରେ କାଶୀପୁର-ରାୟଗଡ଼ା ରାସ୍ତାରେ ଜମି କିଣିଛନ୍ତି କଫି ଚାଷ କରିବା ପାଇଁ । ସେଠାରେ ଅନାୟସରେ ଆଦିବାସୀ ଜମି ୧୦ଏକର ମିଳିଯିବ । ଆବଶ୍ୟକୀୟ ସରକାରୀ ଅନୁମତି ମଧ୍ୟ ପ୍ରାପ୍ତ ହୋଇଯିବ । ଚମ୍ପାଯୋଡ ଗାଁ କାଶୀପୁରରୁ ଆଠ-ନଅ କିଲୋମିଟର ଦୂରରେ । କାଶୀପୁରକୁ ଯିବା ଆସିବା ସହଜ ହେବନାହିଁ ଚାଲିକରି । ସରକାରୀ ଅଫିସ୍, ବ୍ୟାଙ୍କ୍, ପୋଷ୍ଟ ଅଫିସ୍ ଆଦି ସହ ସମ୍ପର୍କ ରକ୍ଷା କରି ହେବ ନାହିଁ । କାଶୀପୁର ଠାରୁ ପଶ୍ଚିମକୁ କୋଡିଏ କିଲୋମିଟର ଦୂରରେ ସୁଙ୍ଗେର ପଞ୍ଚାୟତରେ କିଛି ଜାଗା ମିଳୁଥିଲା । ତାହା ମଧ୍ୟ ବର୍ଷା ସମୟରେ ବିଚ୍ଛିନ୍ନ ହୋଇ ପଡିଥିଲା । ରାୟଗଡା-କାଶୀପୁର

ରାସ୍ତାରେ ରୋପକଣା ଠାରେ ମଧ ଟ୍ରେନିଂ ସେଣ୍ଟର କରିବାକୁ ପ୍ରଶାସନ ତରଫରୁ ପ୍ରସ୍ତାବ ଦିଆଯାଇଥିଲା । ତାହା କିନ୍ତୁ କାଶୀପୁର ଠାରୁ ୪୦କି.ମି. ଦୂରରେ ଥିଲା । ଆମେ ସଂକଟରେ ପଡିଥିଲୁ ଯେ କେଉଁଠାରେ ଆମର ଟ୍ରେନିଂ ସେଣ୍ଟର ପ୍ରତିଷ୍ଠା କରିବା ।

ଆମ ମାନଙ୍କର ଯୋଜନା ଓ ବାଧାବିଘ୍ନ କଥା କାଶୀପୁରର ଅନେକ ଲୋକ ଜାଣିଥିଲେ । ଶେଷରେ ବ୍ୟାଙ୍କ୍ ମ୍ୟାନେଜ୍‌ର ଶ୍ରୀ ପି.ଆର.କେ. ରାଓ ଦିନେ କଥା ଛଳରେ କହିଲେ- "ଚାଲନ୍ତୁ କୁମ୍ଭାରଶୀଳା ଗାଁ ବୁଲିଯିବା । ବ୍ୟାଙ୍କ୍‌ରୁ ଅନେକ ଋଣ ନେଇଛନ୍ତି । ଗାଁରେ ମାଟି ହାଣ୍ଡି ଗଢ଼ା ହେଉଛି ଓ ସାରା କାଶୀପୁରର ଲୋକେ ଏହା ଉପରେ ନିର୍ଭର କରୁଛନ୍ତି ।" ମୁଁ କୌତୂହଳ ହୋଇ ତାଙ୍କ ସହ ୪କିଲୋମିଟର ଚାଲି ଚାଲି ସେ ଗାଁକୁ ଯାଇଥିଲି । ଗାଁରେ ମିଟିଂ ହେଲା । ବିଭିନ୍ନ କଥା ଆଲୋଚନା ହେଲା । କୃଷି ଋଣ ସହ କୁମ୍ଭାରମାନଙ୍କ ପାଇଁ ୱାର୍କ ସେଡ୍ ତିଆରି କରିବା ମଧ ଆଲୋଚନାର ବିଷୟ ବସ୍ତୁ ଥିଲା । ଫେରିଲା ବେଳକୁ ସନ୍ଧ୍ୟା ହୋଇଯାଇଥିଲା । ଭୀଷଣ ଭାଲୁ ଡର । ଆମକୁ ନିରାପଦରେ ଛାଡିବା ପାଇଁ ଚାରି ପାଞ୍ଚଜଣ କୁମ୍ଭାର ସାଙ୍ଗରେ ଆସିଥିଲେ । ପାଖ ପାହାଡରେ ଆଠ ଦଶଟି ଭାଲୁ ସପରିବାରେ ରହନ୍ତି । ଭୀଷଣ ଉତ୍ପାତ କରି ମକା ଫସଲକୁ ନଷ୍ଟ କରନ୍ତି । ସେମାନେ କହୁଥିଲେ ଏ ରାସ୍ତାରେ କିଛି ବର୍ଷତଳେ କେହି ଏକୁଟିଆ ଯିବା ଆସିବା କରୁନଥିଲେ । ଦିନରେ କୁଆଡେ ବାଘ ବାହାରୁ ଥିଲା । ମୁଁ ଫେରିଲା ବେଳକୁ ପଶ୍ଚିମାକାଶରେ ସୂର୍ଯ୍ୟ ବୁଡି ସାରିଲେଣି ଆକାଶରେ ଲାଲିମା ତଥାପି ରହିଛି । ମୁଁ କଥା ଛଳରେ କହିଥିଲି ଯେ ଏଇଠି ବାମପଟ ପଡିଆରେ ଟ୍ରେନିଂ ସେଣ୍ଟର ପ୍ରତିଷ୍ଠା କଲେ କେମିତି ହୁଅନ୍ତା । କାଶୀପୁର ବେଶୀ ଦୂର ନୁହେଁ । କୁମ୍ଭାରଶୀଳା ଗାଁ ମଧ ନିକଟରେ । ପଡିଆ ସେପାଖେ ଚରିସ୍ରୋତା ଝରଣାଟିଏ । କୁମ୍ଭାରଶୀଳାକୁ ପହଞ୍ଚିବାକୁ ହେଲେ ଗୋଟିଏ ବଡ ନାଳ ମଧ ଅତିକ୍ରମ କରିବାକୁ ହୁଏ । ପୂର୍ବରେ କାଶୀପୁର ପହଞ୍ଚିବା ଆଗରୁ ବଡ ପିଜୁଳି ବଗିଚାଟିଏ । ଉଦ୍ୟାନ ବିଭାଗ କେତେ ବର୍ଷ ତଳେ ଗଛ ସବୁ ଲଗାଇଥିଲେ । ତାକୁ ଛାଡି ମୃତ୍ତିକା ସଂରକ୍ଷଣ ବିଭାଗର ପ୍ରଦର୍ଶନ କେନ୍ଦ୍ର । ତା'ପାଖକୁ ଲାଗି ଚମ୍ପା ଗଛର ଅରଣ୍ୟ ଓ ତା'ଭିତରେ ପ୍ରସିଦ୍ଧ ଶିବ ମନ୍ଦିର । ମୁଁ ଏହାର ଅବସ୍ଥିତି ଦେଖି ଟିକିଏ ଖୁସି ହୋଇଯାଇଥିଲି ।

ତା'ପରଦିନ ସକାଳୁ ମୋର ସହକର୍ମୀମାନଙ୍କୁ ଧରି ସେ ପଡିଆ ଅଞ୍ଚଳକୁ ବୁଲିବାକୁ ଯାଇଥିଲି । ଚାରୋଟି ଅଙ୍କାବଙ୍କା ବୁଢ଼ା ଶାଳଗଛ ଓ ଗୋଟିଏ ବାହାଡା ଗଛ ଛଡା ସେଠାରେ କିଛି ଗଛଲତା, ବଣବୁଦା ନାହିଁ । ପଡିଆଟି ଗଡାଣିଆ । ଦୂରରେ ଉଚ୍ଚଜାଗାରେ କଳା ପଥର ସବୁ ଗମ୍ବୁଜ ଭଳି ବାହାରିଛି ଓ ତା ଭିତରେ ଗୋଟିଏ ଶିମୂଳି ଗଛ । ଆମକୁ ସହାୟତା କରୁଥିବା କୁମ୍ଭାରମାନେ କହିଲେ, ତାଙ୍କ ବାପ ଅଜା ଅମଳରୁ ଏହା ବିସ୍ତୀର୍ଣ୍ଣ ଶାଳ ଜଙ୍ଗଲ ଥିଲା । ବାଘଭାଲୁ ହରିଣ ସମ୍ବର ବିଚରଣ କରୁଥିଲେ । କୁମ୍ଭାର ଭବାନୀପାଟଣାରୁ ଆସି ବସତି ସ୍ଥାପନ କରିଥିଲେ । ପାଖରେ ପରଜାଶୀଳା ଗାଁ- ଝୋଡିଆ ପରଜା ମାନଙ୍କର । କୁମ୍ଭାରମାନେ ଓ ପରଜାମାନେ ଶାଳବଣକୁ ସଫା କରି ଜମି କରିଲେ । ମକା, ମାଣ୍ଡିଆ, ଅଳସୀ ଓ ଉଚ୍ଚାଧାନ ଫସଲ କିଛିବର୍ଷ ଭଲହେଲା ଓ ତା'ପରେ ଆଜିକାଲି ସେଠାରେ ପ୍ରାୟ

କିଛି ଚାଷ ହେଉନାହିଁ । ଆଖପାଖ ଗାଁର ଏ ବିସ୍ତୀର୍ଣ୍ଣ ପଡିଆକୁ କୁହନ୍ତି ଲୁଣବନ୍ଧ ଭଟା । ଲୁଣିଆ ଜାଗାରେ ଯେମିତି କିଛି ଚାଷ ହୁଏ ନାହିଁ, ଏଠାରେ ମଧ ଅବସ୍ଥା ସେଇଆ । ରେଭେନ୍ୟୁ ରେକର୍ଡରେ ମଧ ଏ ଇଲାକାକୁ ଲୁଣବନ୍ଧ ଭଟା ବୋଲି କୁହାଯାଏ । ଏବେ କୁମ୍ଭାରମାନେ ଜମି ଦେବେ କି ନାହିଁ କଥା ପଡିଥିଲା । ବ୍ୟାଙ୍କ ମ୍ୟାନେଜର ସେମାନଙ୍କୁ ବୁଝାଇ ଦେଇଥିଲେ ଆମର କାର୍ଯ୍ୟକ୍ରମ ବିଷୟରେ । ଲୁଣବନ୍ଧ ଭଟାର ଅଧିକାଂଶ ଜମି ପୃଷ୍ଟିନାମରେ ଜଣେ ସାହୁକାରକୁ ବନ୍ଧା ଦିଆଯାଇଥିଲା କି ବିକ୍ରି କରାଯାଇଥିଲା । ଅଳ୍ପକିଛି ଯାହା ବାକି ଥିଲା ତାକୁ କୁମ୍ଭାରମାନେ ବିକ୍ରୟ କରିବାକୁ ସ୍ୱତଃ ଆଗେଇ ଆସିଥିଲେ । ଏକର ପ୍ରତି ଦରଥିଲା ମାତ୍ର ୩୦୦ଟଙ୍କା । କାଶୀପୁରରେ ଜମିର ମୂଲ୍ୟ କ'ଣ ଥିଲା ଜଣେ ସହଜରେ ବୁଝି ପାରିବ । ମୁଁ ସମ୍ବେଦନଶୀଳତାର ସହ ଏକର ପିଛା ୫୦୦ଟଙ୍କା ଦେଇଥିଲି । ଅନେକ ଜମି ବିକ୍ରୟ କରିବାକୁ ଆମ ପାଖରେ ଧାଡି ବାନ୍ଧି ଥିଲେ । ଆମର କାର୍ଯ୍ୟକ୍ରମ କେବଳ ପାଞ୍ଚବର୍ଷ ପାଇଁ ସୀମିତ ଥିବାରୁ ଆମେ ମାତ୍ର ସାଢେ ସାତ ଏକର ଜମି କିଣିଲୁ । ଚାହିଁଥିଲେ ଶହେଏକର ଭଟା ଜମି ସହଜରେ ଓ ସୁଲଭ ମୂଲ୍ୟରେ କିଣାଯାଇ ପାରିଥାଆନ୍ତା । ସେତେବେଳେର ମାନସିକତା ଅନ୍ୟ କିଛି ଥିଲା । ଆମେ ଦୀର୍ଘ ଦିନ ପାଇଁ ପୁଞ୍ଜିନିବେଶ କରିବାକୁ ଚାହୁଁ ନଥିଲୁ ।

ଲୁଣବନ୍ଧ ଭଟାରେ ଛୋଟ କୁଡିଆଟିଏ ତିଆରି କରାଗଲା । ପାଖରେ ଗୋଟିଏ ବାହାଡା ଗଛ ଘାସ ସଫା କରାଗଲା । ଆମର ଆଦିବାସୀ ଯୁବକକର୍ମୀମାନେ ବିନା ଦ୍ୱିଧାରେ ରାଜି ହୋଇଗଲେ ସେଠାରେ ରହିବାକୁ । ସକାଳୁ ଆମେ ସେଇଠି ଦରି ପକାଇ ବସୁ, ଆଲୋଚନା ଆରମ୍ଭ ହୁଏ ଓ ସନ୍ଧ୍ୟା ପର୍ଯ୍ୟନ୍ତ ତାହା ସରେ ନାହିଁ । ରୋଷେଇ ମଧ ସେଠାରେ ହୁଏ ମଧ୍ୟାହ୍ନ ଭୋଜନ ପାଇଁ । ବୁଧବାର ହାଟ ଦିନ ସେବାଟେ ଅନେକ ଲୋକ ଯାଆନ୍ତି ଓ କୌତୂହଳ ବଶତଃ ଆମ ପାଖକୁ ଆସନ୍ତି ଓ ସୁଖଦୁଃଖ ହୁଅନ୍ତି । କେତେ ଭାବୁଥିଲେ ଯେ, ଆମେ ମୃତ୍ତିକା ସଂରକ୍ଷଣ ବା ଉଦ୍ୟାନ ବିଭାଗର କ୍ୟାମ୍ପ ଖୋଲିଛୁ । ଜମିରେ କାଲେ ଗଛ ଲଗାଇ ଦିଆଯିବ, ଲୋକଙ୍କର ଭୟ ଅନେକ । ଆଉ କିଏ କହୁଥିଲା ଯେ ଆମେ ଗୋଟାଏ ସର୍ଭେଦଳ । କିଛି ଦିନ ପାଇଁ ଏଠାରେ କ୍ୟାମ୍ପ କରିଛୁ । କିନ୍ତୁ ଆଖପାଖ ଗାଁ ଗୁଡିକର ଲୋକେ ଧୀରେ ଧୀରେ ଆମକୁ ଚିହ୍ନି ଗଲେ ଓ ସେମାନଙ୍କ ଗାଁ ବୁଲିଆସିବା ପାଇଁ ନିମନ୍ତ୍ରଣ କଲେ । ଗାଁ ଗୁଡିକ ହେଲା ପରଜାଶୀଳା, ରତାପଦା, ପୋଡବନ୍ଧ, କଟାଲୀ, କଳାକାନୀ, ସିରିଗୁଡା, ରେଙ୍ଗା ଓ ମାଇକଞ୍ଚ ଆଦି । ଆମେ ସବୁ ଉତ୍ସାହର ସହ ସେମାନଙ୍କ ସବୁ ନିମନ୍ତ୍ରଣ ରକ୍ଷା କରୁଥିଲୁ । ଲୁଣବନ୍ଧ ଭଟାରେ ଆମକୁ ପାଣି ବ୍ୟବସ୍ଥା କରିବାକୁ ହେବ । ଟ୍ରେନିଂ ସେଣ୍ଟର ପାଇଁ ଘରଟିଏ ମଧ ତିଆରି କରିବାକୁ ହେବ । ରତାପଦା ଗାଁର ଲୋକମାନେ ଗୋଟାଏ ଉଇହୁଙ୍କା ଦେଖାଇ କହିଲେ, ଏଇଠି ଖୋଳିଲେ ପାଣି ବାହାରିବ । କୁମ୍ଭାରଶୀଳାର ଲୋକା ହରିଜନ ଆସି କହିଲା- ତାକୁ ଆଡ୍‌ଭାନ୍‌ସ ଦେଲେ ସେ ଇଟା ତିଆରି କରି ଯୋଗାଇ ଦେବ । କାଠ କାଟି ଇଟା ପୋଡିଲେ ଫରେଷ୍ଟର କିଛି କହିବେ ନାହିଁ । ଆମେ ନିଷ୍ପତ୍ତି କରିଥିଲୁ ଘଳ ଘରଟିଏ କରିବୁ । ଜଙ୍ଗଲରୁ ମିଳିଥିବା ପିରି ଛପର ହେବ । ରାୟଗଡା ଡି.ଏଫ୍.ଓଙ୍କୁ ଦରଖାସ୍ତ କରିଥିଲୁ

ବାଉଁଶ ଓ କାଠ ପାଇଁ । ସେ ମୋତେ ରେଭେନ୍‌ସା କଲେଜରୁ ଚିହ୍ନିଥିଲେ ଓ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ । ଦୁଇମାସ ଭିତରେ ଆମର କେଇବଖରା ଘର ଓ ଟ୍ରେନିଂ ହଲ ତିଆରି ହୋଇଗଲା । ମାଟି କାଦୁଅର ଘର । ତଥାପି ଖୁବ୍ ଆପଣାର ମନେ ହେଉଥିଲା । ଆମର ରୋଷେଇର ଦାୟିତ୍ୱରେ ଥିଲେ ଦୀନୁ ଓ ତା ସ୍ତ୍ରୀ ଅଲମାଈ । ମୋ ଜୀବନରେ ଅଲମାଈ ଭଳି ସଚ୍ଚୋଟ ଓ ନିଷ୍କପଟ ମହିଳା ମୁଁ ଆଉ କେବେ ଦେଖି ନାହିଁ । 'ସେ ପାଣି ଆଣିବ, ରୋଷେଇ କରିବ, ସମସ୍ତଙ୍କୁ ଖାଇବାକୁ ଦେବ । ପ୍ରତିଦିନ କାଶୀପୁର ହାଟପଦାରେ ଥିବା ତାର ବସ୍ତିରୁ ସେ ୩କିଲୋମିଟର ଚାଲି ଚାଲି ଆସେ ଓ ସନ୍ଧ୍ୟାରେ ଫେରିଯାଏ । ଆମେ ସମସ୍ତେ ସ୍ଥିର କରିଲୁ ଯେ ଦୀନୁ ଓ ଅଲମାଈ ଆମ ପରିବାରର ଏକ ମୁଖ୍ୟ ଅଂଶ ହେବେ । ସେମାନଙ୍କୁ ରହିବା ପାଇଁ ମଧ୍ୟ ବ୍ୟବସ୍ଥା କରିବାକୁ ହେବ । ସେମାନେ କାଶୀପୁରରୁ ପ୍ରତିଦିନ ଯିବା ଆସିବା ନକରି ଆମ ସହ ରହିବାକୁ ହଁ ଭରିଥିଲେ ।

ଲୁଣବନ୍ଧ ଭଟାରେ ମୋତେ ଭଲ ଲାଗୁଥିଲା ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ । ସନ୍ଧ୍ୟା ନଇଁ ଆସିଲେ ଶାଶୁବହୂମାଳି ସେ ପାଖରୁ ଜହ୍ନ ଉଠେ ଓ ସାରା ଉପତ୍ୟକାଟି ଆଲୋକିତ ହୋଇଯାଏ । ମୋତେ ଲାଗେ ରାତ୍ରି ଯେମିତି ଚଳଚଞ୍ଚଳ ହେଉଛି । ବିଲୁଆ ହୁକେ ହୋ କରେ ଆମ କ୍ୟାମ୍ପ ପାଖରେ । ରାତିରେ ଭାଲୁ ଉଇହୁଙ୍କା ଖୋଳିବାକୁ ଆସେ । କଲରାପତିରିଆ ବାଘ ମଧ୍ୟ ଆସେ କୁକୁର ସନ୍ଧାନରେ । ସକାଳରୁ ସବୁ ପ୍ରକାରର ଜୀବଜନ୍ତୁଙ୍କର ପାଦଚିହ୍ନ ଓ ଝାଡା ଫେରିବା ସଙ୍କେତ ଆମ କୁଡିଆ ପାଖରେ ଦେଖିବାକୁ ମିଳେ । ରାତି ସାରା ଲଣ୍ଠନ ଆଲୁଅ ଜଳୁଥାଏ । କୁଡିଆ ପାଖେ ନିଆଁ ମଧ୍ୟ ଜଳା ହୁଏ । ମଧ୍ୟ ରାତ୍ର ପର୍ଯ୍ୟନ୍ତ ଗୀତ ନାଚ ଚାଲେ । ମୁଁ କିନ୍ତୁ ଅନ୍ୟ ଏକ କଳ୍ପନା ରାଜ୍ୟରେ ବିଚରଣ କରୁଥାଏ ରାତିସାରା ।



## ୧୦

ଧାରା ଶ୍ରାବଣର ସାହିତ୍ୟିକ ଓ କାବ୍ୟିକ ଅର୍ଥ ବ୍ୟତିରେକ ଯେ ଅନ୍ୟ କିଛି ଅର୍ଥ ଅଛି ତାହା ବୁଝିବାକୁ ଇଚ୍ଛା ହେଲେ ବର୍ଷାଦିନରେ କାଶୀପୁରରେ ରହିବାକୁ ହେବ । ଦିନରାତି ଅବିରତ ବର୍ଷା । ସୂର୍ଯ୍ୟକିରଣ ଘନବାଦଲ ଅତିକ୍ରମ କରି ପାରେନାହିଁ । ବର୍ଷା ଯୋଗୁଁ ଚତୁଃପାର୍ଶ୍ୱ ଓଦାଳିଆ । ନଦୀ, ନାଳ, ଝରଣା ଜଳରେ ଭରି ଯାଏ । ଆଦିବାସୀମାନେ ଘରୁ ବାହାରି ପାରନ୍ତି ନାହିଁ । ଘର ଭିତରେ ନିଆଁଜାଳି ଉଷୁମ କରୁଥାଆନ୍ତି ନିଜକୁ । ଘରିଆଡେ ଅନ୍ଧାରୁଆ । ଭାବନା ସବୁ ଅପ୍ରକାଶନୀୟ ନୈରାଶ୍ୟ ଓ ଦୁଃଖରେ ପରିପୂର୍ଣ୍ଣ । ଘରେ ଚୁଲି ଜଳେ ନାହିଁ ଅନେକଙ୍କର । କାମଧନ୍ଦା ବି ମିଳେ ନାହିଁ । ସାହୁକାର ପାଖକୁ ଗଲେ ସେ ଫେରାଇ ଦେଇ କହେ ଆସନ୍ତା ସପ୍ତାହରେ ଆସିବାକୁ । କନ୍ଦା, ଛତୁ, ବାଉଁଶ କରଡି ଆବଶ୍ୟକ ପରିମାଣର ମିଳେ ନାହିଁ । ନାଳରୁ କଙ୍କଡା, ଶାମୁକା ବା ଛୋଟମାଛ ଧରିବା ମଧ୍ୟ ସମ୍ଭବ ହୁଏନାହିଁ । ଅତିବେଶୀରେ କଖାରୁ ପତ୍ର କେବେ କେମିତି ମିଳିଯାଏ । ବର୍ଷାରେ ଭିଜିଭିଜି ପିଲାମାନେ ବଣରୁ ଶାଗ ପତ୍ର ସଂଗ୍ରହ କରନ୍ତି । ନାଳପାଣି ଗୋଳିଆ ଓ ପିଇବା ପାଇଁ ଅନୁପଯୁକ୍ତ । ଗାଁ ଭିତରକୁ ପଶିହେବ ନାହିଁ । ଦାଣ୍ଡସାରା ଗାଈ ଗୋରୁ ଘୁଷୁରିଙ୍କ ମଳ ମୂତ୍ର । ଦୁର୍ଗନ୍ଧରେ ନାକ ଫାଟିଯିବ । ଘର ଭିତର ସବୁ ଅସନା । ରୋଗ ବେମାର ମାଡି ଆସେ । ଅଚାନକ କେଉଁ ଦୂର ଗାଁରେ କିଛି ଲୋକ ମରି ଯାଇଛନ୍ତି ବୋଲି ଖବର ଆସେ । ଆଉ କେତେ ଗାଁରୁ ମରିବା ଖବର ମଧ୍ୟ କାଶୀପୁରକୁ ପହଞ୍ଚେ ନାହିଁ । ମୋତେ ସ୍ଥାନୀୟ ଲୋକମାନେ ଓ ସରକାରୀ କର୍ମଚାରୀମାନେ ସୂଚନା ଦେଇଥିଲେ ଯେ ବର୍ଷାଦିନେ ଲୋକ ମରିବା କିଛି ନୂଆ କଥା ନୁହେଁ । ଗାଁ ମାନଙ୍କରେ ଲୋକମାନଙ୍କର ସ୍ୱାସ୍ଥ୍ୟ ଓ ପରିମଳ ସଚେତନତା ଏତେ କମ୍ ଯେ ଜଣକୁ ରୋଗ ଧରିଲେ ଗାଁ ସାରା ସମସ୍ତଙ୍କୁ ଡେଇଁବ । ପଚା ସଢ଼ା ଖାଦ୍ୟ ଖାଇବେ । ମାଣ୍ଡିଆ ଗୁଡିଆରି, ଲନ୍ଦା ବା ମଦ ପିଇବେ ଯାହା ବିଷାକ୍ତ ହୋଇଯାଏ ବର୍ଷାଦିନେ । ଆମ୍ବ ଟାକୁଆ ଯାଉ ଖାଇବେ ଯାହା ପିମ୍ପି ମାରିଥିବ । ଦୂଷିତ ପାଣି ପିଇବେ ଝରଣାରୁ । ଘୁଷୁରି, ଛେଳି, ଗାଈ ଘର ମୁହଁରେ ବାନ୍ଧିବେ । ଡାକ୍ତରଙ୍କୁ ଖବର ଦେବେ ନାହିଁ କି ଡାକ୍ତରଖାନା ଆସିବେ ନାହିଁ । ସ୍ୱାସ୍ଥ୍ୟ କର୍ମୀମାନେ ଔଷଧ ଦେଲେ ତାହା ଖାଇବେ ନାହିଁ । ଅନ୍ୟପକ୍ଷରେ ଦିସାରୀ, ବେଜଣୀର ସହାୟତା ନେଇ ପୂଜାପାଠ କରିବେ । କୁକୁଡା କି ଛେଳି ବଳି ଦେବେ ନହେଲେ ଦେଶୀ ଚେରମୂଳୀ ଔଷଧ ଖାଇବେ । ପଚାରିଲେ କହିବେ ଡାକ୍ତରୀ ଔଷଧ ପାଇଁ ପଇସା କେଉଁଠୁ ଆସିବ ? ଡାକ୍ତରଖାନାକୁ ଗଲେ କର୍ମଚାରୀମାନେ ପଇସା ବି ମାଗିବେ । ଏଇସବୁ ଭୟ ଓ ଭ୍ରମଧାରଣା କେବେ ଦୂରହେବ ଭାବି ହୁଏ ନାହିଁ । କିନ୍ତୁ କାଶୀପୁରର ଡାକ୍ତରଖାନା ଡିସ୍ପେନ୍‌ସାରି କାହା ପାଇଁ ?

ବର୍ଷା ମାସ ଗୁଡିକରେ ମୁଁ କିନ୍ତୁ ଅରନେକ ବିମର୍ଷ ହୋଇଯାଏ । ପାହାଡର ମଧ୍ୟାହ୍ନ ଉପରେ ବାଦଲର ଆସ୍ତରଣ । ଲଣ୍ଡା ପାହାଡରେ ବି ସବୁଜିମା । ସବୁ ଏକ ଅଭିନବ ଦୃଶ୍ୟପଟ । କ୍ଷେତରେ ମକା, ମାଣ୍ଡିଆ, ଧାନ, ଅଳସୀ, କାନ୍ଦୁଲ, କଟିଙ୍ଗ । ପାହାଡ ତଳେ ସମତଳ ଜମି ଓ ପାହାଡ ଉପରେ ପୋଡୁ ଚାଷ । କିନ୍ତୁ ସବୁ ଆଶାର ସବୁଜ ସଙ୍କେତ । ଏଇଥିପାଇଁ ସମ୍ଭବତଃ ବର୍ଷା ମୋତେ ଭଲ ଲାଗେ । ମୁଁ କେବେ କେମିତି ଏକୁଟିଆ ବାହାରି ପଡେ । ଗାଁ ମାନଙ୍କରେ ଲୋକେ କେମିତି ରହୁଛନ୍ତି ଓ କ'ଣ ଭାବୁଛନ୍ତି ଏ ଦୁର୍ଦ୍ଦିନରେ ? ଆଦିବାସୀ ମାଆମାନେ କିପରି ସମୟ କାଟୁଛନ୍ତି ? ଗାଁର ପିଲାଛୁଆ ଘର ଭିତରେ କେମିତି ନିଜକୁ ନିଷ୍କ୍ରିୟ କରି ଦେଇଥାଆନ୍ତି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ମୋର ମନେହୁଏ ପେଟରେ ଭୋକ ଥିଲେ ବାହାର ଦୁନିଆଁରେ କ'ଣ ହେଉଛି ଜାଣିବାକୁ ଇଛା ହୁଏ ନାହିଁ । ସବୁ ଚିନ୍ତା ସେଇ ଗୋଟିଏ କଥା ଉପରେ କେନ୍ଦ୍ରୀଭୂତ ହୋଇଥାଏ । ଆଜି ଦିନରେ କ'ଣ ରୋଷେଇ ହେବ ଓ ପିଲାଛୁଆ କ'ଣ ଖାଇବେ ?

ଆଉ ଆସନ୍ତାକାଲି କଥା କିଏ ପଚାରୁଛି ? ଗାଁରେ କୌଣସି ସରକାରୀ କାର୍ଯ୍ୟକ୍ରମ ବର୍ଷାଦିନେ ଚାଲେ ନାହିଁ । ଶିକ୍ଷକ ସ୍କୁଲକୁ ଆସନ୍ତି ନାହିଁ । କେୟାର ଖାଦ୍ୟ କାଶୀପୁରଠାରେ ବିକ୍ରୟ ହୋଇଯାଏ । ପିଡିଏସ୍ ଚାଉଳ ଯେଉଁ ଟ୍ରକ୍ କାଶୀପୁର ଆଣେ ତାହା ସେଇ ଟ୍ରକରେ ରାୟଗଡ଼ା ଫେରିଯାଇ କଳା ବଜାରରେ ବିକ୍ରୟ ହୁଏ । ସ୍ୱାସ୍ଥ୍ୟ କର୍ମୀମାନେ କେବେ କମିତି ଗାଁ ଗଣ୍ଡାବୁଲି ଔଷଧ ବାଣ୍ଟି ଥାଆନ୍ତି । ଔଷଧ ବାଣ୍ଟିବା ଅପେକ୍ଷା ପରିବାର ନିୟନ୍ତ୍ରଣ ଯୋଜନାରେ ପୁରୁଷ ଲୋକେ କିପରି ଅସ୍ତ୍ରୋପଚାର ପାଇଁ ରାଜି ହେବେ ତାହା ବୁଝାଇବାରେ ଲାଗନ୍ତି । ପରିବାର ନିୟୋଜନ ପାଇଁ ଅସ୍ତ୍ରୋପଚାର କଲେ ପାଞ୍ଚଶହ ଟଙ୍କା ମିଳିବ ଓ ସ୍ୱାସ୍ଥ୍ୟ କର୍ମୀ ମଧ୍ୟ ତା'ର ପାଉଣା ପାଇବ । କାଶୀପୁରରେ ପରିବାର ନିୟୋଜନ କାର୍ଯ୍ୟକ୍ରମ ଏଇଥିପାଇଁ ସଫଳ ହେବାରେ ରେକର୍ଡ କରିଛି । ପେଟ ଭୋକରେ କେତୋଟି ଟଙ୍କା ପାଇଁ ଆଦିବାସୀ ପୁରୁଷ ସହଜରେ ଫ୍ୟାମିଲି ପ୍ଲାନିଙ୍ଗ କ୍ୟାମ୍ପରେ ପହଞ୍ଚି ଯାଉଛି । ୧୯୮୧ ମସିହା ଜନଗଣନାରେ ଓଡିଶାର ଆଦିବାସୀମାନଙ୍କର ସଂଖ୍ୟା କ୍ରମଶଃ ହ୍ରାସ ପାଉଥିବା ଜଣା ପଡିବା ପରେ ବିଭିନ୍ନ ମହଲରେ ଉତ୍ତେଜନା ପ୍ରକାଶ ପାଇଛି । ଶିଶୁମୃତ୍ୟୁ ହେଉ ଅଥବା ପରିବାର ନିୟୋଜନ କାର୍ଯ୍ୟକ୍ରମର ସଫଳତା ହେଉ, ଆଦିବାସୀ ଜନସଂଖ୍ୟା ହ୍ରାସ ପାଇବାରେ ଲାଗିଛି । ୧୯୭୧ ମସିହାରେ କାଶୀପୁର ଆଦିବାସୀ ଜନସଂଖ୍ୟା ପ୍ରାୟ ୯୦ ପ୍ରତିଶତ ଥିଲା । ୧୯୮୧ ମସିହାରେ ତାହା ଶତକଡ଼ା ୮୦ଭାଗରେ ପହଞ୍ଚିଛି । ଖାଲି କାଶୀପୁର କେବଳ ନୁହେଁ, ସାରା କୋରାପୁଟର ସବୁ ଆଦିବାସୀମାନଙ୍କର ସ୍ଥିତି ଏଇଆ ବୋଲି ଜନଗଣନାରୁ ଜଣା ପଡୁଛି । କାଶୀପୁରର ସବୁ ଗାଁରୁ ବର୍ଷାଦିନେ ଜ୍ୱର ବେମାରୀ, ଝାଡାବାନ୍ତି ଜନିତ ମୃତ୍ୟୁର ଖବର କେବଳ ମିଳୁଛି । ଗାଁ ଭିତରେ ପଶିଗଲେ କାନ୍ଦ ବୋବାଳି ଶୁଣିବା ଛଡା ଆଉ କିଛି ଶୁଣିବାକୁ ମିଳୁନାହିଁ । ଆମେ ସବୁ ଦୂର ଦୂର ଗାଁମାନଙ୍କରୁ ରୋଗବେମାରୀର ଖବର ଆଣି ପହଞ୍ଚେଇଥାଉ କାଶୀପୁରରେ ଓ ସୂଚନା ଦେଇଥାଉ ଡାକ୍ତରଙ୍କୁ ବା ବି.ଡି.ଓଙ୍କୁ । କେଉଁଠାରେ ଔଷଧ ଓ ଖାଦ୍ୟଦ୍ରବ୍ୟ ପହଞ୍ଚିଲା କି ନାହିଁ ତାହାର ମଧ୍ୟ ହିସାବରଖୁ । ଗାଁରେ ଏ ଅବସ୍ଥାରେ କିଛି ମିଟିଂ କରି ହୁଏ ନାହିଁ । ଅନ୍ୟ କିଛି କଥାବାର୍ତ୍ତା ମଧ୍ୟ କରି

ହୁଏ ନାହିଁ । ମିଛ ସମବେଦନା ଜଣାଇବା ଛଡା ଆଉ କ'ଣ ସମ୍ଭବ ସେ ସମୟରେ । ଗଛପତ୍ର ଲଗାଇଲେ କିଛି ଶ୍ରମ ମିଳିଯିବ । ମୃତ୍ତିକା ସଂରକ୍ଷଣ ବିଭାଗ, ଉଦ୍ୟାନ ବିଭାଗ, ବନ ବିଭାଗମାନେ ଲଣ୍ଡା ପାହାଡ ଓ କୃଷି ଅନୁପଯୋଗୀ ଜମିରେ ଚେଷ୍ଟା କରନ୍ତି କିଛି କିଛି ବୃକ୍ଷରୋପଣ ପାଇଁ । କିନ୍ତୁ ଆଦିବାସୀମାନଙ୍କ ବିନା ସମ୍ମତିରେ ଏହା କରାଯାଉଥିବାରୁ ଗୋଟିଏ ହେଲେ ଗଛ ବଞ୍ଚେ ନାହିଁ । ଆଦିବାସୀ କେବଳ କାଟେ ନାହିଁ ଆମ୍ବ, ପଣସ, ତେନ୍ତୁଳି ଆଦି ଗଛକୁ ଯେଉଁ ଗୁଡିକ ତାକୁ ଖାଦ୍ୟ ବା ଆୟ ଦିଅନ୍ତି । କିନ୍ତୁ ସରକାରୀ ବିଭାଗମାନେ ଇଯୁକାଲିପ୍‌ଟସ, ଆକାଶିଆ, ଋକୁଣ୍ଡା ଆଦି ଗଛ ଲଗାଇବାରେ ଗୁରୁତ୍ୱ ଦେଇଥାଆନ୍ତି । ଏହା ଆଦିବାସୀର କୌଣସି କାମରେ ଆସୁନଥିବାରୁ ସେ ସୁଯୋଗ ପାଇଲା ମାତ୍ରକେ ତାହା କାଟି ଦିଏ । ପୋଡୁ ଋଷରେ ତାହାର ମନ । ଏସବୁ ଗଛର କି ଆବଶ୍ୟକତା ଅଛି ? ପାହାଡ ସବୁ ଲଣ୍ଡା ହେବାରେ ଲାଗିଛି ଅଥଚ ସରକାରୀ ବୃକ୍ଷରୋପଣ ଓ ବନୀକରଣ କାର୍ଯ୍ୟକ୍ରମ ସଫଳ ହେଉନାହିଁ । ଏ ବିଷୟରେ ମୁଁ ବାରମ୍ବାର ପ୍ରଶ୍ନ କରୁଥିଲି ଅଧିକାରୀମାନଙ୍କୁ । ଏ ସବୁ କାର୍ଯ୍ୟକ୍ରମ ପଛରେ କ'ଣ ନୀତି ନିୟମ ଅଛି ତାହା ମୁଁ ପଚାରି ବୁଝିଥିଲି । ବ୍ୟାପକ ବୃକ୍ଷରୋପଣ ହେବା ଓ ଆଦିବାସୀମାନେ ତାହା କାଟି ସଫାକରିବା ଏକ ଚିରାଚରିତ ଅଭ୍ୟାସ ବୋଲି ପ୍ରମାଣିତ ହୋଇଛି । ଆଦିବାସୀ ପୋଡୁ ଋଷ କରିବା ଏକ ପରମ୍ପରା ବୋଲି ଧାରଣା ସୃଷ୍ଟି କରାଯାଇଛି । ଆଦିବାସୀ ଫଳଦାର ଗଛ କାଟୁ ନାହିଁ ଅଥଚ ସରକାରୀ ସ୍ତରରେ ବୃକ୍ଷରୋପଣ ଓ ବନୀକରଣ କାର୍ଯ୍ୟକ୍ରମକୁ ଭଣ୍ଡୁର କରୁଛି ଏହାର ଅସଲ କାରଣ ମୁଁ ବାରମ୍ବାର ଜାଣିବାକୁ ଋହୁଁଥିଲି ।



# ୧୧

ଆଦିବାସୀର ଜମି ସବୁକିଛି । ତା'ପରେ ଜଙ୍ଗଲ ଓ ତା'ପରେ ପାଣି । ଜଳ, ଜମି, ଜଙ୍ଗଲ ଆଦିବାସୀକୁ ବୁଝିବାକୁ ହେଲେ ଏସବୁରୁ ପଛରେ ଥିବା ସାମାଜିକ ଆର୍ଥିକ ଓ ରାଜନୈତିକ କାରଣ ସବୁ ବୁଝିବାକୁ ହେବ । କାଶୀପୁରରେ ବାପ ଦାଦି ଅମଳରୁ ଆଦିବାସୀ ତିଆରି କରିଥିବା ଅଧିକାଂଶ ଭଲ ଜମି ସାହୁକାର ହାତକୁ ଚାଲିଯାଇଛି ସମୟ କ୍ରମେ ଓ ବିଶେଷ କରି ମହାଜନ କାରବାର ହେତୁ । ଆଦିବାସୀ ମୁଣ୍ଡଝାଳ ତୁଣ୍ଡରେ ମାରି, ଢିପ ଜମି ସମତଳ କରି ଝୋଲା ଜମିରୁ ମାଟି କାଟି ଚାଷ ଜମି ତିଆରି କରିବ ଅଥଚ ସାହୁକାର ତାକୁ ପଟା କରିନେବ ତା' ନାମରେ । ଏ କଥା ଆଦିବାସୀ ଭୁଲି ଯାଇନାହିଁ । ସେଥିପାଇଁ ସେ ପ୍ରତିବର୍ଷ ଜଙ୍ଗଲ ସଫା କରିବ, ଗଛପତ୍ର କାଟି ଜାଳିବ ଓ ପୋଡୁ ଚାଷ କରିବ ଏକଥା କେହି ଅଟକାଇ ପାରିବେ ନାହିଁ । ଜଙ୍ଗଲ ସରିଗଲେ ଯେଉଁଠି ଜଙ୍ଗଲ ଅଛି ସେଇଠି ଯାଇ କାଟିବ । ବର୍ଷାପାଇଁ ତାହାର ଯେତିକ ଖାଦ୍ୟ ଶସ୍ୟ ଦରକାର ତାହା ସେ ଚାଷ କରିବ । ଟଙ୍କା ପଇସା ପାଇଁ ସେ ଚାଷ କରିବ ଅଳସୀ, କାନ୍ଦୁଲ, କଟିଂ, ସୋରିଷ ଆଦି । ଏହାକୁ ହାଟରେ ବିକିଲେଯାଇ ତ ପଇସା । ଏଣୁ ପୋଡୁ ଚାଷର ଗୋଟାଏ ବିଶେଷ ଭାଗ ହେଉଛି ଏଇ ଅର୍ଥକାରୀ ଫସଲ । ହିସାବରୁ ଜଣାଯାଏ ଯେ ୧୯୮୧ ମସିହାରେ କାଶୀପୁରରୁ ପ୍ରାୟ ୩-୪ କୋଟି ଟଙ୍କାର ଅଳସୀ ବିକ୍ରିବଟା ହୋଇଥାଏ । ଆଦିବାସୀଙ୍କ ଠାରୁ ଗାଁ ସାହୁକାର ଠକି ଭଣ୍ଡି ଅଳସୀ ନିଏ । ଓଜନରେ ଠକେ ଓ କମ ଦରରେ କିଣେ । ଗାଁ ସାହୁକାର ଠାରୁ ପଞ୍ଚାୟତର ସାହୁକାର କିଣେ । କାଶୀପୁର, ଗୋରଖପୁରରେ ବଡ ମହାଜନ ଥାଆନ୍ତି । ସେମାନେ ରାୟଗଡ଼ାର ସାହୁକାରଙ୍କୁ ବିକନ୍ତି । ରାୟଗଡ଼ା ସାହୁକାର ବିଶାଖାପାଟଣା ବା ରାୟପୁରର ସାହୁକାରଙ୍କୁ ବିକେ । ଶେଷରେ ଭାରତ ସରକାରଙ୍କ ନାଫେଡ୍ ସଂସ୍ଥା ଅଳସୀ ସବୁ କିଣି ଇୟୁରୋପୀୟ ଦେଶମାନଙ୍କରେ ଉଚ୍ଚ ଦରରେ ବିକ୍ରି କରି ପ୍ରଚୁର ଲାଭ ପାଏ । ଆଦିବାସୀ ବିକୁଥିବା ଅଳସୀର ଦରଠାରୁ ଏ ଦର ପ୍ରାୟ ପାଞ୍ଚଗୁଣା ଅଧିକ ହୋଇଥାଏ । ପୋଡୁଚାଷ ଦ୍ଵାରା ଆଦିବାସୀ ଯେଉଁ ସବୁ ଜନିଷ ଉତ୍ପାଦନ କରୁଥାଏ, ତାହାର ବଜାର ଏଇଭଳି ଶୋଷଣ ଓ ଲୁଣ୍ଠନ ପ୍ରକ୍ରିୟା ସହ ଜଡିତ ହୋଇରହିଥାଏ । ମୁଁ ଭାବୁଥିଲି ଯଦି ଅଳସୀର ବିକାକିଣାରୁ ଲାଭ ଆଦିବାସୀମାନଙ୍କ ପାଖକୁ ଫେରି ଆସୁଥାଆନ୍ତା ତେବେ କାଶୀପୁର ଭଳି ଅବହେଳିତ ଅଞ୍ଚଳର ବିକାଶ ପାଇଁ ଅର୍ଥର ଅଭାବ ରହନ୍ତା ନାହିଁ । କିନ୍ତୁ ଅଳସୀର ବିକାକିଣା ପ୍ରକ୍ରିୟାରେ ସାହୁକାର ଗୋଷ୍ଠୀ ଏତେ ସକ୍ରୀୟ ଯେ ସେମାନଙ୍କୁ କିଏ ନିୟନ୍ତ୍ରଣ କରିବ ? ସରକାରୀ ନୀତି ଆଦିବାସୀମାନଙ୍କ ପ୍ରତି ଏତେ ବିପରୀତଧର୍ମୀ ଯେ ଏହାକୁ କିଏ ବଦଳେଇ ବ ? ମୁଁ ବର୍ଷ ମୁଖର ସନ୍ଧ୍ୟାରେ ଆଦିବାସୀ ଗାଁରେ ଏଇ କଥା ଭାବୁଥାଏ ।

ଆଦିବାସୀ ଜଙ୍ଗଲ କାଟି କାହିଁକି ପୋଡୁଚାଷ କରୁଛି ? ଏ ପ୍ରଶ୍ନ ମୋ ମନଭିତରେ ବାରମ୍ବାର ଉଠୁଥାଏ । ଏ କଥା ସତ ଯେ ସାରା ପୃଥିବୀରେ ସବୁ ଆଦିବାସୀ ଅଞ୍ଚଳରେ ପୋଡୁ ଚାଷ ହେଉଛି । କେଉଁଠି ଏହାକୁ ଝୁମ୍ କହନ୍ତି ତ ଆଉ କେଉଁଠି କହନ୍ତି ସ୍ଲାସ୍ ଏଣ୍ଡ ବର୍ଣ୍ଣ (Slash and Burn) । ଅର୍ଥାତ, ଆଦିବାସୀମାନେ ଜଙ୍ଗଲର ଏକ ଇଲାକାକୁ ଗଛ ଲତା କାଟି ସଫା କରିବେ । ତା'କୁ ପୋଡିବେ ବର୍ଷା ପୂର୍ବରୁ । ସେଥିରେ ତାଙ୍କର ଆବଶ୍ୟକୀୟ ଖାଦ୍ୟ ଦ୍ରବ୍ୟ ପାଇଁ ବିହନ ପୋତିବେ । ଫସଲ କରିବେ ବର୍ଷସାରା । ଚୋର ଡକାୟତଙ୍କ ଭୟ । ବନ୍ୟପ୍ରାଣୀଙ୍କ ଭୟ । କେଉଁଠି ହାତୀ ଆସି ଲାଣିତ କେଉଁଠି ବନ୍ୟ ଘୁଷୁରି । କେଉଁଠି ମାଙ୍କଡ ଆସିଲାଣିତ ଆଉ କେଉଁଠି ଭାଲୁ । କାହାକୁ କେଉଁ ଫସଲ ଭଲ ଲାଗେ । ମଞ୍ଚା କରି ରାତିସାରା ଜାଗିବାକୁ ପଡେ । ହାଡଭଙ୍ଗା ଶୀତ ସମ୍ଭାଳିବାକୁ ହୁଏ । ବାଘ, କଲରା ପତରିଆଙ୍କ କବଳରୁ ନିଜକୁ ବଞ୍ଚାଇବାକୁ ପଡେ । ପୋଡୁ ଚାଷ ଏକ କଠିନ ପରିଶ୍ରମର ପ୍ରତିଫଳନ ଓ ଆଦିବାସୀଙ୍କ ବଞ୍ଚିବାର ସଂଗ୍ରାମର ଏକ ଝଲକ ।

ଜଙ୍ଗଲ କଟିଯାଏ ପୋଡୁଚାଷ ଦ୍ୱାରା । କିନ୍ତୁ ଆଦିବାସୀ ଜାଣିଛି, କେତେ ବର୍ଷରେ ପୁଣି ସେଠାରେ ଜଙ୍ଗଲ ସୃଷ୍ଟି ହୋଇଯିବ । ଏହା ପ୍ରାୟ ବାର ବର୍ଷ ଲାଗିଯାଏ । ପୁଣି ବାରବର୍ଷ ପରେ ସେ ସେଇ ଇଲାକାକୁ ଫେରି ଆସେ ଓ ପୋଡୁ ଚାଷ କରେ । ଏହିପରି ଏକ 'ଚକ୍ର' ହିଁ ଅନୁଭବରୁ ସୃଷ୍ଟି ହୋଇଥାଏ । ଜଙ୍ଗଲ ଓ ପରିବେଶର ସମ୍ପୂର୍ଣ୍ଣ ସୁରକ୍ଷା ହୁଏ । ଆଦିବାସୀ ତାହାର ଖାଦ୍ୟ ନିରାପତ୍ତା ସୁରକ୍ଷା କରେ । କୃଷିର ଯେଉଁ ଜୈବବିବିଧତା ରହିଛି ତାହା ମଧ୍ୟ ଅକ୍ଷୂର୍ଣ୍ଣ ରହେ । ଏହାଦ୍ୱାରା ଆଦିବାସୀ ଏକ ଜଙ୍ଗଲ ଭିତ୍ତିକ ଚାଷ ପ୍ରାୟ କରିଥାଏ । ଏହି ପୋଡୁ ଚାଷ ଉପରେ ମୁଁ ବାରମ୍ବାର ଅଧ୍ୟୟନ କରିବାକୁ ଚାହିଁଥିଲି ଓ ଏହା ଉପରେ ଗବେଷଣା କରିଥିବା ଅଭିଜ୍ଞ ବ୍ୟକ୍ତିଙ୍କ ସହ ମଧ୍ୟ ଆଲୋଚନା କରିଥିଲି । ପୋଡୁ ଚାଷରୁ ଆଦିବାସୀ ଓ ଅଣଆଦିବାସୀ କେମିତି ଲାଭବାନ ହୁଅନ୍ତି ତାହା ମଧ୍ୟ ଅନୁସନ୍ଧାନ କରିଥିଲି । ସାହୁକାରମାନେ ସରିପାଇ- ଲିଲିଗୁମା ଅଞ୍ଚଳରେ ଅଣଆଦିବାସୀଙ୍କୁ ଲଗାଇ ପୁଞ୍ଜିନିବେଶ କରନ୍ତି ପୋଡୁ ଚାଷରେ । ଆଦିବାସୀ ଓ ଅଣଆଦିବାସୀଙ୍କୁ ଲଗାଇ ଜଙ୍ଗଲ ସଫା କରାନ୍ତି । ଫସଲ ଆଦାୟ ହେଲେ ତାହା ରାୟଗଡ଼ାରେ ଚଢ଼ା ଦାମରେ ବିକନ୍ତି ଓ ପ୍ରଚୁର ଲାଭ କମାନ୍ତି ।

ଥରେ ଜଣେ ପଦସ୍ଥ ଅଫିସରଙ୍କ ସହ ସେ ଅଞ୍ଚଳରେ ଗସ୍ତ କଲାବେଳେ ଦେଖିଥିଲି ଜଣେ ଗଉଡ(ଅଣଆଦିବାସୀ) ପ୍ରାୟ ୩୦୦ ଶାଳଗଛ କାଟିଛି ପୋଡୁ ଚାଷ କରିବାକୁ । ପଚାରିବାରୁ ସେ କହିଲା ସେଥିରେ ସେ କାନ୍ଦୁଲ ଲଗାଇ ଦୁଇ ତିନି ହଜାର ଟଙ୍କା ପାଇବ । ଜଙ୍ଗଲ ବିଭାଗର କର୍ମକର୍ତ୍ତାମାନେ କହୁଥିଲେ ତିନିଶହ ଶାଳଗଛର ମୂଲ୍ୟ ପ୍ରାୟ ଦେଢ଼ କୋଟି ଟଙ୍କା ହେବ । ପୋଡୁ ଚାଷର ମଧ୍ୟ ସାମାଜିକ ଦୃଷ୍ଟିକୋଣ ରହିଛି । ପୋଡୁଚାଷ କରିବାକୁ କଠିନ ପରିଶ୍ରମ କରିବାକୁ ପଡେ । ତୀଖ ପାହାଡ ଉପରେ କୋଡି ଧରି କେବଳ ଧାଙ୍ଗଡୀ ଚାଷ କରିବାକୁ ସକ୍ଷମ । ଏଇଥିପାଇଁ କାଶୀପୁରରେ ମୁଁ ଲକ୍ଷ୍ୟ କରିଛି ଯେ ଥିଲାବାଲା ଆଦିବାସୀମାନେ ଏକାଧିକ ବିବାହ କରନ୍ତି ଓ ଦୁଇ ତିନୋଟି ଧାଙ୍ଗଡୀ ଘରକୁ ଆଣନ୍ତି । ଏହାଦ୍ୱାରା ବେଶୀ ପୋଡୁ ଚାଷ ହୋଇପାରେ । ଧାଙ୍ଗଡୀର ମୂଲ୍ୟ ମଧ୍ୟ ସେ କେତେ ପୋଡୁ

ଚାଷ କରିବ ସେଥିରୁ ହିଁ ନିର୍ଦ୍ଧାରିତ ହୋଇଥାଏ । ଧାଙ୍ଗଡୀର ବାପାମାଆ ମଧ୍ୟ ଏଇଭଳି ଝୋଲା ଟଙ୍କା ବା ବ୍ରାଇଡ୍ ପ୍ରାଇସ୍ (Bride Price) ଦାବି କରନ୍ତି । ମୋତେ ଅବାକ୍ ଲାଗୁଥିଲା ଯେ ଧାଙ୍ଗଡୀମାନଙ୍କୁ ଶ୍ରମ ଭିତ୍ତିକ ମୂଲ୍ୟରେ ବିକାକିଣା କରାଯାଏ । ପୋଡୁଚାଷ କରି କରି ଧାଙ୍ଗଡୀମାନେ ଅଳ୍ପ ବୟସରେ ନିଜର ସ୍ୱାସ୍ଥ୍ୟ ଓ ଯୌବନ ହରାଇବସନ୍ତି । ମୁଁ ଲକ୍ଷ୍ୟ କରିଛି ଆଦିବାସୀ ମାଆମାନେ ଖୁବ୍ ବୟସ୍କା ଦେଖାଯାଉଥିବେ ଅଥଚ ସେମାନଙ୍କର ବୟସ ତିରିଶି ଟପି ନଥିବ । ପୋଡୁଚାଷର ଏଇଭଳି କୁପ୍ରଭାବ ରହିଛି । ଆଦିବାସୀ ଜାଣିଛି ସବୁକଥା । ପଚାରିଲେ କହିବ, ମୁଁ ଜାଣି ନାହିଁ ବାବୁ ଯେ, ଜଙ୍ଗଲ କଟିଯିବ ଓ ଆଉ ଫସଲ ପୋଡୁ ଚାଷରେ ହେବ ନାହିଁ କେତେ ବର୍ଷପରେ । କିନ୍ତୁ ଆମେ ଯିବୁ କୁଆଡେ ? ସରକାର ଜମି ଦେବ ତ ? ଆମ ଜମି ଫେରାଇ ଦେବ ତ ? ସାହୁକାର ପାଖରୁ ଜମି, ମୁକୁଳାଇବ କି ? ପୋଡୁ ଚାଷ ଆଦିବାସୀର ଦାରିଦ୍ର୍ୟର କାରଣ କି ବଞ୍ଚିବାର ଏକମାତ୍ର ରାସ୍ତା ଆମେ ସବୁ ବାହାରୁ ଆସି ବୁଝି ପାରୁନଥିଲୁ । କାଶୀପୁରରେ ୧୯୮୧ ମସିହାରେ ମୁଁ ଦୀର୍ଘ ଦିନଧରି ଏ ବିଷୟରେ ତର୍ଜମା କରିଛି ଆଦିବାସୀ ଯୁବକ ବନ୍ଧୁ ଓ ଆମର ଆନିମେଟର ମାନଙ୍କ ସହ । ପୋଡୁ ଚାଷର ବାର ବର୍ଷିଆ ଚକ୍ର କମି କମି ଏବେ ଦୁଇତିନିବର୍ଷରେ ପହଞ୍ଚିଛି । ଏହାଦ୍ୱାରା ମୃତ୍ତିକା କ୍ଷୟ ଏତେବେଶୀ ହେଉଛି ଯେ କିଛି ବର୍ଷପରେ ପୋଡୁ ଜମିରେ ଘାସଟିଏ ବି ଉଠୁ ନାହିଁ । ଫସଲତ ଦୂରର କଥା । କିନ୍ତୁ ପୋଡୁଚାଷର ବିକଳ୍ପ କ'ଣ ତାହା ଜାଣିବାକୁ କିଛି ସମୟ ଧରି ମୁଁ କେତେକ ଗାଁର ବିକାଶର ଇତିହାସ ପୁଙ୍ଖାନୁପୁଙ୍ଖ ଭାବେ ବିଶ୍ଳେଷଣ କରିଛି ।

ଆମର ଆଦିବାସୀ କର୍ମୀମାନେ କହୁଥିଲେ ଯଦି ଗାଁ ଉପରର ପାଣି ଗାଁ ଭିତରକୁ ଅଣାଯାଇ ପାରିବ ଚେକ୍ ଡ୍ୟାମ୍ ବା ମୁଣ୍ଡା ତିଆରି କରି କି କେନାଲ ବା ବାଟିଆ ଖୋଳି, ତେବେ ଅଳ୍ପ କିଛି ଜମି ଯାହା ଅଛି ସେଠାରେ ଦୁଇ ବା ତିନୋଟି ଫସଲ ହୋଇପାରିବ । କେତୋଟି ଗାଁରେ ଏପରି ପାଣି ଆଣି ଚାଷ ବେଶ୍ ହେଉଛି । କାଶୀପୁର ପାଖ ତଳଝିରି ଓ ଉପରଝିରି ଗାଁର ଏହା ସମ୍ଭବ ହୋଇଛି । ଅନେକ ଗାଁରେ ନିଜ ଉଦ୍ୟମରେ ମାଟି ଓ କାଠର ମୁଣ୍ଡା କରି ଓ ଦୀର୍ଘ ଦୁଇ ତିନି କିଲୋମିଟର କେନାଲ ଖୋଳି ପାଣି ଆଣି ଚାଷ କରିବାର ଇତିହାସ ରହିଛି । ଶୀତ ଦିନେ ଏହି ମାଟି ମୁଣ୍ଡା କରାଯାଏ ଓ ବର୍ଷା ଆସିଲା ମାତ୍ରକେ ତାହା ଭାଙ୍ଗିଯାଏ । ଅନେକ ପରିଶ୍ରମ ବୃଥା ହୋଇଯାଏ । ଏଇସବୁ ଗାଁ ମାନଙ୍କୁ ଠାବ କରି ଜଳସେଚନର ଇତିହାସ ଜାଣିବା ଆମ ପାଇଁ ଏକ ଆହ୍ୱାନ ହୋଇ ଯାଇଥିଲା । ଯେଉଁ ସବୁ ଗାଁରେ ସ୍ଥାନୀୟ ଉଦ୍ୟମରେ ଚେକ୍‌ଡ୍ୟାମ ଓ କେନାଲ ତିଆରି କରାଯାଇଥିଲା ଓ ତାହାର ଧ୍ୱଂସାବଶେଷ ଏବେ ମଧ୍ୟ ରହିଛି । ତାହା ଉପରେ ଯଥେଷ୍ଟ ବିବରଣୀ ସଂଗ୍ରହ କରିବା ପାଇଁ ଆମର ନିଷ୍ପତ୍ତି ନିଆଗଲା ।

ଆଦିବାସୀ ପୋଡୁ ଚାଷର ବିକଳ୍ପ ଯେ ଚିନ୍ତା କରିଛି ଏହା ଜାଣିବା ପରେ ଆମେ ସବୁ ଖୁବ୍ ଉଲ୍ଲସିତ ହୋଇଥିଲୁ । ଚଟାଚୁଆଁ, ରେଙ୍ଗଣାସିଲ୍, ଭିତରପଦା, ବାହାରପଦା, ସିପଲପଦର, ଅଣଙ୍ଗାର, ସିନ୍ଦୁରଘାଟି, ତଳପଙ୍ଗା, ମାଳିଗାଁ ଆଦି ସବୁ ଗାଁକୁ ଆମର କର୍ମୀଦଳ ଗଲେ ଓ

ଗ୍ରାମ୍ୟ ସ୍ତରୀୟ ଉଦ୍ୟମରେ ଜଳସେଚନ କପରି ସମ୍ଭବ ହୋଇଥିଲା ତାହାର ଇତିହାସ ସବୁ ସଂଗ୍ରହ କରିଥିଲେ । କାଶୀପୁରର ସବୁଗାଁ ପାଖରେ ଚିରସ୍ରୋତା ଝରଣା ବୋହୁଛି । ସେଗୁଡ଼ିକରୁ ପାଣି ଆଣି ବର୍ଷସାରା ଫସଲ କରିଲେ ଆଦିବାସୀ ଡଙ୍ଗର ପାହାଡରେ ଯେଉଁ ପୋଡୁ ଚାଷ କରୁଛି ତାହା ନିଶ୍ଚିତ କମିଯିବ ଏହା ଆମର ଦୃଢ଼ ବିଶ୍ୱାସ ଥିଲା । ପୋଡୁ ଚାଷ କମିଲେ ଜଙ୍ଗଲର ସୁରକ୍ଷା ହେବ ଓ ଜଙ୍ଗଲ ସୁରକ୍ଷା ହେଲେ ପରିବେଶର ସୁରକ୍ଷା ହେବ । ଏହା କମ୍ କଥା ନୁହେଁ । ଆଦିବାସୀ ଅଞ୍ଚଳର ଅର୍ଥନୀତି ଜଙ୍ଗଲ ଉପରେ ପର୍ଯ୍ୟବସିତ । ସେଠାରେ ସ୍ଥାୟୀ ଚାଷ ହେବା ଦ୍ୱାରା ଯଦିଓ ଏକ ନୂତନ ଅର୍ଥନୈତିକ ଅଧ୍ୟାୟ ଆରମ୍ଭ ହେବ, ଆଦିବାସୀମାନେ ଭୋକିଲା ରହିବେ ନାହିଁ । ବର୍ଷସାରା ଖାଇବାକୁ ପାଇବେ । ୧୯୮୧ ମସିହାର କାଶୀପୁରରେ ଜମି, ଜଳ, ଜଙ୍ଗଲର ସମନ୍ୱୟରେ ଏକ ନୂତନ ବିକାଶ ପ୍ରକ୍ରିୟାର ଆରମ୍ଭ କରିଥିଲୁ ଆମେ ।



# ୧୨

କାଶୀପୁରର ଘରିଶହରୁ ଉର୍ଦ୍ଧ୍ୱ ଗାଆଁକୁ ମୁଁ ଜଣେ ଆବିଷ୍କାରକର ମନ, ହୃଦୟ ଓ ସାହସର ସହିତ ଦେଖୁଥିଲେ ମଧ୍ୟ ବେଳେବେଳେ ସମୟ ଖୁବ୍ ଅତିକ୍ରାନ୍ତ ଲାଗେ । ରାସ୍ତା ପାର୍ଶ୍ୱରେ ଥିବା ଅଳ୍ପ କେତେଗୁଡ଼ିଏ ଗାଆଁକୁ ଛାଡ଼ି ଦେଲେ ଦୂରଦୂରାନ୍ତର ଗାଆଁମାନଙ୍କୁ ପାହାଡ ପର୍ବତ, ନଦୀନାଳ ଅତିକ୍ରମ କରି ପହଞ୍ଚିବା ଖୁବ୍ କଷ୍ଟକର ବ୍ୟାପାର ହୋଇଯାଏ । ଆମର ପ୍ରଥମ ବର୍ଷର ଲକ୍ଷ୍ୟ ଥିଲା କାଶୀପୁର ବ୍ଲକ୍‌ର ସାମାଜିକ, ଆର୍ଥିକ, ରାଜନୈତିକ ଓ ସାଂସ୍କୃତିକ ଅଧ୍ୟୟନ । ଏହାଛଡା ଆମକୁ ଗୋଟାଏ ଟ୍ରେନିଂ ସେଣ୍ଟର ପ୍ରତିଷ୍ଠା କରି ଆଦିବାସୀ ଯୁବକମାନଙ୍କର ପ୍ରଶିକ୍ଷଣ ଶିବିର ଆୟୋଜନ କରିବାକୁ ହେବ ଓ କେତୋଟି ଗାଁରେ କିଛି ଆର୍ଥିକ କାର୍ଯ୍ୟକ୍ରମ ଆରମ୍ଭ କରି ପରୀକ୍ଷା କରିବାକୁ ହେବ ଯେ, ଜନ ସହଭାଗିତାର ଦିଗ ସବୁ କ'ଣ ? କାଶୀପୁରରେ କେଜାଣି କାହିଁକି ମୋର ଏକ ବୌଦ୍ଧିକ ସମସ୍ୟା ସୃଷ୍ଟି ହୋଇଥାଏ । ମୋର ସହକର୍ମୀ ଆଦିବାସୀ ଆନିମେଟର ଶିକ୍ଷା ନିବିଶ ଏବଂ ସର୍ବୋପରି ସରଳ ଆଦିବାସୀ ଗ୍ରାମବାସୀଙ୍କ ସହ ମନଖୋଲି ସବୁକଥା କହିହୁଏ ନାହିଁ । ଆଲୋଚନା ଓ ଯୁକ୍ତିତର୍କ ତ ଚାଲିଥାଏ ବିଭିନ୍ନ ପ୍ରଶ୍ନକୁ ନେଇ । କିନ୍ତୁ ମନଭିତରେ କେତେ କଥା ଖୁବ୍ ଓଜନିଆ ହୋଇରହିଥାଏ । ମୁଁ ଆଦିବାସୀ ଜୀବନକୁ ଆଦର କରି ବସେ । ତାହାର ମୂଲ୍ୟବୋଧ, ଘରଦ୍ୱାର, ଜୀବନର ଲକ୍ଷ୍ୟ, ପିଲାଛୁଆ, ଜ୍ଞାତି, କୁଟୁମ୍ବ, ତାହାର ପର୍ବପର୍ବାଣି, ଗୀତନାଚ, ଘଷବାସ, ସାହୁକାର ଓ ସରକାର ସବୁକୁ ମୁଁ ଭଲ ପାଇବାରେ ଏକ ଚରମ ପରିପ୍ରକାଶ ବୋଲି ମନେକରେ । ମୋର ଖୁବ୍ ଇଛା ହୁଏ, ପାହାଡ ଉପରେ ଯାଇ ପୋଡୁ ଘଷ କରିବା ପାଇଁ । ନତୁବା ଶୀତଦିନେ ମଞ୍ଚା ଉପରେ ନିଆଁ ଜାଳି ବନ୍ୟଜନ୍ତୁ ହୁରୁଡେଇବାକୁ ମନଡାକେ । ପରବ ଦିନମାନଙ୍କରେ ମାଣ୍ଡିଆ ଲନ୍ଦା ପିଇ ଧାଙ୍ଗଡୀମାନଙ୍କ ସହ ନାଚିବାର ଏକ ଉନ୍ମାଦ ଚିନ୍ତା ଗ୍ରାସକରେ । ଆଦିବାସୀ ଭାଷାରେ ଗୀତଗାଇବା ପାଇଁ ଖୁବ୍ ଇଛା ହୁଏ । ଆମେ ସବୁ ଜଟିଳ ମଣିଷଙ୍କ ପାଇଁ ବଞ୍ଚିବାର ଉଲ୍ଲାସକୁ ଅନୁଭବ କରିବା ପାଇଁ ରାସ୍ତା ଆଉ କ'ଣ ଅଛି ? କାଶୀପୁରରେ ଦୁର୍ବଳତମ ମୁହୂର୍ତ୍ତରେ ମୁଁ ମନେ କରେ ଯେ ମୋର ଏ.ଜେ:ଆୟାର (A.J. AIYAR)ଙ୍କ Language, Logic & Truth ବା ଜାଁ ପଲ୍ ସାର୍ତ୍ତଙ୍କ A Search For a Method ପଢ଼ିବା ଏକ ମସ୍ତବଡ ଭୁଲ ହୋଇଯାଇଛି । କାଶୀପୁରରେ ଏକ ଅଭିନବ ବୌଦ୍ଧିକତାର କ୍ରୀତଦାସ ହେବାଟା ମୋର ଏକ ବ୍ୟକ୍ତିଗତ ପରାଜୟ ନୁହେଁ ତ ଆଉ କ'ଣ ? ଯେତେବେଳେ ବର୍ଷା ରାତି ଦିନ ଲାଗି ରହେ ଓ ବାହାରକୁ ଯାଇହୁଏ ନାହିଁ କି କାହାସହ କଥାବାର୍ତ୍ତା କରିବାକୁ ସୁଯୋଗ ମିଳେ ନାହିଁ ସେତେବେଳେ ମୋର ଏକାକୀତ୍ୱ ଖୁବ୍ ଭାରାକ୍ରାନ୍ତ କରେ ମୋତେ । ଟିଣଟ୍ରଙ୍କ ଉପରେ ଲଣ୍ଠନ ରଖି ଟାଇପ୍ ରାଇଟରରେ କ'ଣ ଗୋଟେ ସର୍ବୋ

ରିପୋର୍ଟ ଲେଖିବାକୁ ବି ଇଛାହୁଏ ନାହିଁ । ବାହାର ଦୁନିଆଁରେ କ'ଣ ହେଉଛି ତାହା ମଧ୍ୟ ଜାଣି ହୁଏ ନାହିଁ । କାଶୀପୁରକୁ ସପ୍ତାହ ସପ୍ତାହ ଧରି ବସ୍ ଆସେ ନାହିଁ । ଚିଠି ପତ୍ର ବା ଖବର କାଗଜ ମଧ୍ୟ ଆସେ ନାହିଁ । ଗୋଟାଏ ପ୍ରକାରର ନିର୍ବାସନ ଏହା ଯେମିତି ।

ମୁଁ ନିଃସଙ୍ଗ ମୁହୂର୍ତ୍ତମାନଙ୍କରେ ମୋର ବନ୍ଧୁମାନଙ୍କୁ ମନେ ପକାଏ । କାଶୀପୁରରୁ ରାୟଗଡା ଅନେକ ଦୂର ଯେମିତି । ପାହାନ୍ତାରୁ ତିନି କିଲୋମିଟର ଚାଲି ଚାଲି ଆମ କ୍ୟାମ୍ପରୁ ବସ୍ ଧରିବାକୁ ପଡେ । ସେ ବସ୍ ରାୟଗଡାରେ ପହଞ୍ଚୁଲା ବେଳକୁ ଅପରାହ୍ନ । ରାୟଗଡାରେ ଚିହ୍ନା ପରିଚିତ ଅଳ୍ପ କିଛି ଥାଆନ୍ତି । ସବ୍ କଲେକ୍ଟର ଶ୍ରୀ ଗୋକୁଳ ପତି । ଗୋକୁଳ ଫିଜିକ୍ସ୍‌ର ଛାତ୍ର ମୋଠାରୁ କଲେଜରେ ଦୁଇବର୍ଷ ଜୁନିୟର । ଆମେ ଏକାଠି ୱେଷ୍ଟ ହଷ୍ଟେଲରେ ଅନ୍ତେବାସୀ ଥିଲୁ । ତା' ସହ ବେଳେବେଳେ ମୁଁ ଯାଇ କାଶୀପୁରର ସମସ୍ୟା କଥାବାର୍ତ୍ତା କରେ । ପ୍ରଶାସନର ଦୃଷ୍ଟିଭଙ୍ଗୀ କ'ଣ ସବୁ ମୁଁ ବୁଝିବାକୁ ଚେଷ୍ଟା କରେ । ତାର ଅଫିସରେ ପୁରୁଣା ସବ୍ କଲେକ୍ଟରମାନଙ୍କର ତାଲିକା ମୁଁ ଦେଖି ଅବାକ୍ ହୁଏ ଯେ ଅନେକ ଚିହ୍ନା ପରିଚିତ ଲୋକ ଏ ପଦବୀରେ ରହି ଆସିଛନ୍ତି । ସେମାନଙ୍କଠାରୁ କାଶୀପୁରର ଇତିହାସ ମୁଁ ଖୁବ୍ ବେଶୀ ଶୁଣିବାକୁ ଯୋଜନା କରେ ଯଦି କେବେ ଭେଟ ହୁଏ । ଗୋକୁଳ ପୂର୍ବରୁ ଶ୍ରୀ ବିଜୟ ପଟ୍ଟନାୟକ ଓ ତା ପୂର୍ବରୁ ଶ୍ରୀ ଅର୍ଦ୍ଧେନ୍ଦୁ ଶେଖର ଷଡ଼ଙ୍ଗୀ ସବ୍‌କଲେକ୍ଟର ଥିଲେ । ଏମାନଙ୍କୁ ମୁଁ ଛାତ୍ର ଜୀବନରୁ ଜାଣିଥିଲି । ସେମାନେ କାଶୀପୁରରେ କି ଉନ୍ନୟନ କାମ ହାତକୁ ନେଇଥିଲେ ଓ ତାହାର ଫଳାଫଳ କ'ଣ ସବୁଥିଲା ମୁଁ ମୋର ସର୍ଭେ ରିପୋର୍ଟରେ ଅନ୍ତର୍ଭୁକ୍ତ କରିବାକୁ ଚାହୁଁଥିଲି । ରାୟଗଡାରେ ମୋର ରେଭେନ୍‌ସା କଲେଜର ବନ୍ଧୁ ଶ୍ରୀ ନବ କୁମାର ସାମଲ ଟ୍ରେଜରୀ ଅଫିସର୍ ଥିଲେ । ତାଙ୍କ ସହ ବେଳେବେଳେ ଦେଖା ହେଉଥିଲା । ତାଙ୍କ ଜରିଆରେ ଆହୁରି କେତେଜଣ କଲେଜ ବନ୍ଧୁଙ୍କ ସହ ମଧ୍ୟ ପରିଚୟ ହୋଇଥିଲା । ସେ ଭିତରୁ ଷ୍ଟେଟ୍‌ବ୍ୟାଙ୍କ ଅଫ ଇଣ୍ଡିଆର ଶ୍ରୀ ବ୍ରଜ ଶତପଥିଙ୍କ ସହ ଆନ୍ତରିକତା ବଢ଼ିଥିଲା । ରାୟଗଡାରେ ବନ୍ଧୁମାନେ ସବୁ ଏକାଠି ହୋଇ ସାହିତ୍ୟ, ରାଜନୀତି ଓ ଦେଶର ଭଲମନ୍ଦ ଆଲୋଚନା କରୁଥିଲେ । ଏଥିରେ ମୁଖ୍ୟ ପୁରୋଧା ଥିଲେ ପ୍ରଫେସର ଭଗବତ ପ୍ରସାଦ ରଥ । କାଶୀପୁରରୁ ରାୟଗଡା ଆସିଲେ ଏମାନଙ୍କ ସହିତ ବିଭିନ୍ନ ବହି, ପତ୍ର ପତ୍ରିକା ଓ ସମୟ ସାମୟିକ ବିଷୟରେ ଆଲୋଚନା କରି ଭାବ ବିନିମୟ କରିବାର ସୁଯୋଗ ମିଳୁଥିଲା । ମୁଁ ମୋର କାଶୀପୁର ଅନୁଭୂତି ଓ ସମସ୍ୟା କଥା କହୁଥିଲି । ସେମାନେ ମଧ୍ୟ ସମସ୍ୟା ବିଷୟରେ ଅବଗତ ଥିଲେ । ଅନେକ ଉପାଦେୟ ମତାମତ ମିଳୁଥିଲା ।

କିନ୍ତୁ କାଶୀପୁରରୁ ବାହାରକୁ ଆସିଲେ ମୋର ଦୁଇଟି ଗନ୍ତବ୍ୟସ୍ଥଳ ଥିଲା । ଗୋଟିଏ ଥିଲ ତିଲୋନିଆ ଅନ୍ୟଟି ଥିଲା ବ୍ରହ୍ମପୁର । ତିଲୋନିଆରେ ଥିଲେ ବଙ୍କର ଅରୁଣା, ଖେମ୍‌ରାଜ ଓ ଅନ୍ୟ ସହକର୍ମୀମାନେ । କାଶୀପୁର ଭଳି ଅବହେଳିତ ଅଞ୍ଚଳର ପରିସ୍ଥିତି ଆଲୋଚନା କରିଲେ ସେମାନେ ବିଭିନ୍ନ ମତାମତ ଦେଉଥିଲେ । ବଙ୍କର୍ ଓ ଅରୁଣା ଉଭୟଙ୍କର ଉଚ୍ଚ ପଦସ୍ଥ ଅଫିସରଙ୍କ ସହ ବେଶ୍ ପରିଚୟ । ତିଲୋନିଆକୁ ଭାରତ ସରକାରଙ୍କ ବିଭିନ୍ନ ମନ୍ତ୍ରଣାଳୟର ସେକ୍ରେଟେରୀ, ଜଏଣ୍ଟ ସେକ୍ରେଟେରୀ ପାହିଆ ଅଫିସର ଅନେକ ଆସୁଥିଲେ ।

ମିଟିଂରେ ମୁଁ ଓଡ଼ିଶାରେ ପ୍ରକଳ୍ପ ଆରମ୍ଭ କରୁଛି ବୋଲି ମୋର ପରିଚୟ ଦିଆ ଯାଉଥିଲା । ଅରୁଣା ଆଇ.ଏ.ଏସ୍‌ରୁ ଇସ୍ତଫା ଦେଇଥିଲେ ମଧ୍ୟ ଅମଲାତନ୍ତ୍ର ସହ ଖୁବ୍ ଅନ୍ତରଙ୍ଗ ସମ୍ପର୍କ ଥିଲା । ୧୯୬୮ ବ୍ୟାଚ୍‌ର ଓଡ଼ିଶାର ସବୁ ଅଫିସରଙ୍କୁ ସେ ବ୍ୟକ୍ତିଗତ ଭାବେ ଜାଣିଥିଲେ ଓ ତାଙ୍କ କଥା କହି ପରିଚିତ ହେବାକୁ ଉପଦେଶ ଦେଇଥିଲେ । ବଙ୍କର୍ ତାଙ୍କର ସ୍କୁଲ କଲେଜ ସାଥୀ ଓ ସହପାଠୀମାନେ ଓଡ଼ିଶାର ବିଭିନ୍ନ ପଦପଦବୀରେ ରହିଥିବା ସବୁବେଳେ ସୂଚନା ଦେଉଥିଲେ । ଏମାନଙ୍କର ଉଦ୍ଦେଶ୍ୟ ଥିଲା ଯେ, ଅମଲାତନ୍ତ୍ର ଏବଂ ପଦସ୍ଥ ଅଫିସରମାନଙ୍କର ବିନା ସହାୟତାରେ କାଶୀପୁର ଭଳି ଆଦିବାସୀ ଅଞ୍ଚଳରେ ତିଷ୍ଠିବା ସହଜ କଥା ନୁହେଁ । ବଙ୍କର୍ ନିଜେ ପ୍ରମାଣିତ କରିଛି ଯେ, ଗ୍ରାମ୍ୟ ବିକାଶ ପାଇଁ ଉଭୟ ରାଜନୈତିକ ଓ ଅମଲାତାନ୍ତ୍ରିକ ସମର୍ଥନ ଅବସମ୍ଭାବୀ । ଏଇଥିପାଇଁ ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ଭିବିନ୍ନ ବିଭାଗର ସେକ୍ରେଟାରୀମାନଙ୍କ ସହ ବ୍ୟକ୍ତିଗତ ସମ୍ପର୍କ ରଖିବା ଏକ ବାସ୍ତବ ରଣନୀତି । କାଶୀପୁରରୁ ରାୟଗଡା ଅନେକ ଦୂର । ରାୟଗଡାରୁ କୋରାପୁଟ, ଭୁବନେଶ୍ୱର ଓ ଦିଲ୍ଲୀର ଦୂରତ୍ୱ କଳ୍ପନାତୀତ । ମୁଁ ରାଜନୈତିକ ଓ ଅମଲାତାନ୍ତ୍ରିକ ସମର୍ଥନ ଓ ସହଯୋଗ ଯୋଗାଡ କରିପାରିବି କି ନାହିଁ ସନ୍ଦେହରେ ଥିଲି । ଏ ସମ୍ପର୍କ ସ୍ଥାପନ କରିବା ଏକ ସ୍ୱତନ୍ତ୍ର କଳା । ଏ ସମ୍ପର୍କ ସ୍ଥାପନ କରିବା ଏକ ସ୍ୱତନ୍ତ୍ର ଷ୍ଟାଟସ୍ । ମୋ ଭଳି ଅନାମଧେୟ ସାମାଜିକ କର୍ମୀ ଏଇ ପରୀକ୍ଷାରେ ଉତୀର୍ଣ୍ଣ ହୋଇ ପାରିବ କି ନାହିଁ ? ଖୁବ୍ ସନ୍ଦେହ ସୃଷ୍ଟି ହୋଇଥିଲା କାଶୀପୁର ପହଞ୍ଚିଲା ପରେ । କାଶୀପୁର ଓ ରାୟଗଡାର ନେତା ଓ ସେମାନଙ୍କର ସଂକୀର୍ଣ୍ଣ ଦୃଷ୍ଟିକୋଣ ଦେଖି ଦେଖି ଏକ ନକାରାତ୍ମକ ଭାବନା ସୃଷ୍ଟି ହୋଇଥିଲା । ଆଦିବାସୀ ହୁଅନ୍ତୁ କି ଅଣ-ଆଦିବାସୀ ହୁଅନ୍ତୁ ରାଜନୈତିକ ନେତାମାନଙ୍କର ଅସଲ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସହଜରେ ବୁଝି ହେଉଥିଲା ।

କାଶୀପୁରରୁ ତିଲୋନିଆ ଯିବାକୁ ତିନିଦିନ ସମୟ ଲାଗିଯାଉଥିଲା । ପ୍ରଥମେ କାଶୀପୁରରୁ ରାୟଗଡା ଯାଇ ସେଠାରେ ରାତି କାଟିବାକୁ ହେବ । ପାହାନ୍ତାରେ ରାୟପୁର ଲିଙ୍କ୍ ଏକ୍‌ସ୍‌ପ୍ରେସ୍ ଯାହାର ଘରୋଟି ଡବା ବିଳାସପୁରରୁ ଦିଲ୍ଲୀ ଯାଉଥିବା ଛତିଶଗଡ଼ ଏକ୍‌ସପ୍ରେସ୍‌ରେ ଯୋଡାଯାଏ । ରାୟପୁରରେ କିନ୍ତୁ ଲିଙ୍କ୍‌ଏକ୍‌ସ୍‌ପ୍ରେସ ପ୍ରାୟ ଚାରି ପାଞ୍ଚ ଘଣ୍ଟା ପଡିରହେ । ମୋର ସୁଟ୍‌କେଶ୍‌କୁ ସାଥୀ ପାସେଞ୍ଜରଙ୍କ ଜିମା ଦେଇ ମୁଁ ଷ୍ଟେସନ୍ ବାହାରକୁ ମଧ୍ୟାହ୍ନ ଭୋଜନ ପାଇଁ ଯାଏ । ଛତିଶଗଡ଼ ଏକ୍‌ସପ୍ରେସ୍‌ର ଗତି ଏତେ ମନ୍ଥର ଯେ ଖୁବ୍ ବିରକ୍ତ ଲାଗେ । ଏହା ଭିଲାଇ, ନାଗପୁର, ଭୋପାଳ, ଝାନ୍‌ସୀ, ଆଗ୍ରା କ୍ୟାଣ୍ଟନମେଣ୍ଟ ଦେଇ ନିଜାମୁଦ୍ଦିନ୍ ଷ୍ଟେସନ୍‌ରେ ପହଞ୍ଚେ । ମୁଁ ଟିକେଟ କଣ୍ଡକ୍‌ଟରକୁ ଅନୁରୋଧ କରି ଉପର ବର୍ଥଟିଏ ନେଇଯାଏ । ସେଠାରେ କୌଣସି ନା କୌଣସି ବହି ପଢ଼ି ସମୟ କାଟିଦିଏ । ଛତିଶଗଡ଼ ଏକ୍‌ସପ୍ରେସ୍‌ରେ ରିଜର୍ଭେସନ୍‌ର କୌଣସି ଅର୍ଥନାହିଁ । କମ୍ପାର୍ଟମେଣ୍ଟ ସାରା ଲୋକ ଭରି ରହନ୍ତି । ରାତ୍ରିରେ ଟଏଲେଟ୍ ଠାରୁ ଆରମ୍ଭ କରି ଚଟାଣରେ ସମସ୍ତ ଖାଲି ଜାଗାରେ ଲୋକେ ଖବର କାଗଜ ପକାଇ ଶୁଅନ୍ତି । ଭାରତୀୟ ରେଲୱେର ଚମତ୍କାରିତାକୁ ଅନୁଭବ କରିବାକୁ ହେବ । ମୁଁ ବେଳେବେଳେ ସାଥୀ ପାସେଞ୍ଜରମାନଙ୍କ ସହ କଥାବାର୍ତ୍ତା କରେ । କିଏ ଶ୍ରମିକ ତ କିଏ ବ୍ୟବସାୟୀ ।

ଶ୍ରମିକ ଯାଇଛି ରାଜସ୍ଥାନର ଗହମ ଖେତକୁ ନହେଲେ ଟ୍ୟୁବ୍‌ୱେଲ ଚଳାଇବାକୁ । ବ୍ୟବସାୟୀ ଯାଇଛି ଦିଲ୍ଲୀ ନହେଲେ ଫରିଦାବାଦ । ମାରୁଆଡି ବ୍ୟବସାୟୀ ଅନେକ । କେହି କେହି ସପରିବାର ରାଜସ୍ଥାନରେ ନିଜ ଗାଁ ପରିଦର୍ଶନରେ ଯାଉଛି । ସେମାନଙ୍କ ପାଖରେ ଥାଏ ମିଠା ନମ୍‌କିନ୍ ଭରା ଏକ ସ୍ୱତନ୍ତ୍ର ଟିଣଡବା । ରାସ୍ତା ସାରା ଖାଇବା ଚାଲିଥାଏ । ମୋତେ ବେଳେବେଳେ ମଧ୍ୟ ଯଚ୍ଛଯାଏ । ମୁଁ ଆଗ୍ରାକ୍ୟାଣ୍ଟନମେଣ୍ଟ ଷ୍ଟେସନ୍‌ରେ ଓହ୍ଲାଇ ଆଗ୍ରାଫୋର୍ଟ ଷ୍ଟେସନକୁ ଯାଏ ଓ ସେଠାରେ ଥିବା ମିଟରଗେଜ୍‌ର ଛୋଟ ଲାଇନ୍ ଟ୍ରେନ୍ ଧରିବାକୁ ପଡେ । ଅହମ୍ମଦାବାଦ୍ ଅଭିମୁଖେ ଟ୍ରେନ୍ ଧରିଲେ ତିଲୋନିଆ ଷ୍ଟେସନ୍‌ରେ ପାହାନ୍ତାରେ ଓହ୍ଲାଇବାକୁ ହୁଏ । କାଶୀପୁରରୁ ଏଇଭଳି ତିନିଦିନ ଯାତ୍ରା କରିଲେ ତିଲୋନିଆ ପହଞ୍ଚିବା ସମ୍ଭବ ହୁଏ । ଫେରିଲା ବେଳକୁ ମୁଁ ଦିଲ୍ଲୀ ବାଟେ ଫେରେ । ସେଠାରୁ ଛତିଶଗଡ଼ ଏକ୍‌ସପ୍ରେସ୍ ଧରିବା ସହଜ ହୁଏ । ବନ୍ଧୁ ଶ୍ରୀ ଅଶୋକ ଆଚାର୍ଯ୍ୟ ଜିଲ୍ଲା ପ୍ରଶାସନର ପଦସ୍ଥ ଅଫିସର । ତାଙ୍କ ପାଖରେ ରହିଯାଏ । ସେ ଟ୍ରେନ୍‌ରେ ରିଜର୍ଭେସନ୍ ମଧ୍ୟ କରିଦିଅନ୍ତି । ଆସିବା ସହଜ ହୁଏ । ମୁଁ ଫେରିଲା ବେଳକୁ କେମିତି କମ୍ ସମୟରେ କାଶୀପୁର ପହଞ୍ଚିବି ଚେଷ୍ଟା କରୁଥାଏ ଅନବରତ । ବେଳେବେଳେ ଭୁବନେଶ୍ୱର ଦେଇ ଫେରିବାକୁ ହୁଏ ନହେଲେ ବିଶାଖାପାଟଣା ଦେଇ । କିନ୍ତୁ ଛତିଶଗଡ଼ ଏକ୍‌ସ୍‌ପ୍ରେସ୍ ସବୁଠାରୁ କମ୍ ସମୟ ନିଏ ତୁଳନା କଲେ । ଏଇଥିପାଇଁ ଛତିଶଗଡ଼ ଏକ୍‌ସପ୍ରେସ୍‌କୁ ଆପଣାର କରିବା ଛଡା ଅନ୍ୟ କିଛି ବାଟ ନଥାଏ । ଲମ୍ୱା ଟ୍ରେନ୍ ଯାତ୍ରାବେଳେ କିଛି ପଢ଼ିହୁଏ ଓ ଅନେକ କିଛି ଭାବି ହୁଏ । ବଦଳୁଥିବା ଲ୍ୟାଣ୍ଡସ୍କେପ୍ ମୁଁ ଦେଖି ଅଭିଭୂତ ହୋଇଯାଏ । ବିଭିନ୍ନ ଧରଣର ମଣିଷମାନଙ୍କ ସହ ଟ୍ରେନ୍‌ରେ ଯେଉଁ ସ୍ୱେଚ୍ଛ ସମୟର ବନ୍ଧୁତା ସୃଷ୍ଟି ହୁଏ, ତାହା ମଧ୍ୟ ଅବାକ୍ ଲାଗେ । ଏତେଥର ମୁଁ ସେ ଟ୍ରେନ୍‌ରେ ଯାଉଛି, କେବେହେଲେ ଥରେ ବି ସମସ୍ୟାରେ ପଡିନାହିଁ । କୌଣସି ଜିନିଷ ଚୋରି ହୋଇନାହିଁ । କେହି ମୋତେ ଠକିବାକୁ ଚାହିଁନାହିଁ । ସେତେବେଳେ ଟ୍ରେନ୍ ଯାତ୍ରା ସମସ୍ତଙ୍କର ପସନ୍ଦଯୋଗ୍ୟ ଥିଲା । କାଶୀପୁରରୁ ତିଲୋନିଆ ପ୍ରାୟ ଦୁଇହଜାର କିଲୋମିଟର ଓ ତିନିଦିନର ରାସ୍ତା । ମୁଁ ସହଜରେ ଅତିକ୍ରମ କରିଥାଏ । ତିଲୋନିଆରେ ପ୍ରିୟଜନମାନଙ୍କୁ ଦେଖିବା ଓ କିଛି ଅନ୍ତରଙ୍ଗ ମୁହୂର୍ତ୍ତ କଟାଇବାକୁ ମନ ଉଚ୍ଚାଟ ହୁଏ । ତିଲୋନିଆରେ ଥାଏ ଭଲ ପାଇବାର ସମସ୍ତ ଆକର୍ଷଣ । ମୁଁ ସମ୍ଭବତଃ ପ୍ରେମରେ ପଡିଯାଇଥିଲି ।



# ୧୩

କାଶୀପୁରରୁ ୧୯୮୧ ମସିହାରେ ବ୍ରହ୍ମପୁର ଯିବାଟା ବିଶେଷ ଆକର୍ଷଣ ଥିଲା । ସେଠାରେ ମୋର ଘନିଷ୍ଠ ବନ୍ଧୁ ଶ୍ରୀ ଅରବିନ୍ଦ ବେହେରା ସବ୍‌କଲେକ୍ଟର ହିସାବରେ ଯୋଗ ଦେଇଥାଆନ୍ତି । ଆଇ.ଏ.ଏସ୍ ଟ୍ରେନିଂ ପରେ ଏହା ତାଙ୍କର ପ୍ରଥମ ପୋଷ୍ଟିଂ । ବ୍ରହ୍ମପୁର ସବ୍ ଡିଭିଜନ୍‌ର କିଛି ଅଂଶ ଆଦିବାସୀ ଅଞ୍ଚଳ । ସେଠାରେ ମଧ ଦକ୍ଷିଣାଞ୍ଚଳ ରାଜସ୍ୱ କମିଶନରଙ୍କ ଅଫିସ୍ । ମହୁଡାଠାରେ ଜୋ ଏବଂ ଆଟ୍ସ୍ୟା ମାଡିଆଥିଙ୍କ ଗ୍ରାମ ବିକାଶ ସ୍ୱେଚ୍ଛାସେବୀ ସଂଗଠନ । ମୁଁ ବ୍ରହ୍ମପୁର ଆସିବାର ଯୋଜନା କରିଲେ ଅନେକ କଥା ମନ ଭିତରକୁ ସ୍ୱତଃ ଆସିଥାଏ । କାଶୀପୁରରୁ ବ୍ରହ୍ମପୁର ଆସିବାକୁ କେତେ ସମୟ ଲାଗିବ ଓ କେଉଁ ବାଟରେ ସହଜରେ ପହଞ୍ଚିହେବ, ମୁଁ ଜାଣିବାକୁ ବାରମ୍ବାର ଚେଷ୍ଟା କରୁଥାଏ । ରାୟଗଡାରୁ ବ୍ରହ୍ମପୁର ବସ୍ ସକାଳେ ଛାଡେ । କଟକ, ଭୁବନେଶ୍ୱର ଯାଉଥିବା ରାତିବସ୍ ଗୁଡିକରେ ବ୍ରହ୍ମପୁର ପାଇଁ ସିଟ୍ ମିଳେନାହିଁ । ସେଥିପାଇଁ ମୁଁ ବହୁତ ସମୟରେ ବିଜୟନଗରମ୍ ଯାଇ ସେଠାରୁ ମେଲ୍ ଧରିଥାଏ । କେତେବେଳେ ପାର୍ବତୀପୁରମ୍ ଠାରୁ ବସ୍ ଯୋଗେ ମଞ୍ଜୁଷା ଦେଇ ସେଠାରୁ ଟ୍ରକ୍ ଧରି ବ୍ରହ୍ମପୁର ପହଞ୍ଚିଥାଏ । ବ୍ରହ୍ମପୁରରୁ କାଶୀପୁର ଫେରିଲା ବେଳେ ବି ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡେ । ସମୟବି ବହୁତ ଲାଗିଯାଏ । ଦକ୍ଷିଣ ଓଡ଼ିଶାରେ ଗମନାଗମନର ଏତେ ଅସୁବିଧା ଯେ, ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ସହଜରେ ଯାଇହୁଏ ନାହିଁ । ପ୍ରାଇଭେଟ୍ ବସ୍ ପ୍ରାୟ ନଥାଏ ଓ ସରକାରୀ ବସ୍‌ଗୁଡିକ ଜରାଜୀର୍ଣ୍ଣ ଅବସ୍ଥାରେ ଚାଲୁଥାଏ । ବାଟରେ ଅଟକି ଯିବା ବା ଦୁର୍ଘଟଣା ଘଟିବା କିଛି ନୂଆ କଥା ନଥିଲା ସେତେବେଳେ । ଏସବୁ ସତ୍ତ୍ୱେ ମୁଁ କିନ୍ତୁ କାଶୀପୁରରୁ ବ୍ରହ୍ମପୁର ଯିବାକୁ ସବୁବେଳେ ଯୋଜନା କରୁଥାଏ ।

ମୁଁ ଆଗରୁ ଉଲ୍ଲେଖ କରିଛି ଯେ, ଅରବିନ୍ଦ ମୋର କାଶୀପୁରରେ ପ୍ରକଳ୍ପ ଆରମ୍ଭ କରିବାର ଅନ୍ୟତମ ପ୍ରେରଣା । ସେ ଓ ଗୋପବନ୍ଧୁ ଯଦି ତିଲୋନିଆ ନଯାଇ ଥାଆନ୍ତେ ଓ ବଙ୍କର ରାୟଙ୍କ ସହ କଥାବାର୍ତ୍ତା ନକରି ଥାଆନ୍ତେ, କାଶୀପୁର ଆଦିବାସୀ ବିକାଶ ପ୍ରକଳ୍ପ ଏକ କଳ୍ପନାରେ ହିଁ ରହି ଯାଇଥାଆନ୍ତା । ୧୯୬୯ ମସିହାରୁ ଅରବିନ୍ଦ ସହ ରେଭେନ୍‌ସା କଲେଜରେ ପରିଚୟ ଓ ପରେ ପରେ ବନ୍ଧୁତା । ଆମର ତାରୁଣ୍ୟର ସମାପ୍ତିପରେ ଓ ବିଭିନ୍ନ ବୌଦ୍ଧିକତାର ପାହାଚ ଅତିକ୍ରମ କରିଲା ପରେ ବସ୍ତୁତଃ ଏକ ପେଶାଦାର ଜୀବନ ଆରମ୍ଭ ହୋଇଥିଲା । କିନ୍ତୁ ୧୯୭୦ ମସିହାଠାରୁ ଆମେ ପରସ୍ପରକୁ ଚିଠି ଲେଖିଥିଲୁ । ଆମର ଜୀବନ ଓ ଜିଜ୍ଞାସ ସବୁବେଳେ ଶାନ୍ତ ଓ ସୁନ୍ଦର ନଥିଲା । ଉଠାଣି ଗଡାଣି ଲାଗି ରହିଥିଲା । କିନ୍ତୁ ସବୁପଛରେ ଥିଲା ଏକ ଅଭିନବ ଅନ୍ୱେଷଣ ଏବଂ ଜୀବନ ସହ ଏକ ଚିରନୂତନ

ପରୀକ୍ଷା । ମୁଁ ଚିଠି ଅନେକ  ଲେଖିଥିଲି ଓ ଉତ୍ତର ଦେଉଥିଲି । ଖାଲି ଅରବିନ୍ଦକୁ ନୁହେଁ ଅନେକ ଅନ୍ତରଙ୍ଗ ବନ୍ଧୁମାନଙ୍କୁ । ଆମେ ସମସ୍ତେ ପରସ୍ପରକୁ ଲେଖି ସ୍ନେହ ବନ୍ଧୁତ୍ୱ ଓ ପରିପକ୍ୱତାର ଏକ ଉଦାହରଣ ସୃଷ୍ଟି କରିଥିଲୁ । ମୋର ଆଶା ଏ ଚିଠି ଗୁଡିକ ଦିନେ ପ୍ରକାଶିତ ହେବ ଓ ଓଡ଼ିଆ ସାହିତ୍ୟରେ ଚମକ ସୃଷ୍ଟି କରିବ । କିନ୍ତୁ ଅନ୍ୟ ବନ୍ଧୁମାନେ ସରକାରୀ ଚାକିରିଆ ହୋଇଗଲା ପରେ ଚିଠି ଲେଖିବାର ଗତି ଶିଥିଳ ହୋଇଗଲା । କାଶୀପୁରରୁ ମୋର ବି ଚିଠି ଲେଖିବା କମିଗଲା ଅନେକ । ସମ୍ଭବତଃ ଏଇଥିପାଇଁ ବ୍ରହ୍ମପୁରରେ ଅରବିନ୍ଦ ସହ ବାର୍ତ୍ତାଳାପ କରିବାକୁ ମନ ଉଚ୍ଚାଟ ହେଉଥିଲା ଓ ଏକ ଆତ୍ମିକ ପରିପ୍ରକାଶ ପାଇଁ ରାସ୍ତା ମିଳୁଥିଲା ମୋତେ ।

ଅରବିନ୍ଦ ଓ ତାଙ୍କର ସ୍ତ୍ରୀ ନିବେଦିତା । ୧୯୮୦ରେ ସେମାନଙ୍କର ବିବାହ ଉତ୍ସବରେ ଯୋଗଦେବା ପାଇଁ ମୁଁ ସିଧାସଳଖ ତିଲୋନିଆରୁ ଆସିଥିଲି । ଫଟୋଗ୍ରାଫ ନେବା ମୋର ଦାୟିତ୍ୱ ଥିଲା । କିନ୍ତୁ କ୍ୟାମେରାର ଅସୁବିଧା ହେତୁ ଅନେକ ଫଟୋ ଉଠିନଥିଲା । ମୁଁ କାଶୀପୁରରୁ ପହଞ୍ଚିଲା ମାତ୍ରକେ ସେମାନେ ଅପରିମିତ ସ୍ନେହ ଓ ସମ୍ବେଦନା ଅଜାଡି ଦେଉଥିଲେ । ଅରବିନ୍ଦ ସବ୍‌କଲେକ୍ଟର ହିସାବରେ ଅନେକ ଦାୟିତ୍ୱ ବହନ କରିଥାଏ । ବ୍ରହ୍ମପୁର ଗଣ୍ଡଗୋଳିଆ ଜାଗା ହିସାବରେ କୁଖ୍ୟାତି ଅର୍ଜନ କରିଥାଏ ସେ ସମୟରେ । ଆଇନ ଶୃଙ୍ଖଳାର ବିଭ୍ରାଟ ବାରମ୍ବାର ଲାଗି ରହିଥାଏ । ମଝିରେ ମଝିରେ ଆମେ ଦୁହେଁ କିନ୍ତୁ ବିକାଶ ଓ ସରକାରୀ ଯୋଜନାର ବ୍ୟବଚ୍ଛେଦ କରୁଥାଉ । ଯୁକ୍ତି ତର୍କ ମଧ୍ୟରାତ୍ରି ପର୍ଯ୍ୟନ୍ତ ଚାଲେ । ବ୍ରହ୍ମପୁରରେ ସେତେବେଳେ ସେଟ୍‌ଲ୍‌ମେଣ୍ଟ ଅଫିସର ହିସାବରେ ଥାଆନ୍ତି ଶ୍ରୀ ତରୁଣକାନ୍ତି ମିଶ୍ର । କୋରାପୁଟ ଆଦିବାସୀ ଅଞ୍ଚଳକୁ ସେ ବାରମ୍ବାର ଗସ୍ତ କରୁଥିଲେ ବିଭିନ୍ନ ସେଟ୍‌ଲମେଣ୍ଟ କ୍ୟାମ୍ପ ତଦାରଖ କରିବାକୁ । ଆଦିବାସୀଙ୍କ ଉପରେ ସେ ବିଭିନ୍ନ ମତାମତ ଦେଉଥିଲେ । ମୋତେ ଆଶ୍ୱାସନା ଦେଉଥିଲେ କାଶୀପୁର ଆସି ଦେଖିବେ ବୋଲି । କିନ୍ତୁ ଅବସର ମିଳିଲା ମାତ୍ରକେ ସାହିତ୍ୟ ଆଲୋଚନା ହୁଏ । ବ୍ରହ୍ମପୁରର ଅନେକ ଲେଖକମାନଙ୍କୁ ନେଇ 'ଅନ୍ୱେଷ' ପତ୍ରିକା ପ୍ରକାଶନ ହେବାର ଯୋଜନା ଚାଲିଥାଏ । ମୋତେ ଅନୁରୋଧ କରାଗଲା ଲେଖାଟିଏ ଦେବା ପାଇଁ । କାଶୀପୁରରେ ଯେଉଁଠି ଅନାହାର, ଶୋଷଣ ଓ ଦାରିଦ୍ର୍ୟ ଅକଳନୀୟ, ସେଠାରେ ଜଣେ କ'ଣ ସାହିତ୍ୟ ସୃଷ୍ଟି କରିବ ? କ'ଣ କଳ୍ପନାବିଳାସ କରିବ ? ମୁଁ ବିଶ୍ୱର ସର୍ବଶ୍ରେଷ୍ଠ ଲେଖକମାନଙ୍କୁ ପଢିଛି ସତ, କିନ୍ତୁ ଲେଖକମାନେ ପଳାୟନପନ୍ଥୀ ହିସାବରେ ବେଳେବେଳେ ସେମାନଙ୍କୁ ମୁଁ ଭିନ୍ନ ଦୃଷ୍ଟିରେ ଦେଖେ । ଯେଉଁ ଲେଖକ ସାଧାରଣ ମଣିଷର ଜୀବନକୁ ଚିତ୍ରଣ ନକରି ନିଜର ସୀମିତ ପୃଥିବୀକୁ ଅନ୍ୟ ଆଗରେ ଉପସ୍ଥାପନା କରୁଛି, ସେ କେବଳ କଳ୍ପନା ବିଳାସ କରୁଛି ମାତ୍ର । ଯେଉଁ ଲେଖକମାନେ ସମାଜରେ କ'ଣ ଘଟୁଛି ସେଥିପ୍ରତି ଉଦାସୀନ ରହନ୍ତି, ସେମାନେ ଲେଖକ ପଦବାଚ୍ୟ କି ? ବ୍ରହ୍ମପୁରରେ ଲେଖକମାନଙ୍କୁ ଦେଖିଲା ମାତ୍ରକେ ଏଇ ଧାରଣା ମୋର ସୃଷ୍ଟି ହୋଇଥିଲା । କିନ୍ତୁ ଅରବିନ୍ଦ ଓ ତରୁଣ ବାବୁଙ୍କ ଅନୁରୋଧ ରକ୍ଷା କରି କାଶୀପୁର ତଥା ମୋର ମାନସିକ ଦ୍ୱନ୍ଦ୍ୱକୁ ପୁଞ୍ଜିକରି କ'ଣ ଗୋଟାଏ ମୁଁ ଲେଖି ଦେଇଥିଲି । ତାହା ବିନା ପ୍ରଶ୍ନରେ ପ୍ରକାଶିତ ହୋଇଥିଲା ।

ରାଜସ୍ଥାନରୁ ଶ୍ରୀମତୀ ଅରୁଣା ରାୟ ଓ ଡକ୍ଟର ଶାରଦା ଜୈନ ଆସିଥିଲେ ପୁସ୍ତିକା ଉନ୍ମୋଚନ ଦିନ । ଅରୁଣା ଆଇ.ଏ.ଏସ୍‌ରୁ ଇସ୍ତଫା ଦେଇ ସମାଜସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଶାରଦା ଦର୍ଶନଶାସ୍ତ୍ରର ଅଧ୍ୟାପିକା । ଦର୍ଶନ ଓ ତର୍କ ଶାସ୍ତ୍ରରେ ତାଙ୍କର ସମାଧାନ ମଣିଷ ଆଜିପର୍ଯ୍ୟନ୍ତ ଦେଖିନାହିଁ । ଭୁବନେଶ୍ୱରରେ ଦର୍ଶନଶାସ୍ତ୍ର ଉପରେ ଏକ ଜାତୀୟ କର୍ମଶାଳାରେ ସେମାନେ ଯୋଗ ଦେବାକୁ ଆସିଥିଲେ । ମୁଁ ସେମାନଙ୍କୁ ବ୍ରହ୍ମପୁର ନିମନ୍ତ୍ରଣ କରିଥିଲି । ମୋ ଜରିଆରେ ଅରବିନ୍ଦକୁ ମଧ୍ୟ ସେମାନେ ଜାଣିଥିଲେ । ସେଠାରେ ରଣପା ନୃତ୍ୟଛଡ଼ା ଦକ୍ଷିଣ ଓଡ଼ିଶାର ହସ୍ତକଳା ଉପରେ ମଧ୍ୟ ଆମର ତାତ୍ତ୍ୱିକ ଆଲୋଚନା ହୋଇଥିଲା । ଓଡ଼ିଶାରେ ସବୁଥାଇ ମଧ୍ୟ ଏହା କେମିତି ଗରିବ ଓ ଅବହେଳିତ ରହିଛି ତାହା ମଧ୍ୟ ଆଲୋଚନାର ବିଷୟ ବସ୍ତୁ ଥିଲା । ଅରୁଣା ଅମଲାତନ୍ତ୍ର ପ୍ରତି କେମିତି ବିମୁଖ ସେକଥା ସ୍ପଷ୍ଟ କହୁଥିଲେ । ଶାରଦା ଦର୍ଶନ ଓ ଶିକ୍ଷା ଉପରେ ଉଚ୍ଚକୋଟୀର ଗବେଷଣା କରିଥିଲେ । ଆଦିବାସୀ ଅଞ୍ଚଳରେ କ'ଣ ଘଟିଛି ସେମାନେ ମୋଠାରୁ ଶୁଣିବାକୁ ତତ୍‌ପର ହୋଇଥିଲେ । ଅରବିନ୍ଦ ଠାରୁ ମଧ୍ୟ । ୧୯୮୨ ମସିହାରେ ନୂଆବର୍ଷ ଆମେ ଗୋପାଳପୁରର ସମୁଦ୍ର ବେଳାରୁ ଆରମ୍ଭ କରିଥିଲୁ । ବ୍ରହ୍ମପୁରରେ ଯେତିକି ସମୟ ମୁଁ ରହୁଥିଲି, ଅରବିନ୍ଦ ସହ ବିଭିନ୍ନ ଗାଁକୁ ଯିବାକୁ ବେଶୀ ପସନ୍ଦ କରୁଥିଲି । ଗାଁ ମାନଙ୍କର ସୁବିଧା ଅସୁବିଧା, ଜଣେ ଯୁବ ଅଫିସର କେମିତି ସମ୍ବେଦନଶୀଳତାର ସହ ବୁଝିବାକୁ ଚେଷ୍ଟା କରୁଛି ମୁଁ ଜାଣି ଖୁସି ହେଲି । ମୁଁ ପର୍ଯ୍ୟଟକ ନଥିଲି । ଗୋପାଳପୁର ବା ତପ୍ତପାଣି ଯାଇ ଆନନ୍ଦରେ ବିଭୋର ହେବା ମୋର ଉଦ୍ଦେଶ୍ୟ ନଥିଲା । କାଶୀପୁର ଓ ବ୍ରହ୍ମପୁର ଭିତରେ ମାନସିକ ଦ୍ୱନ୍ଦ୍ୱକୁ ସହଜରେ ଅତିକ୍ରମ କରାଯାଇ ପାରୁଥିଲା ।

ଅରବିନ୍ଦ ଠାରୁ ଶାସନକଳ ଭିତରେ କ'ଣ ଚାଲିଛି ଓ ପ୍ରଶାସନ ସହ ରାଜନୀତି କେମିତି ସଂଶ୍ଳିଷ୍ଟ ଜାଣିବାକୁ ମୋତେ ସୁଯୋଗ ମିଳିଥିଲା । କ୍ଷମତାର ଓ ଢ଼ାଞ୍ଚାର ପାହାଚ ଚଢ଼ିଲା ପରେ ମଣିଷଟି ମଣିଷ ହୋଇ ରହେ କି ନାହିଁ, ସେ ସବୁ ପ୍ରଶ୍ନ ଉଠୁଥିଲା ଆମ ଭିତରେ । ସାରା ସମାଜରେ ଏଇଭଳି ପାହାଚ ସବୁ ତିଆରି ହୋଇଛି ସବୁକ୍ଷେତ୍ରରେ । କ୍ଷମତାଲିପ୍ସୁ ମଣିଷଟି ସର୍ବୋଚ୍ଚ ପାହାଚରେ ଛିଡ଼ା ହୋଇ ଗର୍ବରେ ମତୁଆଲା ହୋଇଯାଇଛି । ପ୍ରଶାସନ ଭିତରେ କେତେ ଅଳନ୍ଧୁ ଭରି ରହିଛି ତାହା ସହଜରେ ଜାଣି ହେଉଥିଲା । ଅରବିନ୍ଦକୁ ମୁଁ ସାମ୍ପ୍ରତିକ ବିକାଶଧାରାର ଗତି ଓ ଆଭିମୁଖ୍ୟ ବୁଝାଇବାକୁ ଚେଷ୍ଟା କରୁଥିଲି । ସରକାରୀ ଦୃଷ୍ଟିକୋଣରେ ଜନବିକାଶର ଅର୍ଥ ଅନ୍ୟକିଛି । ଆମ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଦୃଷ୍ଟିକୋଣ ଏ ଜନବିକାଶ ସମ୍ପର୍କରେ ଖୁବ୍ ଭିନ୍ନ ଓ ସ୍ୱତନ୍ତ୍ର । ଏଇଥିପାଇଁ ସରକାର ଓ ବେସରକାରୀ ସଂଗଠନ ଏକାଠି ବସିପାରନ୍ତି ନାହିଁ । ସ୍ୱେଚ୍ଛାସେବୀ ସଂଗଠନର କର୍ମୀମାନେ ସରକାରଙ୍କ ଗ୍ରାମସେବକ ନୁହଁନ୍ତି ଯେ, ସବୁ ଆଦେଶ ମାନିନେବେ । ତଥାପି କାଶୀପୁରରେ ପ୍ରଶାସନିକ ଜଟିଳତାକୁ କେମିତି ସହଜ କରାଯାଇ ବିକାଶର ପଥ ସୁଗମ କରାଯିବ, ମୁଁ ଅରବିନ୍ଦ ସହ ବାରମ୍ବାର ଆଲୋଚନା କରୁଥିଲି ।

ଅରବିନ୍ଦର ଅଫିସରେ ମୁଁ କେବେ କେମିତି ବସୁଥିଲି ଓ ଲକ୍ଷ୍ୟ କରୁଥିଲି ଅଫିସର ଆଦବକାଇଦା । ଲୋକମାନେ ବିଭିନ୍ନ ଆପତ୍ତି ଅଭିଯୋଗ ଜଣାଇବାକୁ ଆସୁଥିଲେ । ସେ

ଅଧସ୍ତନ ସରକାରୀ କର୍ମଚାରୀମାନଙ୍କୁ ଡକାଇ ଆଲୋଚନା କରେ ଓ ସମାଧାନର ରାସ୍ତା ବାହାର କରେ । ଅଧିକାଂଶ ଆପତ୍ତି ଚାଉଳ ଓ ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ନେଇ ଉଠିଥାଏ । ବେଳେବେଳେ ନୋଳିଆ ସାହିରେ ନିଆଁ ଲାଗିଲା- ତାହା ପାଇଁ ରିଲିଫ୍ ଯୋଗାଇବାର କାର୍ଯ୍ୟକ୍ରମ ଆରମ୍ଭ କରାଯାଏ । ଗାଁମାନଙ୍କରେ ଚାଷବାସ ଓ ଜଳସେଚନ କଥା ମଧ୍ୟ ସବ୍ କଲେକ୍ଟର ହିସାବରେ ଦେଖିବାକୁ ପଡେ । ବି.ଡି.ଓ. ଓ ତହସିଲଦାରଙ୍କ ବିଭିନ୍ନ ଦାୟିତ୍ୱ ସବୁ ତଦାରଖ କରିବାକୁ ହଏ । ସବ୍‌କଲେକ୍ଟରଙ୍କ ବନ୍ଧୁ ହିସାବରେ ମୋତେ ମଧ୍ୟ ବହୁତ ଖାତିର ମିଳୁଥାଏ ।

ସରକାରୀ ଚାକିରିଆ ହୁଅନ୍ତୁ ବା ସ୍ୱେଚ୍ଛାସେବୀ ସଂଗଠନର କର୍ମୀ ହୁଅନ୍ତୁ, ଗରିବଙ୍କ ପାଇଁ ସ୍ୱତନ୍ତ୍ର ସମ୍ବେଦନଶୀଳତା ପ୍ରଦର୍ଶନ କରିବାକୁ ହେବ, ଏକଥା ଆମେ ଦୁହେଁ ସବୁବେଳେ ଅନୁଭବ କରୁଥିଲୁ । ସରକାରୀ କଳରେ ଥାଇ ମଧ୍ୟ ଜଣେ ସ୍ୱେଚ୍ଛାସେବୀ ଭଳି କାମ କରିପାରିବ ଏହା ଆମେ ଉପଲବ୍ଧି କରୁଥିଲୁ । ମସୋରୀର ଲାଲ୍‌ବାହାଦୂର ଶାସ୍ତ୍ରୀ ଏକାଡେମୀରେ ଅଫିସର କେମିତି ହେବ, ଆଦବ କାଇଦା କେମିତି ଦେଖାଇବ, ମାପିଚୁପି କେମିତି କଥାବାର୍ତ୍ତା କରିବେ, ଓ ସବୁବେଳେ ଅନ୍ୟଠାରୁ କେମିତି ସ୍ୱତନ୍ତ୍ର ଜଣାପଡିବ ତାହା ପ୍ରଶିକ୍ଷଣ ଦିଆଯାଇଥାଏ । ବ୍ରିଟିଶ ଶାସନରେ ଆଇ.ସି.ଏସ୍.(ICS) ଅଫିସରମାନେ ଯାହା କରୁଥିଲେ ଏମାନେ ଗୋଟାପଣେ ନକଲ କରିବାକୁ ପଛାଉନଥିଲେ । ଶାସକ ଓ ଶାସିତ ଭିତରେ ଚମତ୍କାର ବ୍ୟବଧାନ ରକ୍ଷା କରିପାରୁ ଥିଲେ । ବ୍ରହ୍ମପୁର ଇଂରେଜ ଶାସନ ସମୟର ପରମ୍ପରା ରଖି ଆସିଥିବାରୁ ସମ୍ଭବତଃ, ସବ୍‌କଲେକ୍ଟର ସାହେବଙ୍କୁ ମଧ୍ୟ କେତେକ ବିଷୟରେ ସଚେତନ ହେବାକୁ ପଡିଥାଏ । ମୁଁ କିନ୍ତୁ ସବୁବେଳେ କହୁଥାଏ ଯେ ବ୍ୟବସ୍ଥାଠାରୁ ମାନବିକତା ଉର୍ଦ୍ଧ୍ୱରେ । ମୋର ଆଶାଥାଏ, ଅରବିନ୍ଦ ଯେଉଁ ପଦବୀରେ ଥାଉନା କାହିଁକି ନିଜକୁ ଅକ୍ଷୂର୍ଣ୍ଣ ରଖିପାରିବ ଓ ସାଧାରଣ ମଣିଷଙ୍କ ହିତରେ ନିଜକୁ ନିୟୋଜିତ କରିବ । ମୁଁ ତିଲୋନିଆରେ ଥିଲାବେଳେ ଭାରତ ସରକାରଙ୍କ ବିଭିନ୍ନ ପଦସ୍ଥ ଅଫିସରଙ୍କ ସମ୍ପର୍କରେ ଆସିଥିଲି । ସେତେବେଳେ ଶ୍ରୀଯୁକ୍ତ ଏସ୍.ଆର.ଶଙ୍କରନ୍, ଶ୍ରୀ ଦେବବ୍ରତ ବନ୍ଦୋପାଧ୍ୟାୟ, ଶ୍ରୀ ଅନୀଲ ବୋର୍ଡିଆ, ଶ୍ରୀଯୁକ୍ତ ଆପ୍ପୁ ଆଦିଙ୍କ ସହ କଥାବାର୍ତ୍ତା ହୋଇଥିଲା ବିଭିନ୍ନ ସମୟରେ । ଏମାନେ ଉଚ୍ଚପଦବୀରେ ରହି ମଧ୍ୟ ଲୋକଙ୍କ ସମସ୍ୟା ପ୍ରତି ଖୁବ୍ ସମ୍ବେଦନଶୀଳ ଥିଲେ ଓ ଲୋକମାନଙ୍କ ସପକ୍ଷରେ ସରକାରୀ ନିୟମକାନୁନ୍ ଭାଙ୍ଗି ନାମ ଅର୍ଜନ କରିଥିଲେ । ମୁଁ ଅରବିନ୍ଦକୁ ଏମାନଙ୍କ ବିଷୟରେ କହି ସେମାନଙ୍କ ଭଳି ବ୍ୟକ୍ତିତ୍ୱ ହେବାକୁ ସବୁବେଳେ ପରାମର୍ଶ ଦେଇଥିଲି । ଓଡ଼ିଶାର ରାଜନୀତି ଓ ତହିଁରେ ଥିବା ଅମଲାତନ୍ତ୍ର ସେତେବେଳେ ବିଭିନ୍ନ ବିବାଦ ଭିତରେ ବୁଡି ରହିଥାଏ । ଓଡ଼ିଶାର ରାଜନୈତିକ ନେତା ଓ ଅଫିସରମାନେ ଦିଲ୍ଲୀ ମହଲରେ ଅନାମଧେୟ ହୋଇ ରହିଥାଆନ୍ତି । କବିତା ଲେଖିବାରେ ପାରଙ୍ଗମ । ଦୁର୍ନୀତିରେ ମଧ୍ୟ କମ୍ ନୁହେଁ । ଏସବୁକୁ ବିଚାରକୁ ନେଇ ଅରବିନ୍ଦକୁ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ହେବାକୁ ମୁଁ ସେ ସମୟରେ ଆଶା କରିଥିଲି ।



# ୧୪

୧୯୮୦ ମସିହାରେ ମୁଁ କାଶୀପୁର ପହଞ୍ଚିବା ପୂର୍ବରୁ ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ଘୋର ପ୍ରଭାବିତ ହୋଇଥିଲି । ରେଭେନ୍‌ସା କଲେଜରେ ତାଙ୍କର ଓଜସ୍ୱିନୀ ଭାଷଣ ମୁଁ ଶୁଣିଥିଲି । ହାଇସ୍କୁଲରେ 'ଶିଳାତୀର୍ଥ' ପଢ଼ିଥିଲି ଓ ଆମର ସେ ସମୟର ଶିକ୍ଷକମାନଙ୍କଠାରୁ ତାଙ୍କର ଅନୁଗୁଳ ସନ୍ନିକଟ ଚମ୍ପତିମୁଣ୍ଡା ସ୍କୁଲର ଅଭିନବ ପରୀକ୍ଷା ଜାଣିବାକୁ ପାଇଥିଲି । ଧୀରେ ଧୀରେ ତାଙ୍କର ଲିଖିତ 'ଜୀବନ ବିଦ୍ୟାଳୟ', 'ଜଙ୍ଗଲ ଚିଠି', 'ଗଞ୍ଜାମ ମାଳରେ ସାତଦିନ', 'ଶିଳା ଓ ଶାଳଗ୍ରାମ' ଆଦି ବହି ପଢ଼ିବାକୁ ସୁଯୋଗ ମିଳିଲା । ବାଣୀବିହାର ଛାତ୍ର ଜୀବନରେ ଆମେ କେତେଜଣ ତାଙ୍କର ଶ୍ରୀଅରବିନ୍ଦଙ୍କ ବହି ଉପରେ ଦେଉଥିବା ପ୍ରବଚନ ଓ ବିଶ୍ଳେଷଣ ଖୁବ୍ ଆଗ୍ରହର ସହ ଶୁଣୁଥିଲୁ । ତାଙ୍କୁ ମଧ୍ୟ ଆମେ ବିଖ୍ୟାତ ଗୁରୁ ଓ ବୁଦ୍ଧିଜୀବୀ କୃଷ୍ଣ ମୂର୍ତ୍ତିଙ୍କ ସହ ତୁଳନା କରିବାକୁ ପଛାଉନଥିଲୁ । ବାସ୍ତବରେ ଆମେ ଆମର ବୌଦ୍ଧିକ ପରିସରରେ ତାଙ୍କୁ ପଥପ୍ରଦର୍ଶକ ବୋଲି ସ୍ୱୀକାର କରୁଥିଲୁ । 'ଶିଳାତୀର୍ଥ' ବହି ମୁଁ ଅନେକ ଥର ପଢ଼ିଛି ଓ କେତେ କପି ବିଭିନ୍ନ ବନ୍ଧୁଙ୍କୁ ଉପହାର ମଧ୍ୟ ଦେଇଛି । ଆମ ସମସ୍ତଙ୍କର ମନରେ ଗୋଟିଏ କଥା ଆଲୋକପାତ କରିଥିଲା- ଚରୈବେତି ଚରୈବେତି । ଆଗକୁ ଚାଲ, ଆଗେଇ ଚାଲ । 'ଜୀବନ ବିଦ୍ୟାଳୟ'ରୁ ଚମ୍ପତିମୁଣ୍ଡାର ପରୀକ୍ଷା ମୂଳକ ସ୍କୁଲ କଥା ପଢ଼ିଲାପରେ ଆମେ କେତେଜଣ ଗୋଟାଏ ସ୍କୁଲ ଆଦିବାସୀ ଅଞ୍ଚଳରେ ଖୋଲିବାକୁ ସ୍ୱପ୍ନ ଦେଖୁଥିଲୁ । ଆମେ ଶ୍ରଦ୍ଧାରେ ତାଙ୍କୁ ଚିତ୍ତଭାଇ ବୋଲି ଡ଼ାକୁଥିଲୁ, କିନ୍ତୁ ବ୍ୟକ୍ତିଗତ ପରିଚୟ ନଥିଲା ତାଙ୍କ ସହ । ସେ ମଧ୍ୟ ଆମକୁ ଜାଣି ନଥିଲେ । କିନ୍ତୁ ସେ ଜଣେ ଆପଣାର ମଣିଷ ଥିଲେ ଆମ ସମସ୍ତଙ୍କ ପାଇଁ ।

ଚମ୍ପତିମୁଣ୍ଡାର 'ଜୀବନ ବିଦ୍ୟାଳୟ' ଶିକ୍ଷା, ପରିବର୍ତ୍ତନ ଓ ମାନବିକ ମୂଲ୍ୟବୋଧ ଉପରେ ଆଧାରିତ ଥିଲା । ଡ଼େନମାର୍କର ବିଶପ୍ ଗ୍ରୁଣ୍ଡଭିଗଙ୍କ ମୌଳିକ ଚିନ୍ତନକୁ ପୁଞ୍ଜିକରି ଏ 'ଜୀବନ ବିଦ୍ୟାଳୟ'ର ପରିକଳ୍ପନା କରାଯାଇଥିଲା । ଚିତ୍ତ ଭାଇ 'ଜୀବନ ବିଦ୍ୟାଳୟ'ର ମୁଖବନ୍ଧରେ ଲେଖିଛନ୍ତି ;

"ଜାତୀୟ ସଂସ୍କୃତି ଓ ମାନବିକ ଶ୍ରଦ୍ଧାର ଆଧାର ଉପରେ
ଯେଉଁ ବିଦ୍ୟାଳୟର ଛାତ୍ର ଆପଣାର ଜୀବନ ପଥ ଆବିଷ୍କାର କରିପାରିବ,
ବିଚାର ଓ ବିଶ୍ୱାସର ସହିତ ଯେଉଁଠି ମୂଲ୍ୟ ନିରୂପଣ
କରିବାର ଶକ୍ତି ସେ ଅର୍ଜନ କରିପାରିବ, ଅନ୍ୱେଷଣ
ଲବ୍‌ଧ ସକଳଜ୍ଞାନକୁ ଯେଉଁଠି ସେ ପ୍ରଧାନତଃ ଅଧିକ ଅନ୍ୱେଷଣର

ସାଧନରୂପେ ବ୍ୟବହାର କରି ଶିଖିବ, ଏଇପରି ଗୋଟିଏ ବିଦ୍ୟାଳୟର ସ୍ୱପ୍ନ ଦେଖିଥିଲେ । କୌଣସି ଏକ ନିର୍ଦ୍ଦିଷ୍ଟ ସଂସ୍କାର ବା ଶାସନର ଅନୁଗତ କରି ମଣିଷକୁ ତିଆରି କରିବାର ନିକୃଷ୍ଟ ପ୍ରୟାସକୁ ଶିକ୍ଷା କୁହାଯାଇ ପାରିବ ନାହିଁ । ସକଳ ସଂସ୍କାର ଓ ଶାସନକୁ ସାଧନ ରୂପେ ବ୍ୟବହାର କରି ନୂଆ ସୃଷ୍ଟି କରିପାରିବାର ଶକ୍ତିମାନ୍ ମଣିଷ ଗଢ଼ିବାରେ ହିଁ ଶିକ୍ଷାର ଗୌରବ ।

'(ଜୀବନ ବିଦ୍ୟାଳୟ)' ୨୫-୭-୧୯୫୭"

କାଶୀପୁରରେ ଶିକ୍ଷା ଆନ୍ଦୋଳନ ଆରମ୍ଭ କରିବାକୁ ହେଲେ ଏକଥାରେ ବିଶ୍ୱାସ କରିବାକୁ ପଡିବ ବୋଲି ମୁଁ ଜାଣିଥିଲି । କିନ୍ତୁ କାଶୀପୁରରେ ଶିକ୍ଷା ଆନ୍ଦୋଳନ କାହିଁକି ? ଶିକ୍ଷା ସହ ସମାଜ ପରିବର୍ତ୍ତନର କି ସମ୍ପର୍କ ରହିଛି ? ଏଠାରେ ଶିକ୍ଷାର ଆଭିମୁଖ୍ୟ କ'ଣ ହେବ ? ଆଦିବାସୀ ପିଲାଟିର ଜୀବନ ସେ ଓ ତା'ପରିବାରରେ ଔପଚାରିକ ଶିକ୍ଷାର ଗୁରୁତ୍ୱ କ'ଣ ଅଛି ? ଏସବୁ ପ୍ରଶ୍ନ ଆମେ ନିଜକୁ ୧୯୮୧ ମସିହାରେ ପଚାରିଥିଲୁ । ଆମ ସର୍ଭେକ୍ଷଣରୁ ଜଣାପଡିଥିଲା ଯେ କାଶୀପୁରରେ ୧୨୦ଟି ପ୍ରାଥମିକ ଶିକ୍ଷାକେନ୍ଦ୍ର ପ୍ରତିଷ୍ଠା ହୋଇଛି । ଦୁଇଟି ହାଇସ୍କୁଲ । ଦୁଇଟି କନ୍ୟାଶ୍ରମ । ଗୋରଖପୁରଠାରେ ଆବାସିକ ହାଇସ୍କୁଲ । ଡଙ୍ଗାସିଲ୍‌ରେ ଆବାସିକ ବାଳିକା ବିଦ୍ୟାଳୟ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ । କାଶୀପୁରରେ ଆଦିବାସୀଙ୍କ ସାକ୍ଷରତା ହାର ଶତକଡ଼ା କୋଡ଼ିଏ ବି ନଥାଏ । ମହିଳା ସାକ୍ଷରତା ଅନେକ ଗାଁରେ ଶତକଡ଼ା ଶୂନ । ହରିଜନ ଓ ଉଚ୍ଚବର୍ଗର ପିଲାମାନେ କେବଳ ସ୍କୁଲକୁ ପାଠ ପଢ଼ିବାକୁ ଆସନ୍ତି । ଅନେକ ସ୍କୁଲରେ ମାଷ୍ଟ୍ର ନଥାନ୍ତି । ଗାଁମାନଙ୍କରେ ସ୍କୁଲଘର ଅର୍ଦ୍ଧନିର୍ମିତ ଅବସ୍ଥାରେ ପଡ଼ିଥାଏ । ମାଷ୍ଟ୍ରମାନେ ଅଣଆଦିବାସୀ ଓ ଉପକୂଳ ଜିଲ୍ଲାମାନଙ୍କରୁ ଆସିଥାଆନ୍ତି । ଦୁର୍ଗମ ଗ୍ରାମମାନଙ୍କରେ ସେମାନଙ୍କର ରହିବା ସମ୍ଭବ ହେଉ ନଥିଲା ଓ ସେମାନେ କାଶୀପୁର ବା ରାୟଗଡ଼ାରେ ରହୁଥିଲେ । ଦରମା ନେବାକୁ ବେଳେବେଳେ ସେମାନେ ମୁହଁ ଦେଖାଉଥିଲେ । ଶିକ୍ଷକମାନେ ପ୍ରାୟତଃ ବିଭିନ୍ନ ବ୍ୟବସାୟ ଓ ମହାଜନି କାରବାର ସହ ସମ୍ପୃକ୍ତ ରହି ବେଶ୍ ଲାଭ ଉଠାଉଥିଲେ । କେତେ ଗାଁରେ ଶିକ୍ଷକମାନେ ଠିକାଦାରର ଭୂମିକାରେ ଅବତୀର୍ଣ୍ଣ ହେଉଥିଲେ । ଶିକ୍ଷକମାନେ ତାଙ୍କର ଉପରିସ୍ଥ ହାକିମଙ୍କୁ ଖୁସିକରି ରଖୁଥିଲେ ଓ ଦରମା ମିଳିବାରେ କେବେ ବି ଅସୁବିଧା ହେଉନଥିଲା । ଯଦି କେବେକେବେ ଜିଲ୍ଲାପାଳ ପରିଦର୍ଶନରେ ଆସୁଥିଲେ ଶିକ୍ଷକମାନଙ୍କୁ ଆଗରୁ ସୂଚନା ମିଳି ଯାଉଥିଲା ଓ ସେମାନେ ଗ୍ରାମମାନଙ୍କରେ ଉପସ୍ଥିତ ରହି ଦିନେ ଦୁଇଦିନ ପାଇଁ ସ୍କୁଲ ଚଳାଇ ରଖୁଥିଲେ । ଗ୍ରାମବାସୀମାନେ କେବେ ଶିକ୍ଷକ କାହିଁକି ରହୁନାହିଁ ଓ ପାଠ ପଢ଼ାଉ ନାହିଁ ବୋଲି ଦିନେ ହେଲେ ବି ପଚାରୁ ନଥିଲେ । କାରଣ ବାପାମାଆ ପିଲାମାନଙ୍କୁ ସ୍କୁଲ ନପଠାଇ ବିଭିନ୍ନ କାମରେ ଲଗାଉଥିଲେ । ଝିଅପିଲା ହେଲେ ଛୁଆ ଧରିବ, ପାଣି ଆଣିବ, ଜଙ୍ଗଲ ଚାଷ ବା ପୋଡୁ ଚାଷ କରିବାକୁ କୋଦାଳ ଧରି ବାହାରିବ ଓ ମାଆକୁ ରୋଷେଇରେ ସାହାଯ୍ୟ କରିବ । ପୁଅ ପିଲା ହେଲେ ଗାଁରେ ଛେଳି ଚରାଇବ, ହଳ ଧରିବ,

ପୋତ୍ରରକ୍ଷ କରିବ ନହେଲେ କେଉଁ ସାହୁକାର ପାଖେ ଗୋତି ଖଟିବ । ଧରାକାରୀ ଶିକ୍ଷାର ମୂଲ୍ୟ କିଛି ନାହିଁ ବୋଲି ଆଦିବାସୀ ଭାବୁଥିଲା । ପିଲା ସ୍କୁଲ ଗଲେ ବି ଶିକ୍ଷକର ଭାଷା ବୁଝି ପାରୁନଥିଲା । ସିଲଟ, ବହି, ପୋଷାକ ଆଦି କିଣିବାକୁ ପରିବାରର ଅର୍ଥ ଯୋଗାଡ଼ କରିବା ସମ୍ଭବ ନଥିଲା । ତେଣୁ ଦିନ ସ୍କୁଲ ଗୁଡିକ ପ୍ରାୟ ବନ୍ଦ ରହୁଥିଲା ।

ସରକାରଙ୍କ ଶିକ୍ଷା କାର୍ଯ୍ୟକ୍ରମ ବସ୍ତୁତଃ ଫେଲ ମାରିଥିଲା । ପରିବାରଟି ଯେତେବେଳେ ଅର୍ଦ୍ଧାଧିକ ଦିନ ଭୋକ ଉପାସରେ ରହୁଥିଲା, ଶିକ୍ଷାର ମୂଲ୍ୟ ବା କ'ଣ ଥିଲା ତା' ପାଇଁ ? ଅନ୍ୟପକ୍ଷରେ ପିଲାମାନେ ଘରର ଆର୍ଥିକ ସ୍ତର କିଛି ମାତ୍ରାରେ ବଢ଼ାଉଥିଲେ ବଭିନ୍ନ ବାଟରେ । ଏହା ବାପାମାଆଙ୍କ ପାଇଁ ଖୁବ୍ ଖୁସିର କଥା ଥିଲା । ଏପରିକି ଗୋତି ହେଲେ ପିଲାଟି ସାହୁକାର ଘରେ ଖାଇବ ଓ ପରିବାର ଉପରେ ବୋଝ ହେବ ନାହିଁ । ଏହା ମଧ୍ୟ ଶ୍ରେୟସ୍କର ଥିଲା ଅନେକ ପରିବାର ପାଇଁ । ଯେଉଁ ଆଦିବାସୀ ପରିବାର ସ୍ୱଚ୍ଛଳ ଥିଲେ, ସେମାନେ ସେମାନଙ୍କର ପିଲାମାନଙ୍କୁ ଆବାସିକ ବିଦ୍ୟାଳୟମାନଙ୍କୁ ପଠାଉଥିଲେ । ଆଦିବାସୀ ବିଭାଗ ଦ୍ୱାରା ପରିଚାଳିତ ଏ ସ୍କୁଲମାନଙ୍କରେ ପିଲାଙ୍କୁ ମାଗଣାରେ ଖାଇବା, ବହିପତ୍ର ଓ ପୋଷାକ ଆଦି ଯୋଗାଇ ଦିଆଯାଉଥିଲା । ତେଣୁ ଶିକ୍ଷା ପରିବାର ଉପରେ ପ୍ରାୟ ବୋଝ ହେଉ ନଥିଲା । କିନ୍ତୁ ଏ ଆବାସିକ ବିଦ୍ୟାଳୟରୁ କ୍ୱଚିତ୍ ପୁଅ ବା ଝିଅ ମାଟ୍ରିକ୍ ପର୍ଯ୍ୟନ୍ତ ପଢୁଥିଲେ । କାରଣ ନିୟମଥିଲା ଯେ ସ୍କୁଲ ପରୀକ୍ଷାରେ ଫେଲ୍ ହେଲେ ଛାତ୍ରକୁ ଆଉଥରେ ପଢ଼ିବାକୁ ସୁଯୋଗ ମିଳୁନଥିଲା । ଆବାସିକ ବିଦ୍ୟାଳୟରେ ଛାତ୍ର ଛାତ୍ରୀ ସଂଖ୍ୟାକୁ ବିଶ୍ଳେଷଣ କରିଥିଲୁ ଆମେ ୧୯୮୧ ମସିହାରେ । ଦେଖା ଯାଇଥିଲା ଯେ ଆଦିବାସୀମାନଙ୍କ ଅପେକ୍ଷା, ହରିଜନମାନେ ଏହାର ଲାଭ ଉଠାଇଛନ୍ତି ଓ ଅଧିକାଂଶ ଶିକ୍ଷକ ଆଦିବାସୀ ନୁହଁନ୍ତି । ଆବାସିକ ବିଦ୍ୟାଳୟରେ ନାମ ଲେଖାଇବା ପାଇଁ ପ୍ରତିଯୋଗିତା ହୁଏ ଓ ଲାଞ୍ଚ ଦେବା ନେବା ମଧ୍ୟ ଚାଲେ । ଆଦିବାସୀମାନେ ଏ ପ୍ରତିଯୋଗିତାରେ ଫେଲ୍ ମାରନ୍ତି । ଗାଁମାନଙ୍କରେ ଅଣମାଟ୍ରିକ୍ ଯୁବକ ଅନେକ ଦେଖିବାକୁ ମିଳୁଥିଲେ । ସେମାନଙ୍କ ଠାରୁ ଆବାସିକ ବିଦ୍ୟାଳୟମାନଙ୍କର ପରିଚାଳନା ଓ ଗୁଣାତ୍ମକ ଶିକ୍ଷା ସମ୍ବନ୍ଧରେ ଅନେକ ଉପାଦେୟ ତଥ୍ୟ ଆମକୁ ମିଳୁଥିଲା । ସରକାର କାହିଁକି ଯଥେଷ୍ଟ ସଂଖ୍ୟାରେ ଆବାସିକ ବିଦ୍ୟାଳୟ ଖୋଲୁ ନାହାଁନ୍ତି ସେ ପ୍ରଶ୍ନ ଆମେ ପଚାରୁଥିଲୁ । ଶିକ୍ଷା ବିଭାଗ ଓ ଆଦିବାସୀ ବିଭାଗ ଦ୍ୱାରା ଆଦିବାସୀମାନଙ୍କ ଶିକ୍ଷା ପାଇଁ ଖର୍ଚ୍ଚ ହେଉଥିଲା ଅନେକ, କିନ୍ତୁ ଫଳ ସେଇ ଅନୁପାତରେ ନଗଣ୍ୟ ଥିଲା । ଏହାର ମୂଳକାରଣ ଅନୁପଯୋଗୀ ଶିକ୍ଷା ବ୍ୟବସ୍ଥା ହିଁ ଥିଲା । ବିକଳ୍ପ ଶିକ୍ଷାର ଚିନ୍ତନ ଆମ ପାଇଁ ଅପରିହାର୍ଯ୍ୟ ହୋଇପଡିଥିଲା ।

କିନ୍ତୁ କାଶୀପୁର ଭଳି ଅବହେଳିତ ଓ ଅନୁନ୍ନତ ଅଞ୍ଚଳରେ ବିକଳ୍ପ ଶିକ୍ଷାର ପରିକଳ୍ପନା କ'ଣ ହୋଇପାରେ ? ଏଥିପାଇଁ ଚିତ୍ତଭାଇଙ୍କ ସହ ସମ୍ପର୍କ ସ୍ଥାପନ କରି, ତାଙ୍କର ମତାମତ ନେବା ଖୁବ୍ ଜରୁରୀ ହୋଇପଡିଥିଲା । କଟକର ବନ୍ଧୁ ଶ୍ରୀ ପ୍ରଫୁଲ୍ଲ ବେହେରା ଖବର ଦେଉଥିଲେ ଯେ ଚିତ୍ତ ଭାଇ ମେଡିକାଲ୍ କଲେଜର କ୍ୟାନ୍‌ସର ୱାର୍ଡ଼ ଫ୍ଲାଟ୍‌ରେ ରହୁଛନ୍ତି । ଯୋଗାଯୋଗ କରିବା ସହଜ । ପ୍ରଫୁଲ୍ଲ ଚିତ୍ତଭାଇଙ୍କୁ ମୋ ବିଷୟରେ କହି ସାରିଥିଲା ଓ ମୁଁ କିପରି ତାଙ୍କୁ ଭେଟିବାକୁ ଉଦ୍‌ଗ୍ରୀବ ତାହା ମଧ୍ୟ ଜଣାଇଥିଲା । ସମୟ ଓ ସୁଯୋଗ ଦେଖି ଚିତ୍ତଭାଇଙ୍କ ସହ

ଗୋଟାଏ ଅପରାହ୍ନରେ ଦେଖାହେଲା । ସାଥୀରେ ପ୍ରଫୁଲ୍ଲ ଥାଏ । ଚିତ୍ତଭାଇ ଖୁବ୍ ଆନନ୍ଦରେ ଆମକୁ କହିବାକୁ ସୁଯୋଗ ଦେଉଥିଲେ । ମୁଁ କାଶୀପୁରରେ କ'ଣ କରୁଛି ଓ ଆମର ଆଭିମୁଖ୍ୟ କ'ଣ ଶୁଣାଉଥାଏ । ରାଜସ୍ଥାନର ତିଲୋନିଆରେ ସମାଜ କାର୍ଯ୍ୟ ଓ ଅନୁସନ୍ଧାନ ସଂସ୍ଥା ତରଫରୁ 'ଶିକ୍ଷାକର୍ମୀ' ନାମକ ଏକ ପରୀକ୍ଷାମୂଳକ କାର୍ଯ୍ୟକ୍ରମର ମୋର ଅନୁଭୂତି ମୁଁ ଚିତ୍ତ ଭାଇଙ୍କୁ କହିଥିଲି । ରାଜସ୍ଥାନରେ ଶିକ୍ଷା ବିଶେଷ କରି ମହିଳା ଶିକ୍ଷା ବହୁତ ପଛରେ ପଡିଥାଏ ସେତେବେଳେ । ସରକାରୀ ବିଦ୍ୟାଳୟଗୁଡିକରେ ଶିକ୍ଷାଦାନ ବ୍ୟବସ୍ଥାରେ ବହୁତ ତ୍ରୁଟି ଥାଏ । କିନ୍ତୁ ରାଜସ୍ଥାନର ଆଜମୀର୍ ଜିଲ୍ଲାରେ ଅଧିକାଂଶ ପିଲା (ପୁଅ ଓ ଝିଅ) ଗାଈ, ଛେଳି, ମେଣ୍ଢା ଆଦି ଚରାଇବାରେ ଦିନ ସାରା ବ୍ୟସ୍ତ ରହନ୍ତି ଓ ସ୍କୁଲରେ ପାଠ ପଢ଼ିବା ସମ୍ଭବ ହୁଏ ନାହିଁ । ବାପା ମାଆମାନେ ମଧ୍ୟ ଏଥିପାଇଁ ପୁଅ ଝିଅଙ୍କୁ ସ୍କୁଲକୁ ପଠାନ୍ତି ନାହିଁ । ତିଲୋନିଆରେ ଦୁଇଟି ପରୀକ୍ଷା ଆରମ୍ଭ ହୋଇଥିଲା ଶିକ୍ଷାକାର୍ଯ୍ୟକ୍ରମରେ । ଗୋଟିଏ ହେଲା ଯେ, ପିଲାଙ୍କ ପାଇଁ ଦିନରେ ନହୋଇ ରାତ୍ରିରେ ସ୍କୁଲ ଚାଲିଥିଲା । ଏହାକୁ ରାତ୍ରି ପାଠାଶାଳା କୁହାଯାଉଥିଲା । ଏଥିରେ ପାଠ ପଢ଼ାଇବା ପାଇଁ ଗାଁରେ ଜଣେ ମାଟ୍ରିକ୍ ଫେଲ୍ ଯୁବକ ବା ଯୁବତୀଙ୍କୁ ଶିକ୍ଷକ ପାଇଁ ଚୟନ କରାଯାଇଥିଲା ଓ ତାଙ୍କୁ ଉଚିତ୍ ଟ୍ରେନିଂ ଦେଇ ଶିକ୍ଷାକର୍ମୀ ଭାବେ ନାମିତ କରାଯାଉଥିଲା । ଗ୍ରାମବାସୀ ସମ୍ମତି ଦେଉଥିଲେ ଯେ ରାତ୍ରି ପାଠଶାଳା ଚାଲିବାକୁ ସମସ୍ତ ସୁଯୋଗ ଦିଆଯିବ । ସବୁ ପରିବାରରୁ ପୁଅ ଝିଅମାନେ ପାଠ ପଢ଼ିବାକୁ ଆସିବେ । ତିଲୋନିଆ ବହି ଖାତା, ଲ୍ୟାମ୍ପ୍ ଓ କିରୋସିନ ତେଲ, ଶିକ୍ଷାକର୍ମୀର ଦରମା ଆଦି ଦେବ ।

ଏହାର ପ୍ରଭାବରେ ଗାଁମାନଙ୍କରେ ବହୁତ ଉତ୍ସାହ ଦେଖା ଯାଇଥିଲା । ଯେଉଁ ଗାଁ ବା ବସ୍ତିରେ ଦିନ ସ୍କୁଲ ଚାଲୁ ନଥିଲା, ସେଠାରେ ରାତ୍ରି ପାଠଶାଳା ଖୁବ୍ ଆଦୃତ ହେଉଥିଲା ଓ ପିଲାମାନେ ଖୁବ୍ ଆଗ୍ରହର ସହ ରହୁଥିଲେ । ତିଲୋନିଆରେ ପାଠ୍ୟକ୍ରମ, ଶିକ୍ଷଣ-ପଠନ ସାମଗ୍ରୀ ଓ ଅନ୍ୟାନ୍ୟ ଆବଶ୍ୟକୀୟ ଉପାଦାନ ପ୍ରସ୍ତୁତ କରାଯାଇଥିଲା । ରାଜସ୍ଥାନରେ ଏହା ଏକ ବିକଳ୍ପ ଶିକ୍ଷା ହିସାବରେ ପ୍ରତିଷ୍ଠା ଲାଭ କରିଥିଲା । ଏହି ଶିକ୍ଷା କାର୍ଯ୍ୟକ୍ରମ ଦେଖିବା ପାଇଁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରୁ ବିଶେଷଜ୍ଞମାନେ ତିଲୋନିଆ ଆସୁଥିଲେ ଓ ଖୁବ୍ ପ୍ରଭାବିତ ହେଉଥିଲେ । ମୋତେ ଭଲ ଲାଗୁଥିଲା ଛୋଟ ଛୋଟ ପୁଅ ଝିଅଙ୍କ ନିଜସ୍ୱ ପରିପ୍ରକାଶ ପାଇଁ ଆନ୍ତରିକ ଉଦ୍ୟମ । ରାଜସ୍ଥାନରେ ଛୁଆଁ ଅଛୁଆଁ ଭାବ ବିଶେଷ ପରିଲକ୍ଷିତ ହେଉଥିଲେ ମଧ୍ୟ, ରାତ୍ରି ପାଠଶାଳାରେ ଭିନ୍ନ ପରିବେଶ ଥିଲା । ଅକ୍ଷର ଓ ଗଣିତ ଶିକ୍ଷା ସହ, ସ୍ୱାସ୍ଥ୍ୟ, କୃଷି, ପରିବେଶ ଶିକ୍ଷା ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ସନ୍ଧ୍ୟାରେ ଦୁଇତିନି ଘଣ୍ଟାରେ ଶିକ୍ଷାକର୍ମୀମାନେ ପିଲାମାନଙ୍କୁ ଅନେକ ଜ୍ଞାନ ଦେଇ ପାରୁଥିଲେ । ଶିକ୍ଷାକର୍ମୀମାନଙ୍କୁ ନିୟମିତ ପ୍ରଶିକ୍ଷଣ ଦିଆ ଯାଉଥିଲା ଓ ସେମାନେ ନିଜର ଦକ୍ଷତା ଓ ଶିକ୍ଷାଦାନ ପ୍ରତିଭା ବଢ଼ାଉଥିଲେ ନିୟମିତ ଭାବେ ।

କାଶୀପୁରରେ ବିପର୍ଯ୍ୟସ୍ତ ଶିକ୍ଷା ବ୍ୟବସ୍ଥା ଓ ସରକାରୀ ଶିକ୍ଷାପ୍ରତି ଆଦିବାସୀଙ୍କ ଅନାଗ୍ରହକୁ ପରିଲକ୍ଷିତ କରି ତିଲୋନିଆର 'ଶିକ୍ଷାକର୍ମୀ' ଢ଼ାଞ୍ଚାରେ ରାତ୍ରି ପାଠଶାଳା ଆରମ୍ଭ କରିବାକୁ ମୁଁ ମନସ୍ଥ କରିଛି ବୋଲି ଚିତ୍ତଭାଇଙ୍କୁ ଜଣାଇଥିଲି । ଏହା ଉପରେ ଖୁବ୍ ଚର୍ଚ୍ଚା ହେଲା ଓ

ପ୍ରତ୍ୟେକଟି ଉପାଦାନ ଉପରେ ଚିତ୍ତଭାଇ ମତାମତ ଦେଇଥିଲେ । ଶିକ୍ଷକ ଯେ ଛାତ୍ରର ଭାଷାରେ (ଆଦିବାସୀ ଭାଷାରେ) ପାଠ ପଢ଼ାଇବ ଏହା ଚିତ୍ତଭାଇ ଜାଣି ଖୁବ୍ ଖୁସି ହୋଇଥିଲେ । କାରଣ ଭାଷାର ବୋଧଗମ୍ୟତା ଉପରେ ଛାତ୍ରର ଜ୍ଞାନ ଆହରଣ ନିର୍ଭର କରୁଛି । ପାଠ୍ୟକ୍ରମ ବିଷୟରେ ଆମର ମଧ୍ୟ ସେଦିନ ଭାବ ବିନିମୟ ହୋଇଥିଲା । ଚିତ୍ତ ଭାଇ ଆଦିବାସୀ ଅଞ୍ଚଳର ସାମାଜିକ, ଆର୍ଥିକ, ରାଜନୈତିକ ଓ ସାଂସ୍କୃତିକ ପରିବେଶ ସହ ଖୁବ୍ ପରିଚିତ ଥିଲେ । ଆମର ପ୍ରସ୍ତାବିତ ଶିକ୍ଷା କାର୍ଯ୍ୟକ୍ରମରେ ସମାଜ ପରିବର୍ତ୍ତନର ପ୍ରକ୍ରିୟା ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇଥିବା କଥା ସେ ସେଦିନ ସନ୍ଧ୍ୟାରେ ଅନୁଭବ କରିଥିଲେ । ଆମର ଶିକ୍ଷା କାର୍ଯ୍ୟକ୍ରମର ଉପଦେଷ୍ଟା ହେବାକୁ ସେ ଆଗ୍ରହ ପ୍ରକାଶ କରିଥିଲେ ।



# ୧୫

କାଶୀପୁରରର ଶିକ୍ଷା ସମସ୍ୟା କଥା ଚିତ୍ତଭାଇଙ୍କ ସହ ଆଲୋଚନା ସବୁବେଳେ ହେଉଥିଲା । ଆଦିବାସୀ ଅଞ୍ଚଳରେ ଶିକ୍ଷା କହିଲେ ଆମକୁ ସେ ତିନୋଟି ବିଷୟରେ ବୌଦ୍ଧିକ ସ୍ୱଚ୍ଛତା ରହୁ ବୋଲି ବାରମ୍ବାର କହୁଥିଲେ । ପ୍ରଥମଟି ହେଲା, ଶିକ୍ଷକ ଓ ଶିକ୍ଷାଦାନ ପଦ୍ଧତି, ଶିକ୍ଷାର ବିଷୟବସ୍ତୁ ଓ ତୃତୀୟଟି ଥିଲା ଶିକ୍ଷାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ । ଚିତ୍ତଭାଇଙ୍କ ଠାରୁ ୟୁନେସ୍କୋ ଦ୍ୱାରା ପ୍ରକାଶିତ ବହି 'ଲର୍ଣ୍ଣିଙ୍ଗ ଟୁ ବି' (Learning To Be)ର ସୂଚନା ମିଳିବା ମାତ୍ରେ, ସେ ବହି ମୁଁ ପଢ଼ିଥିଲି । ଚିତ୍ତଭାଇ ତାଙ୍କ 'ଜୀବନ ବିଦ୍ୟାଳୟ'କୁ ଆଧାର କରି ରୁଷିଆର ବିଖ୍ୟାତ ଶିକ୍ଷକ ସୁଖ୍ମଲିନ୍‌ସ୍କି (Sukhomlinsky)ଙ୍କ ଲିଖିତ To Children, ଓ give my heart ଗାନ୍ଧୀଜୀଙ୍କ ବେସିକ୍ ଏଜୁକେସନ୍ (Basic Education) ମାକାରେଙ୍କୋଙ୍କ ଲିଖିତ Road to life. An Epic and Education 'ଜେ କୃଷ୍ଣମୂର୍ତ୍ତିଙ୍କ 'On Education' ଶ୍ରୀ ଅରବିନ୍ଦଙ୍କ ଶିକ୍ଷା ସମ୍ବନ୍ଧୀୟ ବହି, ତାଞ୍ଜାନିୟାର ଜନନେତା ଜୁଲିୟସ୍ ନିରେସ୍‌ଙ୍କ ଲିଖିତ 'Education for Self-reliances' ଜାନୁସ୍ କରଜାକ୍ (Janus Korjak) ଙ୍କ ଲିଖିତ When ଓ again became small ବହିଗୁଡ଼ିକ କଥା ଦେଖାସାକ୍ଷାତରେ ଆଲୋଚନା କରୁଥିଲେ ଓ ଆଦିବାସୀ ପିଲାଙ୍କ ଶିକ୍ଷାର ବିକାଶ ପାଇଁ ସେମାନଙ୍କୁ ଭଲ ପାଇବାକୁ ଆହ୍ୱାନ କରୁଥିଲେ । ଖାଲି ଆଦିବାସୀ ପିଲାଙ୍କୁ ନୁହେଁ, ସେମାନଙ୍କର ପରିବାରଙ୍କୁ, ସେମାନଙ୍କର ପୃଥିବୀକୁ, ସେମାନଙ୍କର ଭୂଗୋଳ ଓ ଇତିହାସକୁ ମଧ୍ୟ ଭଲ ପାଇବାକୁ ହେବ । ଆଦିବାସୀ ପିଲାଟି ମଧ ଏ ଦେଶର ସମାନ ଅଧିକାରରେ ଅଳଙ୍କୃତ ନାଗରିକ । ଆଦିବାସୀ ପିଲାଟି ପାଠ ପଢୁ, ଅଥଚ ଆଦିବାସୀପଣିଆ ନହଜାଇବସୁ । ଆଦିବାସୀର ଶିକ୍ଷାର ଉଦ୍ଦେଶ୍ୟ ନହେଉ ଯେ ସେ 'ଡିକୁ'ରେ ପରିଣତ ହୋଇଯାଉ । ଚିତ୍ତଭାଇ ତାଗିଦ୍ କରୁଥିଲେ ବାରମ୍ବାର ଓ 'ଡିକୁ'ର ଏକ ସମ୍ୟକ ପରିଚୟ ଦେଉଥିଲେ । ପ୍ରତିକଥାରେ ଚମ୍ପତିମୁଣ୍ଡାର 'ଜୀବନ ବିଦ୍ୟାଳୟ' ଓ ତାଙ୍କର ପ୍ରିୟଛାତ୍ରମାନଙ୍କର ଅଭୁଲା ସ୍ମୃତି ସବୁ ଆମ ଆଗରେ ଆଲୋଚନା କରୁଥିଲେ । ଚିତ୍ତଭାଇ ମଧ କେତେବାର ଆବାସିକ ବିଦ୍ୟାଳୟଟିଏ କାଶୀପୁରରେ ପ୍ରତିଷ୍ଠା କରିବାର ପ୍ରସ୍ତାବ ଦେଇଥିଲେ ଯେଉଁଥିରେ ମୁଁ ଏକମତ ହୋଇନଥିଲି । ଆଦିବାସୀ ଓ ତାର ପରିବାର ଓ ପିଲାଛୁଆ ସମସ୍ତଙ୍କୁ ଆମେ ଆପଣାର କରିପାରିଲେ ଶିକ୍ଷା ଆପେ ଆପେ ହୋଇଯିବ । ଏଇଥିପାଇଁ ଆମକୁ ଆଦିବାସୀ ଭାଷା ଶିଖିବାକୁ ହେବ ଓ ଆଦିବାସୀ ଆଗରେ ଆମର ଜଟିଳ ଓ ଦୁର୍ବୋଧ୍ୟ ମୂଲ୍ୟବୋଧକୁ ସମାଧି ଦେବାକୁ ହେବ । ଚିତ୍ତଭାଇଙ୍କ ଶିକ୍ଷା ସମ୍ବନ୍ଧରେ ଏକ ସ୍ୱପ୍ନ ଥିଲା । ଏକ ଦୂରଦୃଷ୍ଟି ଥିଲା । ମୁକ୍ତି ଓ ସ୍ୱାଧୀନତା ହାସଲ କରିବାକୁ ହେଲେ ଶିକ୍ଷା ଯେ ଏକମାତ୍ର ଅସ୍ତ୍ର, ସେ କଥା ଚିତ୍ତଭାଇ ପ୍ରାଞ୍ଜଳ ଭାବେ ଆମକୁ ବୁଝାଇଥିଲେ । ସରକାରୀ

ସହାୟତାରେ କାଶୀପୁରରେ ଶିକ୍ଷାକାର୍ଯ୍ୟକ୍ରମ ଆରମ୍ଭ ହେବା କଥାକୁ ସେ ପସନ୍ଦ କରୁନଥିଲେ । ମୁଁ କିନ୍ତୁ ଯୁକ୍ତି କରୁଥିଲି ଯେ, ଶିକ୍ଷା ବ୍ୟବସ୍ଥାରେ ଉନ୍ନତି ଆଣିବାକୁ ହେଲେ ସରକାରଙ୍କ ଶିକ୍ଷାନୀତିକୁ ବୁଝିବାକୁ ହେବ ଓ ସରକାରଙ୍କ ସାକ୍ଷରତା ଅଭିଯାନ ଓ ଶିକ୍ଷାନୀତିର ପ୍ରୟୋଗକୁ ସଫଳ କରିବାକୁ ହେବ । ଚିତ୍ତଭାଇ କିନ୍ତୁ ଭାରତର ବିଖ୍ୟାତ ଶିକ୍ଷାବିତ୍ ଡକ୍ଟର ଜେ.ପି. ନାୟକ କିପରି ସରକାରୀ କଳ ଭିତରେ ବନ୍ଦି ହୋଇଥିଲେ ତାହାର ଉଦାହରଣ ଦେଉଥିଲେ । ଚମ୍ପତିମୁଣ୍ଡା 'ଜୀବନ ବିଦ୍ୟାଳୟ' ସରକାରୀ ସାହାଯ୍ୟ ପାଇଲା ମାତ୍ରକେ କିପରି ଭିନ୍ନ ଢାଞ୍ଚାରେ ପଡିଗଲା ସେ କଥା ମଧ୍ୟ କହୁଥିଲେ । ସରକାରୀ ସ୍କୁଲ ଚାଲୁନାହିଁ ସତ, କିନ୍ତୁ ବିକଳ୍ପ ଶିକ୍ଷା, ନନ୍-ଫର୍ମାଲ ଶିକ୍ଷାକେନ୍ଦ୍ର ଆଜି ସରକାରୀ ଅନୁଦାନରେ ଚାଲିବାକୁ ସେ ପସନ୍ଦ କରୁନଥିଲେ । ଚିତ୍ତଭାଇ କାଶୀପୁରକୁ ଆସି ଆଦିବାସୀ ପିଲାଙ୍କ ସହ କଥାବାର୍ତ୍ତା କରି ଶିକ୍ଷା କାର୍ଯ୍ୟକ୍ରମର ଏକ ନିର୍ଦ୍ଦିଷ୍ଟ ରୂପରେଖ ଦେବାକୁ ଦୃଢ଼ ଇଛା ପ୍ରକାଶ କରିଥିଲେ ।

ଆମେ କିନ୍ତୁ କାଶୀପୁରରେ ୧୯୮୧ ମସିହାରେ ଶେଷବେଳକୁ ରାତ୍ରି ପାଠଶାଳା ଆରମ୍ଭ କରି ସାରିଥିଲୁ । ଆମର ଆଦିବାସୀ ଆନିମେଟର୍ ବା ସଚେତକମାନେ ସେମାନଙ୍କର ପ୍ରାଥମିକ ଟ୍ରେନିଂ ନେଇ ସାରିଥାନ୍ତି । ପାଞ୍ଚୋଟି ଗାଁରେ ପାଞ୍ଚ ଜଣ ଅର୍ଦ୍ଧଶିକ୍ଷିତ ଯୁବକଙ୍କୁ ନେଇ ନୂତନ ଢ଼ଙ୍ଗରେ ରାତ୍ରି ପାଠଶାଳା ଆଦିବାସୀ ପିଲାଙ୍କ ପାଇଁ ଆରମ୍ଭ କରିବା ନିଷ୍ପତ୍ତି ନିଆଯାଇଥିଲା । ଏ ଭିତରେ କାଶୀପୁରର ଶିକ୍ଷା ଓ ତାହାର ତାତ୍ପର୍ଯ୍ୟ ଆମେ ଗାଁରେ ଆଦିବାସୀଙ୍କ ପାଖରୁ ଜାଣିବାକୁ ଚାହିଁଥିଲୁ । ଶିକ୍ଷା ପ୍ରତି ଲୋକମାନଙ୍କର ଆଗ୍ରହ ଅଛିକି ନାହିଁ ଓ କେଉଁଭଳି ଶିକ୍ଷାର ଆବଶ୍ୟକତା ଅଛି ତାହା ନଜାଣିଲେ ଆଗକୁ ଆଗେଇ ହେବ ନାହିଁ । ଅନେକ ଗାଁରେ ସ୍କୁଲ ଥାଇ ମଧ୍ୟ ଶିକ୍ଷକ ଉପସ୍ଥିତ ରହୁ ନଥିବାରୁ ପିଲାମାନେ ମୂର୍ଖ ହୋଇ ଅଛନ୍ତି । ଏସ୍.ଆଇ. ବା ବି.ଡି.ଓଙ୍କୁ ଅଭିଯୋଗ କରିଲେ କିଛି ଫଳ ମିଳୁ ନାହିଁ । କାଶୀପୁରରୁ ଯାଇ କୋରାପୁଟ ଜିଲ୍ଲାପାଳଙ୍କୁ ଭେଟିବା କଠିନ ବ୍ୟାପାର । ବିଧାୟକ ଓ ଲୋକସଭା ସଦସ୍ୟଙ୍କ ଦୃଷ୍ଟି ଆକର୍ଷଣ କରିବା ଅସମ୍ଭବ । ମାସକୁ ମାସ ଶିକ୍ଷକ ଦରମା ପାଉଛି ଅଥଚ ଆଦିବାସୀ ଅଞ୍ଚଳରେ ଶିକ୍ଷା କିପରି ପ୍ରସାର ହେବ କାହାର ଦୃଷ୍ଟି ନାହିଁ । କିନ୍ତୁ ଆଦିବାସୀ ଭଲଭାବେ ଜାଣିଛି ଯେ ତାହାର ପିଲାଝିଲା ପଢ଼ିବା ପାଇଁ ସରକାରୀ ବ୍ୟବସ୍ଥା ଯଥେଷ୍ଟ ନୁହେଁ । ଦୂର ଆଦିବାସୀ ଆବାସିକ ବିଦ୍ୟାଳୟ ବା ଆଶ୍ରମ ସ୍କୁଲରେ ପିଲାଟିର ନାମ ଲେଖାଇବା ପାଇଁ ପାଖରେ ଅର୍ଥ ବ୍ୟବସ୍ଥା ନାହିଁ । ଏସବୁ ସମସ୍ୟାକୁ ବିଚାରକୁ ନେଇ ଗାଁରେ ମିଟିଂ ହୁଏ ଓ ଜଣେ ଘିନା ମାଷ୍ଟ୍ର ବା କିଣା ମାଷ୍ଟ୍ର ଆଣିବାକୁ ନିଷ୍ପତ୍ତି ହୁଏ । ଏହା ଏକ ସୁଚିନ୍ତିତ ବ୍ୟବସ୍ଥା । ଗାଁର ମୁଖିଆମାନେ ଜଣେ କିଣା ମାଷ୍ଟ୍ରକୁ ଖୋଜିବେ । ମୁଖ୍ୟତଃ ଏମାନେ କଳାହାଣ୍ଡିରେ ମିଳନ୍ତି । କାଶୀପୁର ଆଗରୁ କଳାହାଣ୍ଡିରେ ଥିଲା ଓ ଚିହ୍ନା ପରିଚିତ ଲୋକଙ୍କ ଅଭାବ ନାହିଁ । ସାଧାରଣତଃ ଅଣଆଦିବାସୀ ଅର୍ଦ୍ଧ ଶିକ୍ଷିତମାନେ କାଶୀପୁରକୁ ଆସନ୍ତି କିଣାମାଷ୍ଟର୍ ହିସାବରେ । ଗ୍ରାମବାସୀମାନେ ଚୁକ୍ତି କରନ୍ତି ଯେ ସେ 'କିଣା ମାଷ୍ଟ୍ର' ବର୍ଷକୁ କେତେ ନେବ 'ଖାଦି ପିଦି' ଅଥବା ପାଉଁଣା ହିସାବରେ । ଗାଁ ପିଲାଙ୍କୁ ସେ ଅ,ଆ,କ,ଖ, ସଂଖ୍ୟା ଓ ଦସ୍ତଖତ ଶିଖାଇବାକୁ ପ୍ରତିଶ୍ରୁତି ଦେବ । ଏଇଭଳି 'କିଣା ମାଷ୍ଟ୍ର'ଙ୍କ ସହ ମୋର ବି କେବେକେବେ ଦୁର୍ଗମ ଗାଁରେ

ଦେଖାହୋଇଛି । କିନ୍ତୁ ଏ 'କିଣା ମାଷ୍ଟ୍ର' ଗାଁରେ ପାଠ ପଢ଼ାଇବା ସଙ୍ଗେ ସଙ୍ଗେ ଅନ୍ୟ କେତେଗୁଡ଼ିଏ କାମ କରିଥାଏ । ସରକାରୀ ନୋଟିସ୍ ପଢ଼ିଥାଏ । ଗାଁ ଲୋକଙ୍କ ଆପତ୍ତି ଅଭିଯୋଗ ଦରଖାସ୍ତ ହିସାବରେ ଲେଖିଦିଏ । 'କିଣା ମାଷ୍ଟ୍ର' ଗାଁର ଉପଦେଷ୍ଟା ମଧ୍ୟ କିଛି ସମୟ ପାଇଁ ପାଲଟିଯାଏ । ଯଦି 'କିଣା ମାଷ୍ଟ୍ର' ଠିକ୍ ପଢ଼ାଉଛି ସେ ଆଗାମୀ ବର୍ଷ ପାଇଁ ପୁଣି କାମ କରିବାକୁ ଚୁକ୍ତି କରେ ।

ଗ୍ରାମବାସୀମାନେ 'କିଣା ମାଷ୍ଟ୍ର'ର ବହୁତ ଆଦର କରନ୍ତି । ଘର ଗୋଟିଏ ତିଆରିକରି ଦିଅନ୍ତି ରହିବା ପାଇଁ । ଯାନିଯାତ୍ରା, ପର୍ବପର୍ବାଣିରେ ମଧ୍ୟ 'କିଣା ମାଷ୍ଟ୍ର'ର ଖାତିର ବେଶୀ । ଗାଁର ହାନି ଲାଭରେ ଏ ମାଷ୍ଟ୍ର ସାମିଲ ହୁଏ । ଗାଁର ପିଲାମାନେ ଶ୍ରଦ୍ଧାରେ ତାଙ୍କୁ ଡାକନ୍ତି 'ଗୁରୁ' । ଯେକୌଣସି କଠିନ କାମ ହେଉ ନା କହିଁକି, ଆଦିବାସୀ ପିଲାମାନେ ଗୁରୁର କଥା ମାନନ୍ତି । ଆମର ରାତ୍ରି ପାଠଶାଳା ଆରମ୍ଭ କରିବା ପୂର୍ବରୁ ଗାଁରେ ମିଟିଂ ହେଲା । ଗାଁରେ ଦରଖାସ୍ତ ଲେଖାଗଲା ଆମକୁ ଅନୁରୋଧ ହିସାବରେ । ଗୋଟାଏ ପ୍ରସ୍ତାବ ପାସ୍ କରାଗଲା ଯେ ସମସ୍ତ ପିଲା (ପୁଅ ଓ ଝିଅ) ସ୍କୁଲକୁ ପାଠ ପଢ଼ାଇବାକୁ ପଠାଯିବ । ଗାଁ ମଝିରେ 'ଗୁଡ଼ି ଘର' ବା ମିଟିଂ କରିବା ସ୍ଥାନ । ସେଠାରେ ସ୍କୁଲ ସାଧାରଣତଃ ଚାଲିଥାଏ । ଗାଁ ବାଲା 'କିଣା ମାଷ୍ଟ୍ର'କୁ ପ୍ରାୟ ବର୍ଷକୁ ଖାଇବା ସହ ହଜାରେ ଟଙ୍କା ଦିଅନ୍ତି । ପିନ୍ଧିବାକୁ ୨ଟି ଧୋତି । 'କିଣା ମାଷ୍ଟ୍ର' କିନ୍ତୁ ଅତି ଆନ୍ତରିକତା ଓ ଉତ୍ସାହର ସହ ପାଠ ପଢ଼ାଏ । ତାହାର କୌଣସି ଅନ୍ୟାୟ ଓ ଅନୈତିକ କାର୍ଯ୍ୟରେ ସଂପୃକ୍ତ ହେବା ଖବର ଆମ ପାଖରେ ନଥିଲା ସେ ସମୟରେ । କିନ୍ତୁ 'କିଣା ମାଷ୍ଟ୍ର' ସେ ଗାଁରେ ସବୁଦିନ ପାଇଁ ରହୁନଥିଲା କି ଗାଁ ଲୋକେ ତା'କୁ ସବୁଦିନ ପାଇଁ ରଖିବା ଅବସ୍ଥାରେ ନଥିଲେ । ଅବଶ୍ୟ ଗାଁ ଲୋକେ ସାକ୍ଷରତା ସ୍ତର ହାସଲ ହେଲାପରେ ଆଗକୁ ଯିବାକୁ ଚାହୁଁନଥିଲେ ।

ଆମର ଆନିମେଟରମାନଙ୍କ ସହ ତାଙ୍କ ଗାଁକୁ ଯାଇଥିଲୁ ରାତ୍ରିସ୍କୁଲ ବିଷୟରେ ଆଲୋଚନା ପାଇଁ । ଗାଁ ଲୋକ କହିଲେ ଆନିମେଟର ନାଁ ଭଲ ଶୁଭୁ ନାହିଁ । 'ଗୁରୁଭାଇ' ବୋଲି ଡାକିଲେ ନିଜର ବୋଲି ମନେହେବ । ସେ ଦିନଠାରୁ ଆମର ରାତ୍ରି ପାଠଶାଳାରେ ଶିକ୍ଷକମାନେ 'ଗୁରୁଭାଇ' ବୋଲି ନାମିତ ହେଲେ । ଯେଉଁ ଗାଁରେ ରାତ୍ରି ପାଠଶାଳା ଖୋଲାଯିବ, ସେଠାରେ ଗ୍ରାମବାସୀମାନେ ଗୋଟାଏ ସ୍କୁଲଘର ତିଆରି କରିବେ । ସବୁ ପିଲାମାନଙ୍କୁ ସ୍କୁଲକୁ ନିୟମିତ ପଠାଇବେ । ସ୍କୁଲ ପିଲାମାନେ ପାଠ ପଢ଼ିବା ସହ କିଛି ନା କିଛି ଆର୍ଥିକ କାର୍ଯ୍ୟ କରିବା କଥା ମଧ୍ୟ ବିଚାର କରାଯାଇଥିଲା । ପିଲାମାନେ ଛେଳି ଚାଷ, ପରିବା ଚାଷ ଆଦି କରି ପାରିବେ ବୋଲି ଗାଁ ଲୋକମାନେ ପ୍ରସ୍ତାବ ଦେଇଥିଲେ । ଯେଉଁ ଗାଁରେ ସ୍କୁଲ ହେବ, ସେଠାରେ ମଧ୍ୟ କୁଟୁମ୍ବ ପାଣ୍ଠି ଆରମ୍ଭ ହେବ । ଅଗ୍ରଗାମୀ କେବଳ ରାତ୍ରି ପାଠଶାଳା ପାଇଁ ଲଣ୍ଠନ ଓ କିରାସିନି ତେଲ, ବହି, ସିଳଟ ତଥା ଗୁରୁଭାଇଙ୍କ ଦରମା ଦେବ । କାଶୀପୁରରେ ବିଭିନ୍ନ ଗାଁରେ ସ୍କୁଲ ଚାଲୁ ବୋଲି ଆମକୁ ଅନୁରୋଧ ଆସିଥିଲା । ଆମେ ପରୀକ୍ଷାମୂଳକ ଭାବେ ପାଞ୍ଚୋଟି ରାତ୍ରି ପାଠଶାଳା ଆରମ୍ଭ କରିଥିଲୁ । ଗୁରୁଭାଇଙ୍କୁ ପାଉଲୋ ଫ୍ରେୟରଙ୍କ ପଦ୍ଧତିରେ ଟ୍ରେନିଂ ମଧ୍ୟ ଦିଆଯାଇଥିଲା । ଆଦିବାସୀ ଗାଁମାନଙ୍କର ସାମାଜିକ,

ଆର୍ଥିକ ଓ ରାଜନୈତିକ ପରିସ୍ଥିତି ଓ ପରିବେଶର ବିଶ୍ଳେଷଣ କରାଯାଉଥିଲା । ଶିକ୍ଷକର ଭୂମିକା କ'ଣ ହେବ ତାହାର ଆଲୋଚନା କରାଯାଇଥିଲା । ପ୍ରଚଳିତ ଶିକ୍ଷା ପଦ୍ଧତି ଓ ତାହାର ଦୁର୍ବଳତାକୁ ଆଲୋଚନା କରାଯାଉଥିଲା ।

ଆମର ଗୁରୁଭାଇମାନେ ବି ମନେ ପକାଇ ଥିଲେ ଯେ ସେମାନେ ଦିନେ ଛାତ୍ରଥିଲେ । ଶିକ୍ଷା ଓ ଶିକ୍ଷାୟତନରେ ବିଶୃଙ୍ଖଳାକୁ ଅଙ୍ଗେ ଅଙ୍ଗେ ନିଭାଉଥିଲେ । ସେଇଥିପାଇଁ ବିକଳ୍ପ ଶିକ୍ଷାର ପ୍ରସ୍ତାବ ସେମାନେ ଦେଉଥିଲେ । ରାତ୍ରି ସ୍କୁଲର ପିଲାମାନଙ୍କର ସମୟ କମ୍ । ଦିନସାରା କାମ କରି ଥକି ଯାଉଥିବେ । ପେଟରେ ଭୋକ ଥିବ । ଲଣ୍ଠନ ଆଲୁଅରେ ଅଧା ଆଲୁଅ ଅଧା ଅନ୍ଧାରରେ ଆଖିକୁ ସବୁକଥା ପଡ଼ି ହେଉନଥିବ । ବର୍ଷାଦିନେ ଭୀଷଣ ବର୍ଷା, ଶୀତ ଦିନେ ଭୀଷଣ ଶୀତ । ଏ ରାତ୍ରି ପାଠଶାଳା ଚାଲିବ କି ନାହିଁ ଆମ ଭିତରେ ଅନେକ ସନ୍ଦେହ ଉପୁଜିଥିଲା । ଆମେ ଗୁରୁଭାଇମାନଙ୍କୁ ସେମାନଙ୍କର ଗାଁକୁ ପଠାଇ ଦେଇ କହିଲୁ ରାତ୍ରି ପାଠଶାଳା ଆରମ୍ଭ କରିବାକୁ । ମୁଁ ସବୁ ସ୍କୁଲ ଦେଖିବାକୁ ଯାଇ ସେ ଗାଁରେ ରାତ୍ରି ଯାପନ କରିଥିଲି । ଦୁଇଟି ଲଣ୍ଠନ ଆଲୁଅ ରାତିର ନିବିଡ଼ ଅନ୍ଧାରରେ କେତେ ଚମକ ସୃଷ୍ଟି କରିପାରେ ଜଣେ ନଦେଖିଲେ ବିଶ୍ୱାସ କରିପାରିବ ନାହିଁ । ଗାଁ ଦାଣ୍ଡରେ ପିଲାମାନେ ଗୋଲ ହୋଇ ବସିଛନ୍ତି ଲଣ୍ଠନ ଚାରିପାଖେ । ବୟସ ଚାରିରୁ ଚଉଦ । ଗୁରୁ ଭାଇ ମଝିରେ ବସିଛି । ପିଲାଙ୍କଠୁ କିଛି ଦୂରରେ ବସିଛନ୍ତି ବାପାମାନେ, ମୁରବୀମାନେ । ଦୂରରେ ଅନ୍ଧାରରେ ଘରଦ୍ୱାର ପାଖେ ବସିଛନ୍ତି ମାଆ ଓ ଭଉଣୀମାନେ । ଗୁରୁଭାଇ ପାଠ ପଢ଼ାଉଛି ପିଲାଙ୍କୁ । କିନ୍ତୁ ଗାଁସାରା ସମସ୍ତେ ଶୁଣୁଛନ୍ତି ଓ ବୁଝୁଛନ୍ତି । ମୋତେ ଅବାକ୍ ଲାଗିଲା ଯେ ଗାଁରେ ଶିକ୍ଷାପ୍ରତି ଏତେ ଆଗ୍ରହ ଅଛି ବୋଲି । ମୁଁ ଚିତ୍ତଭାଇଙ୍କୁ ଏଇ କଥା କହୁଥିଲି କେବଳ । ଶିକ୍ଷାକୁ ସାର୍ବଜନୀନ କରିବାର ରାସ୍ତା କ'ଣ ? ଶିକ୍ଷା ଏପରି ହେବା ଆବଶ୍ୟକ ଯାହା ଗାଁସାରା ସମସ୍ତଙ୍କ ପ୍ରତି ପ୍ରଯୁଜ୍ୟ ହେବ । ଗାଁରେ ଖାଲି ସାକ୍ଷରତା ନୁହେଁ, ସଚେତନତାର ସ୍ତର ମଧ୍ୟ ବଢ଼ିବ ।



# ୧୬

କୁମ୍ଭାରଶୀଳା ଗାଁପାଖ ଲୁଣବନ୍ଧଭଟାରେ ଆମ ଅଫିସ ଓ ପ୍ରଶିକ୍ଷଣ କେନ୍ଦ୍ର ଆରମ୍ଭ ହେଲା ଦିନଠାରୁ ଆମର ଅନେକ ଦାୟିତ୍ୱ ବଢ଼ିଯାଇଥିଲା । ଲୁଣବନ୍ଧଭଟା ଭିତରେ ତିନୋଟି ଅଙ୍କାବଙ୍କା ଶାଳଗଛ । ମନେହେଉଥିଲା, ଏହାର କୌଣସି ଉପଯୋଗିତା ନଥିବା ହେତୁ କଟା ନହୋଇ ଛାଡି ଦିଆଯାଇଛି । ଏକ ଘଞ୍ଚବଣର ଏହା ଏକ ସ୍ମାରକୀ ନୁହେଁ ତ ଆଉ କ'ଣ ? ବାହାଡ଼ା ଗଛଟିଏ ଗୋଟିଏ କଣକୁ ମଧ ଅଛି । ଆମ ଜମିର ସରହଦ ପାଖରେ ବିରାଟ ଶିମୁଳି ଗଛ । ଗଡାଣିଆ ଜମିଟି ଏକ ବିସ୍ତୀର୍ଣ୍ଣ ପଡିଆ । କେଉଁଠି ଘାସ ଉଠିଛିତ କେଉଁଠି ନାହିଁ । ପାଦଚଲା ରାସ୍ତା ସେପାଖକୁ ଗୋଟାଏ ଡିମିରି ଗଛ । ରାତିରେ ବାଦୁଡି ଓ ଭାଲୁମାନେ ସେଠାକୁ ପାଚିଲା ଡିମିରି ଖାଇବା ପାଇଁ ଆସି କୋଳାହଳ କରୁ ଥାଆନ୍ତି । ଆମ ପଡିଆ ପଛ ପଟେ ଏକ ଚିରସ୍ରୋତା ଝରଣା ବ୍ଲକ୍ ଅଫିସ ପାଖପାହାଡରୁ ବାହାରିଛି । ମାଟି ଧୋଇନେଇ ଏହା ଏକ ଗଭୀର ନାଳରେ ପରିଣତ ହୋଇଯାଇଛି । ପୂର୍ବପଟେ ଛୋଟ ବୁଦୁବୁଦୁକିଆ ଜଙ୍ଗଲ । ଦିନରେ ବି ଶୃଗାଳ ସପରିବାରେ ସେଠାରେ ଖେଳୁଥାଆନ୍ତି । ତା'ଠାରୁ କିଛି ଦୂରରେ କାଶୀପୁର ଆଡୁ ଆସିଥିବା ଚିରସ୍ରୋତା ଝରଣା ଯାହା କୁମ୍ଭାରଶୀଳା ଗାଁକୁ ଛୁଇଁ ପ୍ରବାହିତ ହେଉଛି । ଏ ନାଳଟି ଯାଇ ସାନନଦୀରେ ପଡିଛି ଓ ସାନନଦୀ ଯାଇ ଇନ୍ଦ୍ରାବତୀରେ ମିଶିଛି ଓ ଇନ୍ଦ୍ରାବତୀ ଯାଇ ଗୋଦାବରୀ ନଦୀ ସହ ମିଳିତ ହୋଇଛି । ଅର୍ଥାତ କହିବାକୁ ହେଲେ ଆମ ଅଫିସ୍ ଗୋଦାବରୀ ଅବବାହିକାର ଏକ ବିସ୍ତୃତ ଅଂଶ ବୋଲି ପ୍ରମାଣିତ ହୋଇଯାଇଛି । ଦକ୍ଷିଣପୂର୍ବ ପଟେ କୁମ୍ଭାରଶୀଳାକୁ ଲାଗି ପୋଡ଼ବନ୍ଧ ରିଜର୍ଭ ଜଙ୍ଗଲ । ସେଠାରେ ଗୋଟାଏ ଡୁରୁକା ବା କଲରା ପତିରିଆବାଘ ବସାକରି ଛେଳି, କୁକୁର, ଗୋରୁ ଆଦି କେବେ କେମିତି ଖାଉଛି । ଉତରରେ ପିଙ୍ଗୁଳି ବଗିଚାକୁ ଲାଗି ବଡ଼ ପାହାଡଟିଏ ଅଛି ଓ ତାହାର ମଥାନ ଉପରେ କିଛି ବୁଦୁବୁଦୁକିଆ ଜଙ୍ଗଲ ଯେଉଁଠି ଗୋଟାଏ ଭାଲୁ ପରିବାର କେତେ ବର୍ଷରୁ ରହି ଆସିଛନ୍ତି । ସନ୍ଧ୍ୟା ନଇଁ ଆସିଲେ ସେମାନେ ଆମ ସାମନା ରାସ୍ତାରେ ଉଇହୁଙ୍କା ଖୋଳିଥାଆନ୍ତି । ଡିମିରି ଗଛର ଫଳପାଚିଲେ ସେମାନେ ରାତିସାରା ସେଇଠି ଖେଳୁ ଥାଆନ୍ତି । ଆମ ସହିତ କାଶୀପୁରରୁ ଆସିଥିବା କଳା ଲୋମରେ ସଜ୍ଜିତ କୁକୁର କାଲୁ ଯଦି ଭାଲୁ, ଶିଆଳ, କୋକିଶିଆଳ, ଶିଆଳପତନୀ ଓ କଲରାପତରିଆ ବାଘ ଆଦିଙ୍କ ଗନ୍ଧ ପାଇଥାଏ, ତେବେ ଭୁକିବା ଆରମ୍ଭ କରେ । ଆମେ ସବୁ ରାତିରେ ଚେଇଁ ପଡ଼ିଥାଉ । କାଲୁର ଆଗରୁ ଦୁଇଜଣ ମାଲିକ ଥିଲେ । ଏ ଦୁହେଁ ବଦଳି ହୋଇଯିବା ପରେ ସେ ଆମ ସହ ଅତି ସହଜରେ ବନ୍ଧୁତା ବାନ୍ଧିଥିଲା ଓ ଯେଉଁଦିନ ଆମେ ବାକ୍ସ ଓ ଅନ୍ୟ ଆସବାବପତ୍ର ନେଇ ଲୁଣବନ୍ଧଭଟା କ୍ୟାମ୍ପକୁ ସ୍ଥାନାନ୍ତରିତ ହେଲୁ, କାଲୁ ଆମ ପିଛାଧରି ସେଠାରେ ମଧ

ପହଞ୍ଚୁଥିଲା । କାଲୁ ଆମ ପରିବାରର ବିଶ୍ୱସ୍ତ ଥିଲା । ଆମେ ପାଖ କେଉଁ ଗାଁକୁ ଗଲେ ସେ ପଛେ ପଛେ ଆସୁଥିଲା । ମଧ୍ୟରାତ୍ର ପର୍ଯ୍ୟନ୍ତ ମୁଁ ଲଣ୍ଠନ ଆଲୁଅରେ କାମ କରୁଥିବା ବେଳେ, ସେ ଗୋଡ଼ପାଖରେ ଶୋଇ ଜଗୁଥିଲା । (କିଛି ବର୍ଷପରେ କାଲୁ ଉପରେ କଳରା ପତିରିଆ ବାଘଟିଏ ଝାମ୍ପି ତାକୁ ଆମ ଘର ବାରଣ୍ଡାରୁ ଉଠାଇ ନେଇଥିଲା । ସେ ଶବ୍ଦରେ ଆମେ ସବୁ ଉଠିପଡି କୋଳାହଳ କରିଥିଲୁ ଓ କାଲୁକୁ ବାଘ ନେଇଗଲା ବୋଲି ଚିତ୍କାର କରିଥିଲୁ । କିଛି ସମୟରେ ବାଘ କାଲୁକୁ ଛାଡି ଦେଇଥିଲା ଓ କାଲୁ ଧୀରେ ଧୀରେ ଆମ ପାଖକୁ ଫେରି ଆସିଥିଲା । କିନ୍ତୁ ଡୁରୁକା ବା କଳରାପତିରିଆ ବାଘ ତା'ର ତଣ୍ଟି କଣା କରିଦେଇଥିଲା । ଆମେ ସକାଳୁ ତାକୁ ପଶୁଡାକ୍ତରଖାନାକୁ ନେଇଥିଲୁ । ଅନେକ ଚେଷ୍ଟା ସତ୍ତ୍ୱେ ସେ ବଞ୍ଚିପାରିନଥିଲା । ମୋର ଜୀମ୍ କର୍ବେଟଙ୍କ 'ରବିନ୍' ଗପ ମନେପଡୁଥିଲା । କାଲୁ ଯେମିତି ଆମକୁ ବି ସ୍ୱର୍ଗରେ ଅପେକ୍ଷା କରିଛି । ('ରବିନ୍' ଜୀମ୍ କର୍ବେଟଙ୍କୁ ଅପେକ୍ଷା କରିଲା ଭଳି)

କାଶୀପୁରରେ ଆମକୁ ଗୋଟାଏ ଦୃଶ୍ୟ ବେଶୀ ଖରାପ ଲାଗୁଥିଲା । ସେଇଟି ହେଲା ନଣ୍ଡା ପାହାଡ଼ । ଗଛସବୁ କଟାଯାଇଛି । ଆଦିବାସୀମାନେ ପୋଡୁଚାଷ କରି ଜଙ୍ଗଲ ସବୁ ଧ୍ୱଂସ କରୁଛନ୍ତି ବୋଲି ସମସ୍ତେ କହୁଥାଆନ୍ତି । ଆଦିବାସୀମାନେ ଫଳଦାର ଗଛ ଯଥା ଆମ୍ବ, ପଣସ, ତେନ୍ତୁଳି ଆଦିଙ୍କୁ ଛାଡି ଦେଲେ ଅନ୍ୟ ଯେକୌଣସି ଗଛ କାଟିବାକୁ ପଛେଇ ନଥାନ୍ତି । ପିଲା ହେଉକି ବୁଢ଼ା ହେଉ, ସମସ୍ତଙ୍କ କାନ୍ଧରେ ଟାଙ୍ଗିଆ । ଦିନତମାମ ଖଟଣି ପରେ ସନ୍ଧ୍ୟାରେ ଗୋଛାଏ କାଠ ମୁଣ୍ଡରେ ବୋହି ସମସ୍ତେ ଘରକୁ ଫେରନ୍ତି । ଆଦିବାସୀର ଛୋଟ ଘରେ ନିଆଁ ଦିନରାତି ଜଳୁଥାଏ । ବର୍ଷର ବାରମାସ ଶୀତ । ମଶାମାଛି ଓ ଜଙ୍ଗଲ ପୋକଙ୍କ ଦାଉରୁ ରକ୍ଷା ପାଇବା ପାଇଁ ଏହା ହିଁ ଏକମାତ୍ର ଉପାୟ । ଆଦିବାସୀମାନେ କିନ୍ତୁ କହନ୍ତି, ଜଙ୍ଗଲ ବିଭାଗ ସବୁ ଗଛ କାଟି ଜଙ୍ଗଲ ସଫା କରି ଦେଇଛି । ଜଙ୍ଗଲରୁ କାଠ ବା ବାଉଁଶଟିଏ ଆଣିଲେ କେସ୍‌ବାସ ହେଉଛି । ଆମର ସମୟ ସାମୟିକ 'ଚିପ୍‌କୋ ଆନ୍ଦୋଳନ' ସେତେବେଳେ ଖୁବ୍ ଆଲୋଡ଼ନ ସୃଷ୍ଟି କରିଥାଏ । ହିମାଳୟ ତଳେ ଉତ୍ତରାଞ୍ଚଳର ମାଆମାନେ ଗଛମାନଙ୍କୁ ଆଲିଙ୍ଗନ କରି ସେମାନଙ୍କୁ କାଟିବାକୁ ଦେଉନଥିଲେ । ଶ୍ରୀ ସୁନ୍ଦରଲାଲ୍ ବହୁଗୁଣା ଓ ଶ୍ରୀ ଚଣ୍ଡି ପ୍ରସାଦ ଭଟ୍ଟ ଏ ଆନ୍ଦୋଳନର ମୁଖ୍ୟ ନେତୃତ୍ୱ ନେଇଥାଆନ୍ତି । ଜଙ୍ଗଲ ଓ ପରିବେଶ ଜନିତ ଆନ୍ଦୋଳନ ଦେଶର ବିଭିନ୍ନ ସ୍ଥାନରେ ମୁଣ୍ଡ ଟେକିଥାଏ । ଆମର ପାଇକ୍‌ମାଳର ଗନ୍ଧମାର୍ଦ୍ଦନ ପର୍ବତରେ ବକ୍‌ସାଇଟ୍ ଖଣି ଖୋଳିବାକୁ ବାଲ୍‌କୋକୁ ଅନୁମତି ଦିଆଯିବା ବିରୁଦ୍ଧରେ ପ୍ରବଳ ଜନଆନ୍ଦୋଳନ ମୁଣ୍ଡ ଟେକିଥାଏ ପଶ୍ଚିମ ଓଡ଼ିଶାରେ । ଦକ୍ଷିଣ ଭାରତରେ ଇୟୁକାଲିପଟାସ୍ ବୃକ୍ଷରୋପଣ ବିରୁଦ୍ଧରେ 'ଆପିକୋ' ଆନ୍ଦୋଳନ ମଧ୍ୟ ଖୁବ୍ ସକ୍ରିୟ ହୋଇଥାଏ । ଏସବୁ ଆନ୍ଦୋଳନ ସହିତ ମୁଁ ବ୍ୟକ୍ତିଗତ ଭାବେ ସମ୍ପୃକ୍ତ ହୋଇ ନଥିଲେ ମଧ୍ୟ, ସେମାନଙ୍କର ଉଦ୍ଦେଶ୍ୟ ଓ ନେତୃତ୍ୱ ସହ ମୁଁ ଖୁବ୍ ପରିଚିତ ଥାଏ । କାଶୀପୁରରେ 'ଜଙ୍ଗଲ ସୁରକ୍ଷା' ଉପରେ ଏକ ଜନଆନ୍ଦୋଳନ ସୃଷ୍ଟି ହେଉବୋଲି ଆମେ ସମସ୍ତେ ବିଚାର କରିଥିଲୁ । ପ୍ରତି ଗାଁରେ ଯେଉଁ ଖଣ୍ଡେ ଖଣ୍ଡେ ଜଙ୍ଗଲ ଅଛି, ମାଟି ଭିତରେ ଥିବା ଚେରରୁ ନୂତନ ଗଛ ଅଙ୍କୁରିତ ହୋଇଛି, ସେସବୁ ସୁରକ୍ଷା କରିପାରିଲେ କାଶୀପୁରର ଯେଉଁ ପରିବେଶର ଦ୍ରୁତ ଅବକ୍ଷୟ ଘଟିଛି ତାହା ରୋକାଯାଇପାରିବ ।

କାଶୀପୁରର ଐତିହାସିକ ଘଞ୍ଚ ଜଙ୍ଗଲ ସୃଷ୍ଟି କରିବା ଯଦିଓ ଅସମ୍ଭବ, ତଥାପି ଜଙ୍ଗଲ ସୁରକ୍ଷା ଆଦିବାସୀଙ୍କ ଜୀବନଜୀବିକା ପାଇଁ ଏକ ଅଦ୍ୱିତୀୟ ସମ୍ଭାବନା । କିନ୍ତୁ ଆମର ପ୍ରଶିକ୍ଷଣ କେନ୍ଦ୍ର ଏକ ବୃକ୍ଷହୀନ, ସବୁଜିମାହୀନ ଉଚା-ନୀଚା, ଅସମତଳ ପଡିଆ । ସେଠାରେ ବୃକ୍ଷରୋପଣ କରି ସବୁଜିମା ସୃଷ୍ଟି କରିବା ଆମର ଲକ୍ଷ୍ୟ ଥିଲା । ଆମ ଭିତରେ ଯୁକ୍ତିତର୍କ ଚାଲିଥିଲା । ଆମ୍ବ, ପଣସ, ଲିଚୁ, କଦଳୀ ଓ ପନିପରିବା ଛଡା ଆଉ କ'ଣ ଅନ୍ୟସବୁ ଗଛ ଲଗାଯାଇ ପାରିବ କି ନାହିଁ ? କେଉଁଗଛ ଲଗାଇଲେ ଶୀଘ୍ର ଶୀଘ୍ର ବଢ଼ିବ ଓ ସବୁଜିମା ସହିତ ଛାଇ ବି ସୃଷ୍ଟି କରିବ ତାହା ମଧ୍ୟ ବିଚାରକୁ ନିଆଗଲା । ମିଶ୍ରିତ ବୃକ୍ଷରୋପଣର ସପକ୍ଷରେ ବେଶୀମତ ଗଲା । ଆମର ଆଦିବାସୀ ଗୁରୁଭାଇମାନେ ପ୍ରସ୍ତାବ ଦେଲେ ଯେ କାଶୀପୁର ଲକ୍ଷେ ଚମ୍ପାର ଇଲାକା । ତେଣୁ ଚମ୍ପାଗଛର ଏକ ଅରଣ୍ୟ ସୃଷ୍ଟି କରାଯାଉ । ଏହାଛଡା କରଞ୍ଜ ଗଛ ଲଗାଯାଉ ଯାହା ବର୍ଷସାରା ସବୁଜ ସୁନ୍ଦର ହୋଇ ରହିଥାଏ । ବୃକ୍ଷରୋପଣ ଓ ବନୀକରଣର ଅଭିଜ୍ଞବ୍ୟକ୍ତି ଓ ଜଙ୍ଗଲ ବିଭାଗର କର୍ମକର୍ତ୍ତାଙ୍କ ସହ ବ୍ୟକ୍ତିଗତ ପରିଚୟ ଥିଲା । ଉଦ୍ୟାନ ବିଭାଗ ଓ ମୃତ୍ତିକା ସଂରକ୍ଷଣ ବିଭାଗର ସ୍ଥାନୀୟ କର୍ମଚାରୀମାନେ ବନ୍ଧୁ ଥିଲେ ଆମର । ସେମାନେ ଦୁଃଖରେ କହୁଥିଲେ ଯେ ଶହଶହ ଏକରର ବୃକ୍ଷରୋପଣ କାର୍ଯ୍ୟକ୍ରମ ଆଦିବାସୀମାନେ ନବୁଝି କାଟି ଜାଳି ସଫା କରିଦେଉଛନ୍ତି । ଏପରିକି ଫଳନ୍ତି ଆମ୍ବଗଛକୁ ମଧ୍ୟ ଛାଡୁ ନାହାନ୍ତି । ମୃତ୍ତିକା ସଂରକ୍ଷଣ ବିଭାଗ କଫି ଚାଷ ମଧ୍ୟ ଆରମ୍ଭ କରିଥାଆନ୍ତି ଖୁଙ୍ଗେର ପଞ୍ଚାୟତରେ ଏବଂ ତାଙ୍କର ବିଭାଗର ନିଜ ଫାର୍ମରେ । ଉଦ୍ୟାନ ବିଭାଗ ତାଙ୍କର ଟିଙ୍ଗୁଡିଯୋଡ ଫାର୍ମରେ ବିଭିନ୍ନ କିସମର ଆମ୍ବ ଚାରା ପ୍ରସ୍ତୁତ କରିଥାଆନ୍ତି । ବନ ବିଭାଗର ମଧ୍ୟ ଏକ ନର୍ସରୀ ଥାଏ । କେଉଁ ପ୍ରକାରର ଗଛ ଆଗେ ଚାହୁଁଛୁ ଓ ନର୍ସରୀ କେମିତି ପ୍ରତିଷ୍ଠା ହେବ, ସେସବୁ ସାହାଯ୍ୟ ଦେବାକୁ ଆଗ୍ରହ ପ୍ରକାଶ କରିଥିଲେ ।

ଆମକୁ କେହି କେହି ମହାଲିମ୍ବ ଗଛ ଲଗାଇବାକୁ ମଧ୍ୟ ପ୍ରସ୍ତାବ ଦେଇଥିଲେ, କାରଣ ଏହାକୁ ଗାଇଗୋରୁ ଖାଆନ୍ତି ନାହିଁ । ଏହ ମଧ୍ୟ ଶୀଘ୍ର ଶୀଘ୍ର ବଢ଼ିଯାଏ । ଇୟୁକାଲିପଟାସ୍, ଆକାଶିଆ, ଚକୁଣ୍ଡାଗଛ ସବୁ ବିବାଦୀୟ ହୋଇ ପଡିଥାଏ । କାଜୁ ଗଛ ସେ ଜଳବାୟୁରେ ଠିକ୍ ବଢ଼ିବ ନାହିଁ ବୋଲି କେହି କେହି ମତାମତ ଦେଇଥିଲେ । ମୋର ଜଣେ ଅଭିଜ୍ଞ ସ୍ୱେଚ୍ଛାସେବୀ ବନ୍ଧୁ ପରାମର୍ଶ ଦେଇଥିଲେ ଯେ ଆମ୍ବ ତୋଟାଟିଏ କରିବାକୁ ହେଲେ ଟାକୁଆ ଧାଡିରେ ପୋତି ସେଥିରେ କଲମୀ କରିବା ଠିକ୍ ହେବ । ଆମେ ଗାଁ ଗାଁରେ କିନ୍ତୁ ପରାମର୍ଶ ଲୋଡିଥିଲୁ ଯେ କେଉଁଭଳି ଗଛର ଆବଶ୍ୟକତା ଅଛି । ଆମ୍ବ, ପଣସ, ପିଜୁଳି, କାଜୁବାଦାମର ଉପାଦେୟତା ଗାଁ ଲୋକମାନେ ଜାଣିଥିଲେ ଓ ଆମର ସମ୍ପର୍କ ଥିବା ଗାଁମାନଙ୍କରେ ମିଟିଂ ହୋଇ ତାଲିକା କରାଗଲା । ଆମର କୃଅକୁ ଲାଗି ନର୍ସରୀ କରାଗଲା । ଉଦ୍ୟାନ ବିଭାଗର ଜଣେ ଫିଲ୍ଡ଼ମ୍ୟାନ୍ ଆସି ବତାଇଦେଲେ କେମିତି ପଲିଥିନ୍ ଭରିବାକୁ ହେବ, କେମିତି ଗଛର ଚାରାକୁ ବଢ଼ାଇବ ଓ ଗାଁରେ ବୃକ୍ଷରୋପଣ କରାଗଲେ କେଉଁଗଛକୁ କେତେ ଦୂରତ୍ୱରେ ଲଗାଯିବ । କଲମୀ, ଆମ୍ବ, ଲିଚୁ ଓ ପିଜୁଳିଗଛ ପାଇଁ ଉଦ୍ୟାନ ବିଭାଗ ଓ ଆଦିବାସୀ ଉନ୍ନୟନ ବିଭାଗର ସାହାଯ୍ୟ ନେବାକୁ ହେବ । ଆମେ ସବୁ ଉତ୍ସାହିତ ହୋଇଥିଲୁ । ଆଖ ପାଖ

ପଡିଆରୁ ଶୁଖିଲା ଗୋବର ଗୋଟାଇ ଆଣି ମାଟି ସହ ମିଶାଇଲୁ । ପଲିଥିନ ବ୍ୟାଗ କିଣାଗଲା । ବିଭିନ୍ନ ସ୍ଥାନରୁ ମଞ୍ଜି ସଂଗ୍ରହ କରିଲୁ । ଡଙ୍ଗରିଆ କନ୍ଧମାନଙ୍କ ଅଞ୍ଚଳରେ ପଣସ, ସପୁରୀ ଖୁବ୍ ହୁଏ ବୋଲି ଶୁଣିଥିଲୁ । ସେମାନେ ଗଢ଼ିଥିବା ସମବାୟ ସମିତି ଜରିଆରେ କିଛି ପଣସ ମଞ୍ଜି କିଣିଲୁ । ଖୋର୍ଦ୍ଧାରୁ କିଛି କାଜୁ ବିହନ ମଧ ଅଣାଗଲା । ଡେରାଡୁନ୍‌ର ଏକ ବିହନ କମ୍ପାନୀରୁ ଉଚ୍ଚମାନର ପିଜୁଳୀ ମଞ୍ଜି ମଗାଇଲୁ ପାର୍ସଲ ଯୋଗେ ।

ଉତ୍ତରାଞ୍ଚଳର ଜଣେ ଡ଼ି.ଏଫ.ଓ ବନ୍ଧୁ ପାର୍ସଲ କରି କେତେକ ଔଷଧ ଗଛର ବିହନ ମଧ ପଠାଇଥିଲେ । କୂଅରୁ ବାଲ୍‌ତିରେ ପାଣି ଆଣି ଫୁଆରା ଯୋଗେ ପଲିଥିନ୍ ବ୍ୟାଗ୍‌ରେ ଢ଼ାଳିଲୁ । ପଣସ ବିହନ ଓ କାଜୁ ବିହନ ଖୁବ୍ ଶୀଘ୍ର ଗଜା ହୋଇ ବଢ଼ିବାରେ ଲାଗିଲା । ମୁଁ ପ୍ରତ୍ୟେକ ଦିନ ସକାଳେ ସନ୍ଧ୍ୟାରେ ଆମର ସମସ୍ତ କର୍ମୀଙ୍କ ସହ ନର୍ସରୀକୁ ଯାଇ ଦେଖୁଥାଉ ଚାରା କେମିତି ବଢୁଛି । ବର୍ଷା ଆସିଗଲା ଓ ନିଷ୍ପତ୍ତି ହେଲା ଯେ ଯେଉଁ ଗାଁରେ ଆମର ରାତ୍ରି ପାଠଶାଳା ଚାଲୁଛି ସେ ଗାଁରେ ଚାରା ବଣ୍ଟାଯିବ । ରେଙ୍ଗଣାଶିଳ, ରତାଚୂଆଁ ଆଦି ଗାଁ ଗୁଡିକ ୨୦-୨୫ କି.ମି. ଦୂରରେ ଅବସ୍ଥିତ । ସେଗାଁର ପିଲାଛୁଆ, ଧାଙ୍ଗଡା, ଧାଙ୍ଗଡୀ, ବୁଢ଼ାବୁଢ଼ୀ ସମସ୍ତେ ଆସିଲେ ଗଛଚାରା ନେବା ପାଇଁ । ମୁଣ୍ଡ ଉପରେ ଛୋଟ ଛୋଟ ବାଉଁଶ ତିଆରି ପାଚିଆ । ସମସ୍ତେ ଧାଡି କରି ଆସି ପହଞ୍ଚିଲେ । ଟିକିଏ ବିଶ୍ରାମ ନେଇ ମୁଣ୍ଡ ଉପରେ ଗଛଚାରା ଧରି ଧାଡିକରି ଫେରିଲେ । ସମସ୍ତଙ୍କ ମୁହଁରେ ହସ ଓ ଆତ୍ମ ବିଶ୍ୱାସ । ମୁଁ ଅବାକ୍ ହେଲି ଯେ ବନବିଭାଗ, ଉଦ୍ୟାନ ବିଭାଗ, ମୃତ୍ତିକା ସଂରକ୍ଷଣ ବିଭାଗର କର୍ମକର୍ତ୍ତାମାନେ ଆଦିବାସୀମାନଙ୍କୁ ଗଛ କାଟୁଛନ୍ତି ଓ ବୃକ୍ଷରୋପଣକୁ ବିରୋଧ କରୁଛନ୍ତି ବୋଲି କହୁଥିବା ବେଳେ, ୨୫କି.ମି. ଦୂରରୁ ଆସି ଆମ ପାଖରୁ ମୁଣ୍ଡରେ ଗଛ ବୋହି ନେଉଛନ୍ତି । ଏକଥା ମୁଁ ଅନେକ ଦିନ ପର୍ଯ୍ୟନ୍ତ ପଚାରୁଥିଲି ଯେ ସରକାରୀ କଳ ଓ କର୍ମଚାରୀମାନେ ଆଦିବାସୀଙ୍କ ମନକୁ କାହିଁକି କିଣି ପାରୁନାହାନ୍ତି ?



# ୧୭

କାଶୀପୁରର ଗୁମର କଥା ଯେ ଲୁଚି ରହିଛି ବିବାଦ ଓ ସଂଘର୍ଷରେ ଏକଥା ମୋତେ ଅଛପା ନଥିଲା । ଏଠାରେ ପାଦ ଦେଉ ଦେଉ କେତେଜଣ ଶୁଭେଚ୍ଛୁ ବନ୍ଧୁ ମୋତେ ସତର୍କବାଣୀ ଶୁଣାଇଥିଲେ । ଜଣେ ବନ୍ଧୁ କହିଥିଲେ ଏଠାକାର ନେତାମାନଙ୍କୁ ଚିହ୍ନି ରଖିବା ପାଇଁ । ଜଣେ ନେତା ୧୯୫୫ ମସିହାରେ ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ ଚାଲୁଥିବା ବେଳେ ବ୍ଲକ୍ ଚେୟାରମ୍ୟାନ୍ ହୋଇଥିଲେ । ଟଙ୍କା ହେରଫେରର ସନ୍ଦେହ ଉପୁଜିଥିଲା ତାଙ୍କ ସମୟରେ । ଜଣେ ପଶୁପାଳନ ବିଭାଗ କର୍ମଚାରୀଙ୍କୁ ହତ୍ୟାକରି କୂଅରେ ପକାଇଦେବା ଅଭିଯୋଗ ଏ ନେତାଙ୍କ ବିରୋଧରେ ହୋଇଥିଲା । ଆଉଜଣେ ବ୍ରାହ୍ମଣ ସାହୁକାର ତାଙ୍କର ଆଦିବାସୀ ଗୋତିକୁ ପିଟିପିଟି ମାରି ଦେଇଥିଲେ ଓ ଜେଲ୍‌ରେ କିଛିଦିନ ରହି ବହୁ କଷ୍ଟରେ ଖଲାସ ହେଲେ । ପରେ ଜଣେ ଛାମୁଆଁ ନେତା ରୂପେ ଆବିର୍ଭାବ ହୋଇଥିଲେ । ଜଣେ ଦୁଇଜଣ ଶୁଣ୍ଢି ସାହୁକାର ମଦ ବେପାର କରିବା ସହ, ଆଦିବାସୀ ଜମି ହଡ଼ପ କରିଥିଲେ ବହୁମାତ୍ରାରେ ଓ ନିର୍ବାଚନ ଜିତି ସରପଞ୍ଚ ମଧ୍ୟ ହୋଇଥିଲେ ।

କାଶୀପୁର ଥାନା ହେଉଛି ବସ୍ତିର ଠିକ୍ ମଝିରେ । ଥାନାର ବାଁ ପଟେ ସବୁ ପରିବାର କଂଗ୍ରେସ ଦଳର ସମର୍ଥକ ଓ ଡାହାଣ ପଟେ ସବୁ ଜନତା ଦଳର ସମର୍ଥକ । ବେଳେବେଳେ ଉଭୟ ପକ୍ଷ ଭିତରେ ଘମାଘୋଟ ଲଢ଼ାଇ ହୁଏ । ଥାନାଠାରୁ ଆରମ୍ଭକରି କୋର୍ଟକଚେରି ପର୍ଯ୍ୟନ୍ତ କଥାଯାଏ । ଜନତା ଦଳରେ ବ୍ରାହ୍ମଣମାନଙ୍କ ଆଧିପତ୍ୟ ଥାଏ । ସେମାନେ କଂଗ୍ରେସିଆମାନଙ୍କୁ ସବୁକଥାରେ ବିରୋଧ କରନ୍ତି । ଏପରିକି କଂଗ୍ରେସଦଳର ମୁଖ୍ୟମନ୍ତ୍ରୀଙ୍କୁ ବା ଏମ୍.ଏଲ୍.ଏଙ୍କୁ କାଶୀପୁରରେ ସହଜରେ ପୂରାଇ ଦିଅନ୍ତି ନାହିଁ । କଂଗ୍ରେସ ନେତା ଓ ଜନତାଦଳ ନେତାଙ୍କ କନ୍ଦଳ ରାଜନୈତିକ ବିବାଦ ଉପରେ କେବଳ ଆଧାରିତ ନୁହେଁ । ଏହା ପଛରେ ଠିକାଦାରି, ମହାଜନି ଋଣ କାରବାର, ଜମିହଡପ, ପି.ଡି.ଏସ୍ ଚାଉଳ କଳାବଜାରି ଆଦି ପାଇଁ ମଧ୍ୟ ଏକ ଅସୁସ୍ଥ ପ୍ରତିଯୋଗିତା ଏହାର ଅନ୍ୟ କାରଣ । ଅସଲକଥା କହିବାକୁ ଗଲେ ଆଦିବାସୀ ଦଳିତ ଓ ଗରିବମାନଙ୍କୁ ଶୋଷଣ ଓ ଲୁଣ୍ଠନ କରିବାରେ କେଉଁଦଳ ସର୍ବେସର୍ବା ହେବ, ତାହା ଏଠାକାର ବାତାବରଣକୁ ଖୁବ୍ ଗରମ କରି ରଖିଥାଏ । ସରକାରୀ କର୍ମଚାରୀମାନେ ଦ୍ୱନ୍ଦ୍ୱରେ ପଡିଯାଆନ୍ତି । କାହାକୁ ସମର୍ଥନ କରିବେ ଅଥବା ନିରପେକ୍ଷ ରହିବେ ସ୍ଥିର କରିପାରନ୍ତି ନାହିଁ । ଜଣେ ତହସିଲଦାର୍ କଂଗ୍ରେସ ଦଳର ସମର୍ଥକ ହୋଇଥିବାରୁ ତାଙ୍କ ବିପକ୍ଷରେ ଗୋଟାଏ ପ୍ରକାର ଅପପ୍ରଚାର ଚାଲିଥାଏ ଓ କାନ୍ଥବାଡରେ ଲେଖା ହୋଇଥାଏ । ରାୟଗଡ଼ାରେ ଉପଜିଲ୍ଲାପାଳ ଓ କୋରାପୁଟର ଜିଲ୍ଲାପାଳ କେବେ କେମିତି ପରିଦର୍ଶନରେ ଆସିଲେ, ଏ

ରାଜନୈତିକ ଦଳର କୁଳିନେତାମାନେ ତାଙ୍କୁ କାଶୀପୁରର ବଙ୍ଗଳାରେ ଘେରି ରଖିଥାଆନ୍ତି । ଏ ପଦସ୍ଥ ଅଫିସରମାନେ ସହଜରେ ସାଧାରଣ ଲୋକଙ୍କ ପାଖରେ ପହଞ୍ଚିପାରନ୍ତି ନାହିଁ ।

ଆଦିବାସୀମାନଙ୍କ ଦୃଷ୍ଟିରେ ବିଚାରକରି ମୁଁ ଓ ମୋର ସାଥୀମାନେ, କାଶୀପୁର ଅଞ୍ଚଳରେ ସଂଘର୍ଷମାନଙ୍କର ଚେର କେଉଁପର୍ଯ୍ୟନ୍ତ ମାଡିଛି; ତାହା ଜାଣିବାକୁ ବହୁ ସମୟ ନେଉଥିଲୁ । ଖାଲି କାଶୀପୁର କାହିଁକି ସାରା ପୃଥିବୀର ଗଳିକନ୍ଦି ଯେମିତି ସଂଘର୍ଷରେ ଛାଇ ହୋଇଯାଇଛି । ବିକାଶ ଓ ସଂଘର୍ଷ ଭିତରେ ସମ୍ବନ୍ଧ ଅଛି ବୋଲି ମୁଁ ଖାଲି ପଢ଼ିନଥିଲି, ସ୍ୱଚକ୍ଷୁରେ ଦେଖିଥିଲି ମଧ୍ୟ । ଗରିବ ଓ ନିଷ୍ପେସିତ ବ୍ୟକ୍ତିମାନେ ବିକଶିତ ହେବାକୁ ଉଦ୍ୟମରତ ଅଛନ୍ତି, କିନ୍ତୁ ଦଳେ ସ୍ୱାର୍ଥାନ୍ୱେଷୀ ଓ ଶକ୍ତିଶାଳୀ ବ୍ୟକ୍ତି ସେମାନଙ୍କୁ ଦାବିଦେବା ପାଇଁ ଓ ଚିରଦିନ ଗରିବ ରହିବାକୁ ବାଧ୍ୟ କରୁଛନ୍ତି । ଏହା ଯେମିତି ସଂସାରର ନିୟମ ହୋଇଯାଇଛି । ମୋତେ ବିକାଶ କାର୍ଯ୍ୟକ୍ରମରେ ସାମିଲ୍ ହେବାକୁ ପ୍ରବର୍ତ୍ତାଇ ଥିବା ଶ୍ରୀଯୁକ୍ତ ତୁନୁ ରାୟ, ଏଇ ସଂଘର୍ଷମାନଙ୍କର ଏକ ଚମତ୍କାର ଅଧ୍ୟୟନ କରିଛନ୍ତି ତାଙ୍କର କର୍ମକ୍ଷେତ୍ର ମଧ୍ୟପ୍ରଦେଶର ସାଡୋଲ୍ ଜିଲ୍ଲାରେ । ଜମି, ଜଳ, ଜଙ୍ଗଲ ଓ ପରିବେଶର ପ୍ରଦୂଷଣକୁ ନେଇ କେତେ ପ୍ରକାର ସଂଘର୍ଷ ଉପୁଜି ପାରେ ତାହାର ଏକ ତାଲିକା କରିଛନ୍ତି ସେ । ଗୋଟାଏ କାଗଜକଳ କାଗଜ ଉତ୍ପାଦନ ଓ ବିପୁଳ ଲାଭ ପାଇଁ ଏଇ ସଂଘର୍ଷମାନଙ୍କୁ କିପରି ଚପାଇଦେବାକୁ ଉଦ୍ୟମ କରି ଆସିଛି, ସଂଘର୍ଷମାନଙ୍କର ତାଲିକା କରିବା ସହ ସମାଧାନର ରଣନୀତି ଶ୍ରୀଯୁକ୍ତ ତୁନୁ ରାୟ ତାଙ୍କ ଅଧ୍ୟୟନରେ ଉଲ୍ଲେଖ କରିଛନ୍ତି । କାଶୀପୁର ଆସିବା ପୂର୍ବରୁ ମୁଁ ଏ ଅଧ୍ୟୟନକୁ କେତେବାର ପଢ଼ିଛି ଓ ଶ୍ରୀ ତୁନୁ ରାୟଙ୍କୁ ଦେଖା ସାକ୍ଷାତରେ ସ୍ପଷ୍ଟୀକରଣ ପଚାରିଛି । ବିକାଶ ସଂଘର୍ଷରୁ ଆରମ୍ଭ ହୁଏ ନା ସହଯୋଗ ଓ ସଂହତିରୁ ଆରମ୍ଭ ହୁଏ, ଏ ପ୍ରଶ୍ନ ମୁଁ ଆଜି ପର୍ଯ୍ୟନ୍ତ ପଚାରି ଆସୁଛି ନିଜକୁ ଓ ଅନ୍ୟ ବିଶେଷଜ୍ଞମାନଙ୍କୁ । ବିଭିନ୍ନ ପ୍ରକାର ଉତ୍ତର ପାଇ ମଧ୍ୟ, ମୁଁ ଏବେ ନିର୍ଦ୍ଦିଷ୍ଟ ଉପସଂହାରରେ ଉପନୀତ ହୋଇ ପାରିନାହିଁ । ସେଣ୍ଟ ଏକ୍‌ସୁପେରୀ ('ଦି ଲିଟିଲ୍ ପ୍ରିନ୍‌ସ' ଓ 'ସିଟାଡେଲ'ର ଲେଖକ) ବାରମ୍ବାର କହିଛନ୍ତି - Not competetion but co-operation । ସଂଘର୍ଷ ନୁହେଁ, ସହଯୋଗ ହିଁ ବଞ୍ଚିବାର ସାର୍ଥକତା ପ୍ରତିପାଦିତ କରେ । ଏ ସମାଜ ଓ ସଭ୍ୟତା କେବଳ ସଂଘର୍ଷକୁ ନେଇ ଇତିହାସ ସୃଷ୍ଟି କରି ନାହିଁ । ମଣିଷ ମଣିଷ ସହ ବନ୍ଧୁତା, ଭଲ ପାଇବା ଓ ହାର୍ଦ୍ଦିକ ସମ୍ବନ୍ଧ ପ୍ରତିଷ୍ଠା କରିବାରେ ସଭ୍ୟତା ଓ ଏହାର ପ୍ରଗତି ଆଜି ପର୍ଯ୍ୟନ୍ତ ତିଷ୍ଠି ରହିଛି । ଶ୍ରୀଯୁକ୍ତ ତୁନୁ ରାୟ କହୁଥିଲେ, ସମାଜରେ ଅନେକ ଗଣ୍ଠି ପଡିଛି ଗାମୁଛାରେ ଗଣ୍ଠି ପଡିଲା ଭଳି । ଏହାକୁ ପରିବର୍ତ୍ତନ କରିବାକୁ ହେଲେ ଗଣ୍ଠି କାହିଁକି ପଡିଛି ପ୍ରଥମେ ବୁଝିବାକୁ ପଡିବ ଓ ତା'ପରେ ଗଣ୍ଠି ଫିଟିବାର ରାସ୍ତା ବାହାରି ପାରିବ ।

କାଶୀପୁର କାହିଁକି ପଛରେ ପଡିଛି ଏଇଭଳି ସଂଘର୍ଷ ଓ ସହଯୋଗ ପରିପ୍ରେକ୍ଷୀରେ ଆମେ ବୁଝିବାକୁ ଗୁରୁତର ଉଦ୍ୟମ କରିଥିଲୁ । ଆଦିବାସୀ କେଉଁଠି ସଂଘର୍ଷ କରୁଛି ଓ କେଉଁଠି ସହଯୋଗ କରୁଛି ତାହାର ଅଧ୍ୟୟନ ଆମକୁ କେତେକ ମୌଳିକ ପ୍ରଶ୍ନର ସମୀପବର୍ତ୍ତୀ କରିପାରିଥିଲା । ଆଦିବାସୀ ଜଙ୍ଗଲର ବାଘ, ଭାଲୁଙ୍କୁ ଡରୁ ନଥିଲା ଅଥଚ ସାହୁକାର, ହେଡୁ (Police), ଗାରଡୁ (Forest Guard ), ରେଭିଣ (R.I) ଆଦିଙ୍କୁ ଦେଖିଲା ମାତ୍ରକେ ସେ

ଶଙ୍କା ଓ ଭୟରେ କମ୍ପୁଥିଲା । ସେ ସମ୍ଭବତଃ ଜାଣି ଥିଲା ଯେ ଏମାନଙ୍କର ବଶ୍ୟତା ସ୍ୱୀକାର ନକରିଲେ, ସେ ଗୋଟାଏ ମୁହୂର୍ତ୍ତ ବଞ୍ଚିପାରିବ ନାହିଁ । ସାହୁକାର ନଥିଲେ ତାକୁ ଦୁର୍ଦ୍ଦିନରେ କିଏ ସାହାଯ୍ୟ କରିବ ? ବିପଦ ପଡିଲେ କିଏ ପଛରେ ଛିଡା ହେବ ? ତା'ର ଆଇନ୍ ପ୍ରତି ବଡ଼ ଭୟ । କେଉଁଠି ଭୁଲଭଟକା ହୋଇଗଲେ, ମଦ ଖାଇ ମାଡପିଟ ହେଲେ, ପୁଲିସ୍ ଥାନାକୁ ଯିବାକୁ ହେବ । କେତେ ପ୍ରକାର କେସ୍ ହୋଇଯିବ ଓ ଜେଲକୁ ଯିବାକୁ ହେବ, ନଚେତ୍ କୋର୍ଟ କଚେରୀରେ ଛିଡା ହେବାକୁ ହେବ । ଓକିଲକୁ ପଇସା ଗଣିବାକୁ ହେବ । ସେଇଥିପାଇଁ ପୁଲିସ୍‌କୁ ଡର ।

ଜଙ୍ଗଲର ରାଜା ହେଉଛି ଫରେଷ୍ଟ ଗାର୍ଡ । ତାକୁ ସନ୍ତୁଷ୍ଟ ନକଲେ, କାଠ ଆଣିହେବ ନାହିଁ ଓ ଅନ୍ୟ ଜଙ୍ଗଲ ଜାତ ଦ୍ରବ୍ୟ ସଂଗ୍ରହ କରି ହେବ ନାହିଁ । ସବୁଠୁ ବଡ଼ କଥା ହେଲା ଫରେଷ୍ଟ ଗାର୍ଡ଼ ସମ୍ମତି ନଦେଲେ ଡଙ୍ଗର ଚାଷ ବା ପୋଡୁ ଚାଷ କରିହେବ ନାହିଁ । ପୋଡୁଚାଷ ନକଲେ ତା'ର ପାଞ୍ଚପ୍ରାଣୀ କୁଟୁମ୍ବ କେମିତି ଚଳିବେ ? ଫରେଷ୍ଟ ଗାର୍ଡ ବି କେସ୍ ଲଦି ଦେବ । ତେଣୁ ସେ ଆସିଲେ 'ହଜୁର ମାଆବାପ' କହି ତା'ରି ଗୋଡତଳେ ପଡିବ । ଆଉ ରେଭେନ୍ୟୁ ଇନ୍‌ସପେକ୍ଟର ଦେବତା ଭଳି । ତା'ର କଲମ ଗାରରେ ଆଦିବାସୀ ଜମି ରହିବ କି ନାହିଁ ଜଣାପଡିବ । ସିସ୍ତ ବାନ୍ଧିବାକୁ ପଡ଼ିବ ବର୍ଷକୁ ଥରେ । ପୋଡୁ ଚାଷ ପାଇଁ ଫାଇନ୍ ଦେବାକୁ ପଡିବ । ରେଭେନ୍ୟୁ ଇନ୍‌ସପେକ୍ଟରକୁ ସଲାମୀ ଦେବାକୁ ହେବ । ଚାଉଳ, ଘିଅ, କୁକୁଡ଼ା ଦେବାକୁ ହେବ । ତା'ର ମନ ଯାହା ଚାହିଁବ, ତାହାକୁ ସନ୍ତୁଷ୍ଟ କରିବାକୁ ହେବ । ମୁଁ ଅବାକ୍ ହେଉଥିଲି ଯେ, ସ୍ୱାଧୀନ ଦେଶରେ ଏସବୁ ଗ୍ରାମ୍ୟସ୍ତରରେ କାହିଁକି ଚାଲିଛି । ଗାଁରେ ରାତିରେ ରହିଲେ, ଗାଁର ଲୋକେ ମୋର ଚାରିପାଖେ ଘେରିବସି କହୁଥିବା ଏସବୁ ଶୋଷଣ ଅତ୍ୟାଚାରର ବିଭିନ୍ନ ଅଧ୍ୟାୟ ଓ ଅଙ୍ଗେନିଭା କାହାଣୀ ଶୁଣିବାକୁ ସୁଯୋଗ ମିଳେ । କାଶୀପୁର ଓ କଳାହାଣ୍ଡି ରାଜାଙ୍କ ବେଠି ଖଟିବାଠାରୁ ଜମାନମାନଙ୍କୁ ମାଇଲ ମାଇଲ ବୋହି କରି ନେବାର ଅନେକ ହୃଦୟବିଦାରକ କାହାଣୀ ମୁଁ ଶୁଣିଶୁଣି କାଠ ପାଲଟିଯାଏ । ଏ ଶୋଷଣ ଅତ୍ୟାଚାରର ଶେଷ କେଉଁଠି ? ଏ ପ୍ରଶ୍ନର ମୁଁ ଉତ୍ତର ପାଏ ନାହିଁ ।

କାଶୀପୁରରେ ଆଦିବାସୀ ଓ ହରିଜନଙ୍କ ଭିତରେ ଏକ ସାମାଜିକ ଓ ଅର୍ଥନୈତିକ ସଂଘର୍ଷ କେତେ ଅସ୍ଥିମଜ୍ଜାଗତ ହୋଇଯାଇଛି, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଆଦିବାସୀ ଗରିବ ଓ ହରିଜନ ବି । କିନ୍ତୁ ଉଭୟଙ୍କ ଭିତରେ ଜୀବନ ଜୀବିକାକୁ ନେଇ ଅନେକ ଫରକ । ଆଦିବାସୀ ଖରା, ବର୍ଷା ଓ ଶୀତ ସବୁବେଳେ ଖଟୁ ଥିବ । ହରିଜନ କିନ୍ତୁ ଚାଲାକ । ଚାଷ କରିବ ନାହିଁ । କେବଳ କଥା କହିବ ଓ ସାହୁକାର ଠିକାଦାରଙ୍କ ପାଖଲୋକ ହୋଇରହିବ । ଆଦିବାସୀ ହରିଜନଠାରୁ ସାମାଜିକ ନିଶୁଣୀରେ ଉପରେ ବସିଛି ବୋଧେ । ଏଇଥି ପାଇଁ ହରିଜନକୁ ସେ ଘରକୁ ଆସିବାକୁ ଦିଏନାହିଁ, କି ଘର ପିଣ୍ଡାରେ ବସିବାକୁ ଦିଏ ନାହିଁ । ସାହୁକାର ଋଣ ଆଦାୟ କରିବାକୁ ହରିଜନକୁ ପଠାଏ ଓ ହରିଜନ ଧମକ ଦିଏ ଯେ, ଋଣ ପରିଶୋଧ ନକଲେ ସାହୁକାର ନିର୍ଦ୍ଦେଶ ଅନୁସାରେ ସେ ଆଦିବାସୀ ଘରେ ପଶିବ । ଏହା ଘୋର ଅପମାନ ହେବ । ଆଦିବାସୀ ଯେମିତି ହେଉ ପଛକେ ଋଣ ପରିଶୋଧ କରିଦିଏ ।

ଦିପାବଳୀ ବା ଦିଆଲୀ ପର୍ବରୁ ଗୋଟିଏ ଗାଁର ହରିଜନମାନେ ଅନ୍ୟ ଏକ ଗାଁର ଏକ ସ୍ୱଚ୍ଛଳ ଆଦିବାସୀ ଘର ଆଗରେ ନାଚିବେ ଓ ତା'ସହ ମିତ ବସିବେ । କହିବେ ଯେ ହଳେ ବଳଦ ବା ପୋଢ଼ ପଟେ ବା ଭଲ ଜମିର ମାଣ୍ଡିଆ, କୋଶଲା ଫସଲ ବା ଟଙ୍କା ପଇସା ଦେବା ପାଇଁ । ଯଦି ଆଦିବାସୀ ବିଚରା ରାଜି ନହେଲା, ଜବରଦସ୍ତି ସବୁ ଆଦାୟ କରି ସ୍ପଷ୍ଟ ଦିବାଲୋକରେ ଓ ସମସ୍ତଙ୍କ ସାମ୍ନାରେ ନିଜ ଗାଁକୁ ଫେରିବେ ହରିଜନମାନେ । ନହେଲେ ରାତିରେ ଘରେ ସିନ୍ଧି କରି ସେମାନେ ଆଦିବାସୀ ଘରୁ ସବୁକିଛି ଚୋରୀ କରିବେ । ଏପ୍ରଥା କୁଆଡେ ବାପାଅଜା ଅମଳରୁ ଚାଲି ଆସିଛି । ଆଦିବାସୀମାନେ ବିରୋଧ କଲେ, ହରିଜନମାନେ ସଂଘବନ୍ଧ ହୋଇ ମାରପିଟ କରିବେ । ଫସଲ ଆଦାୟ ବେଳେ ବି ଆଦିବାସୀ ଜମିରେ ହରିଜନମାନେ ଡାଲାଟିଏ ଧରି ବସିବେ । ଆଦିବାସୀ ବିଚରା ଫସଲର କିଛି ଅଂଶ ହରିଜନଙ୍କ ଡାଲାରେ ନପକାଇବା ପର୍ଯ୍ୟନ୍ତ, ସେମାନେ ଉଠିବେ ନାହିଁ । ଆଦିବାସୀ ସମାଜରେ ହରିଜନ ପରାଙ୍ଗପୁଷ୍ଟ ଭଳି ବଞ୍ଚି ରହିଛି ବୋଲି, କାଶୀପୁରରେ ମୋତେ ଜଳଜଳ ଦେଖାଗଲା । ଆମେ ଯେଉଁ ଗାଁରେ ମିଟିଂ କରିଲୁ, ସେ ଗାଁର ହରିଜନ ଆସି ସାହୁକାର ପାଖରେ ଖବର ଦେଲା । ସାହୁକାର ସଙ୍ଗେ ସଙ୍ଗେ ଗାଁ ବାଲାକୁ ଡକାଇ, ଆମମାନଙ୍କ ବିରୋଧରେ କୁତ୍ସାରଟନା କରୁଥିଲା ଓ ଆମ ପାଖ ପଶିବାକୁ ସେମାନଙ୍କୁ ବାରଣ କରୁଥିଲା । ଆମେ ପ୍ରଥମେ ପ୍ରଥମେ ଜାଣିପାରୁନଥିଲୁ ଯେ, ଆଦିବାସୀମାନଙ୍କୁ ଏତେ ବୁଝାଇବା ପରେ କାହିଁକି ସେମାନେ ବୁଝିପାରୁନାହାନ୍ତି । ପରେ ଅସଲ ରହସ୍ୟ ଜଣାପଡିଲା । ଆଦିବାସୀ ଓ ହରିଜନମାନେ ବିଭିନ୍ନ ସଂଘର୍ଷରେ ସମ୍ପୃକ୍ତ । ସେମାନଙ୍କୁ ଏକାଠି କରି ସଂଘର୍ଷ ବଦଳରେ ସହଯୋଗ ପ୍ରତିଷ୍ଠା କରି ପାରିଲେ, କାଶୀପୁରରେ ପରିବର୍ତ୍ତନ ସହଜ ଓ ସରଳ ହେବ ବୋଲି ଆମର ହୃଦ୍‌ବୋଧ ହୋଇଥିଲା ।



# ୧୮

କାଶୀପୁରରେ ସଂଘର୍ଷରେ ଓ ସହଯୋଗର ବିଭିନ୍ନ ଦିଗକୁ ଅନୁସନ୍ଧାନ କରିବାକୁ ଆମକୁ ବହୁତ ଦିନ ଲାଗିଗଲା । କିନ୍ତୁ ଏ ଅନୁସନ୍ଧାନ ଆମ ପାଇଁ କେତେ ଉପାଦେୟ ଥିଲା, ତାହା ପରବର୍ତ୍ତୀ ଦିନମାନଙ୍କରେ ସ୍ପଷ୍ଟ ଅନୁଭବ କରି ହେଉଥିଲା । ବ୍ରାଜିଲର ବିଖ୍ୟାତ ଶିକ୍ଷାବିତ୍ ଓ ବୁଦ୍ଧିଜୀବୀ ସାମାଜିକ ବିଶ୍ଳେଷଣକୁ ଚମତ୍କାର ଉପସ୍ଥାପନା କରିଛନ୍ତି ତାଙ୍କ ବହିମାନଙ୍କରେ । ଗୋଟିଏ ଉକ୍ତି ଆଜି ଏବଂ ଆଗାମୀ ଦିନମାନଙ୍କ ପାଇଁ ଯାହା ଖୁବ୍ ପ୍ରଯୁଜ୍ୟ ତାହା ମୁଁ ବାରମ୍ବାର ଉଲ୍ଲେଖ କରିବାକୁ ଚାହୁଁଛି । ସେଇଟି ହେଉଛି- 'ଶୋଷିତର ସ୍ୱପ୍ନ ହେଉଛି ଶୋଷକ ହେବା' (The oppressed has a dream to be an oppressor ) । ଏ ଉକ୍ତି ଭିତରେ ଏତେ ଅନ୍ତର୍ନିହିତ ଅର୍ଥ ରହିଛି ଯେ, ଜଣେ ଚେଷ୍ଟା ନକଲେ ବୁଝିପାରିବ ନାହିଁ । ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ସାହୁକାରି ଶୋଷଣ ପ୍ରକ୍ରିୟା ଚରମ ସୀମାରେ ପହଞ୍ଚିଥିଲା । ଆଦିବାସୀ, ଦଳିତ ଓ ଗରିବ ଖଟିଖିଆମାନଙ୍କର ଅବଚେତନ ମନରେ ସାହୁକାର ରୂପରେ ଅବତୀର୍ଣ୍ଣ ହେବାଟା ସ୍ୱାଭାବିକ । ଆଦିବାସୀମାନଙ୍କ ମନସ୍ତତ୍ତ୍ୱ ବି ସେମିତି । ସେମାନେ ଯଦି କେହି ପ୍ରତିଷ୍ଠିତ ସାହୁକାରକୁ ପାଖରେ ପାଆନ୍ତି ନାହିଁ, ତାଙ୍କ ଗାଁରୁ ଜଣେ ଥିଲାବାଲକୁ ସାହୁକାର ଭାବରେ ଘୋଷଣା କରନ୍ତି ଓ ମାନ୍ୟତା ଦିଅନ୍ତି । ଅଭାବ ଅନଟନ ସମୟରେ ଏ ଗାଁ ଭିତରର ସାହୁକାର, ଅସଲ ଅଣଆଦିବାସୀ ସାହୁକାରର ଭୂମିକା ଗ୍ରହଣ କରିଥାଏ । ଏଇଭଳି ପ୍ରତି ଗାଁରେ ଜଣେ ଅଧେ ଆଦିବାସୀ ଓ ହରିଜନ ସାହୁକାର ପଦବୀ ପାଇଥାଆନ୍ତି । ଗ୍ରାମବାସୀଙ୍କ ଏଥିରେ ସହମତି ଥାଏ ।

ଆମେ କାଶୀପୁରରେ ୧୯୮୧ ମସିହାରେ ସର୍ବେକ୍ଷଣ ବେଳେ ଆଦିବାସୀ ଓ ହରିଜନଙ୍କ ଭିତରେ ପାର୍ଥକ୍ୟକୁ ବେଶ୍ ଲକ୍ଷ୍ୟ କରୁଥିଲୁ । କାଶୀପୁରର ମୋଟ ଜନସଂଖ୍ୟାରୁ ଆଦିବାସୀ ହେଉଛନ୍ତି ଶତକଡ଼ା ପ୍ରାୟ ୭୦ଭାଗ ଓ ହରିଜନ ଶତକଡ଼ା ପ୍ରାୟ ୨୦ଭାଗ । ଅର୍ଥାତ୍ କାଶୀପୁରର ଜନସଂଖ୍ୟାର ପ୍ରାୟ ନବେ ଭାଗ ଅବହେଳିତ ଓ ଶୋଷିତ । ଅନ୍ୟ ଶବ୍ଦରେ କହିଲେ, କାଶୀପୁରରେ ଶତକଡ଼ା ଦଶଭାଗ ଅଣଆଦିବାସୀ ସାରା ଅଞ୍ଚଳକୁ ସବୁଦୃଷ୍ଟିରୁ ନିୟନ୍ତ୍ରଣ କରିଛନ୍ତି । ଆଦିବାସୀ ଓ ହରିଜନମାନଙ୍କ ଭିତରେ ଯେତେ ମୌଳିକ ପାର୍ଥକ୍ୟ ଥିଲେ ମଧ୍ୟ ସେମାନଙ୍କୁ କେମିତି ଏକାଠି କରିବାକୁ ହେବ ଆମକୁ ବହୁତ ଚିନ୍ତା କରିବାକୁ ପଡିଥିଲା । କାଶୀପୁରର ଅନତି ଦୂରରେ ଆମ ଅଫିସ ପାଖ କୁମ୍ଭାରଶାଳା ଗାଁରେ ଥିବା ଲୋକା ନାଏକ ଆମକୁ ଆସି କହିଲା ଯଦି ଘର କରିବାର ପ୍ରସ୍ତାବ ଥାଏ, ତେବେ ଇଟା ଭାଟି କରି ଭଲ ଇଟା ସେ ଯୋଗାଇ ପାରିବ । ତା'ର ନାଁ ଏ ଦିଗରେ ଅଛି । ଫରେଷ୍ଟର୍ ଓ ରେଞ୍ଜରମାନେ ତାକୁ ଜାଣନ୍ତି । କାଠ କାଟି ଇଟା ଭାଟିରେ ଲଗାଇଲେ କୌଣସି ଅସୁବିଧା

ହେବ ନାହିଁ । ଆମ ଅଫିସ ପାଖ ଅନ୍ୟଏକ ଗାଁ ହେଉଛି ପରଜାଶୀଳା । ସେ ଗାଁର ଗୋବର୍ଦ୍ଧନ ନାଏକ ସ୍ୱାସ୍ଥ୍ୟକର୍ମୀ ଭାବେ ଅସ୍ଥାୟୀ ନିଯୁକ୍ତି କେବେ କେମିତି ପାଏ ଓ ସାରା କାଶୀପୁରରେ ଗଳି କନ୍ଦି ତାକୁ ଜଣା । ସେ କହିଲା, ସେ ସର୍ଭେ ସମୟରେ ଆମର ଗାଇଡ୍ ହୋଇ ବାଟ ଦେଖାଇବ । କାଶୀପୁର ହରିଜନ ସାହିରେ ମିସ୍ତ୍ରୀ କାମ କରୁଥିବା ଭକ୍ତ ରାମ ଟାକ୍ରୀ, ଲକ୍ଷଣ ନାଏକ ଓ ଉତ୍ତମ ନାଏକ ଆମ ସହ ପରିଚିତ ହେଲେ । ଏମାନେ ସବୁ ମିସ୍ତ୍ରୀ କାମ କରୁଥିବା ସହ ସେମାନଙ୍କ ସମାଜରେ ମୁଖ୍ୟବ୍ୟକ୍ତି ହିସାବରେ ପ୍ରତିଷ୍ଠିତ ଥିଲେ । ରେଙ୍ଗା ଗାଁର ସରପଞ୍ଚ ଶ୍ରୀ ଶଙ୍କର ନାଏକ ଓ ଡଙ୍ଗାସିଲ୍‌ର ପୂର୍ବତନ ବ୍ଲକ୍ ଚେୟାରମ୍ୟାନ ଶ୍ରୀ କବିସୂର୍ଯ୍ୟ ନାଏକ କାଶୀପୁରର ଜଣାଶୁଣା ବ୍ୟକ୍ତି ଥିଲେ । ହରିଜନ ସମାଜର ନେତୃତ୍ୱ ଏମାନଙ୍କ ହାତରେ ଥିଲା । ଉଭୟେ କାଶୀପୁରର ବିକାଶ ପାଇଁ ବିଭିନ୍ନ ପଦକ୍ଷେପ ନେଉଥିଲେ । ବିଶେଷ କରି ଶ୍ରୀ କବିସୂର୍ଯ୍ୟ ନାଏକ ତାଙ୍କ ଜମିର ଗୋଟାଏ ଭାଗ ଦାନସୂତ୍ରରେ ଦେଇ ଡଙ୍ଗାସିଲ୍‌ରେ କନ୍ୟାଶ୍ରମ ଓ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠା କରାଇଥିଲେ । ସେ ପ୍ରକୃତରେ ଜଣେ ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତି ଥିଲେ । ସେମାନଙ୍କ ସହ କଥାବାର୍ତ୍ତା ବେଳେ ସେମାନଙ୍କର ସମାଜ ପାଇଁ କିଛି କାମ ଆମ ତରଫରୁ ଆରମ୍ଭ କରିବାକୁ ଅନୁରୋଧ କରିଥିଲେ ।

ଆମେ ସବୁ କେଉଁ କେଉଁ ଗାଁମାନଙ୍କରେ ଆଦିବାସୀ ହରିଜନମାନେ ଏକାଠି ଶାନ୍ତି ଓ ସହଯୋଗ ସହ ରହୁଛନ୍ତି, ତାହାକୁ ଠାବ କରିବାକୁ ସ୍ଥିର କରିଲୁ । ଏକଥା ସତ ଯେ ଆମର କାର୍ଯ୍ୟକ୍ରମର ଯେଉଁ ନିୟମ ଥିଲା, ସେଥିରେ ଶ୍ରମଦାନ ଓ ଗ୍ରାମ ତରଫରୁ ଅନ୍ୟ ଅନୁଦାନ ଅନ୍ତର୍ଭୁକ୍ତ ଥିଲା । ଅର୍ଥାତ୍ ଯେକୌଣସି କାର୍ଯ୍ୟ ହେଉ ନା କାହିଁକି, ସ୍ଥାନୀୟ ସମାଜ ବା ଗାଁ ଅନୁଦାନ କରିବାକୁ ଆଗେଇ ଆସୁଥିଲେ । ଏଥିରେ ଆଦିବାସୀମାନେ ଆଗରେ ଥିଲେ ଓ ହରିଜନମାନେ ଶ୍ରମଦାନ ଆଦି କରିବାକୁ ଟିକିଏ ପଛଘୁଞ୍ଚା ଦେଉଥିଲେ । ସେମାନଙ୍କର ଯୁକ୍ତି ଥିଲା ସରକାରଙ୍କର ସବୁ କାର୍ଯ୍ୟକ୍ରମ ମାହାଳିଆ । ଅର୍ଥାତ୍ ଶତକଡ଼ା ଶହେଭାଗ ଅନୁଦାନ । ଆମମାନଙ୍କର ଶ୍ରମଦାନ ସପକ୍ଷରେ ଯୁକ୍ତି ଗ୍ରହଣ ଯୋଗ୍ୟ ନୁହେଁ । ଆଦିବାସୀ ଓ ହରିଜନମାନେ ମିଳିମିଶି କାର୍ଯ୍ୟ କରିବାର ଇତିହାସ ଅନୁଧ୍ୟାନଯୋଗ୍ୟ ବୋଲି ଆମେ ଭାବୁଥିଲୁ । କାଶୀପୁର ହରିଜନ ସାହିର ଅନେକ ପରିବାର ସାହୁକାରମାନଙ୍କ ଶୋଷଣ ଅନ୍ୟାୟରେ ଅତିଷ୍ଠ ହୋଇଥିଲେ । ସେମାନେ ଆମ ଅଫିସକୁ ଆସି ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସୂଚନା ଦେଉଥିଲେ । ଭକ୍ତ, ଲକ୍ଷଣ ଓ ଉତ୍ତମ ଆମର ଖୁବ୍ ନିକଟବର୍ତ୍ତୀ ହୋଇଥିଲେ । ସେମାନଙ୍କର ପ୍ରସ୍ତାବ ଥିଲା ଯେ, କାଶୀପୁରର ବିଭିନ୍ନ ଗାଁରେ ଅନେକ ଅର୍ଦ୍ଧଶିକ୍ଷିତ ଯୁବକ ବେକାର ହୋଇ ବସିଛନ୍ତି । ଯଦି ସେମାନଙ୍କୁ କୌଣସି ନା କୌଣସି ଧନ୍ଦାମୂଳକ ଟ୍ରେନିଂ ଦିଆଯାଆନ୍ତା, ତେବେ ସେମାନଙ୍କର ପରିବାରର ଆର୍ଥିକ ଅବସ୍ଥା ବଦଳନ୍ତା । ଭକ୍ତ, ଲକ୍ଷଣ ଓ ଉତ୍ତମ ସେତେବେଳେ ଆରମ୍ଭ ହୋଇଥିବା ବାଇଓ ଗ୍ୟାସ୍ କାର୍ଯ୍ୟକ୍ରମ ପାଇଁ ମାଷ୍ଟର ମେସନ୍ ବା କୁଶଳୀ ମିସ୍ତ୍ରୀ ହିସାବରେ ବ୍ରହ୍ମପୁର ପାଖରେ ଥିବା 'ଗ୍ରାମ ବିକାଶ' ନାମକ ଅନ୍ୟଏକ ସ୍ୱେଚ୍ଛାସେବୀ ସଂଗଠନକୁ ଟ୍ରେନିଂ ନେବାକୁ ଯାଇଥିଲେ । ଟ୍ରେନିଂରୁ ଫେରିଲାପରେ ସେମାନେ 'ଥାପି ମିସ୍ତ୍ରୀ' (ରାଜମିସ୍ତ୍ରୀ) ପ୍ରଶିକ୍ଷଣ ଆରମ୍ଭ କରିଥିଲେ । କାଶୀପୁରରେ ମିସ୍ତ୍ରୀ ଟ୍ରେନିଂ ନେବାକୁ ହରିଜନ ଯୁବକ ବହୁତ ସଂଖ୍ୟାରେ ବାହାରିଥିଲେ । ଆମର ଗୁରୁଭାଇ ହିସାବରେ ଦୁଇ ତିନିଜଣ ହରିଜନ ଯୁବକ ମଧ୍ୟ ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ସେମାନେ ଫେରିଯାଇ ସେମାନଙ୍କର ଗାଁ ମାନଙ୍କରେ ରାତ୍ରି ପାଠଶାଳା ଆରମ୍ଭ କରିଥିଲେ । ହରିଜନ

ଗୁରୁଭାଇ ହେଲେ ଆଦିବାସୀ ପିଲାମାନେ ପାଠ ପଢ଼ିବାକୁ ଆସିବେ ନାହିଁ ବୋଲି ପ୍ରଥମେ ଧାରଣା ସୃଷ୍ଟି ହୋଇଥିଲା । ତାହା କିନ୍ତୁ ମିଥ୍ୟା ବୋଲି ପ୍ରମାଣିତ ହେଲା । ମାଣ୍ଡିବିଶି ପଞ୍ଚାୟତରେ ମୋର ସହକର୍ମୀ ମଦନ ମିଶ୍ର ଆଦିବାସୀ ଓ ହରିଜନମାନଙ୍କୁ ଏକାଠି କରିବାର ଉଦ୍ୟମ କରିଥିଲେ । ଆଦିବାସୀଙ୍କ ଭଳି ହରିଜନମାନେ ଜମିହୀନ ଥିଲେ ଓ ବହୁତ ଦୁଃଖ କଷ୍ଟରେ ପରିବାରର ଗୁଜୁରାଣ ମେଣ୍ଟାଉଥିଲେ । ସେମାନେ ଆମର ଉପକେନ୍ଦ୍ର ଖୋଲିଲା ମାତ୍ରକେ ଆସି ଆମକୁ ସେମାନଙ୍କର ଦୁଃଖ କଥା ସବୁ ଜଣାଉଥିଲେ । କେଉଁ ଗାଁରେ ଡଙ୍ଗରକୁ ଗୋଟାପଣେ ସାହୁକାର ମାଡିବସିଛି ଓ ଆଦିବାସୀ ବା ହରିଜନ କାହାକୁ ସେଠାରେ ଚାଷ କରିବାକୁ ଦେଉ ନାହିଁ । ଝରଣା ପାଣି ଉପରେ ଦଖଲ ମଧ୍ୟ ରହିଛି । ଏସବୁ ସହି ହେଉନାହିଁ । ପ୍ରଥମ ସମ୍ମିଳିତ ପ୍ରତିବାଦ ଆରମ୍ଭ ହୋଇଥିଲା ସେଠାରେ ଓ ଏହାର ନେତୃତ୍ୱ ନେଇଥିଲେ ସାଇବ ନାଏକ ଓ ଫୁଲସିଂ ନାଏକ । (ପରବର୍ତ୍ତୀ ସମୟରେ ମାଣ୍ଡିବିଶି ଅଞ୍ଚଳର ଆଦିବାସୀ ଓ ହରିଜନ ମହିଳାମାନେ ଝାଡୁ ବିକା କିଣାକୁ ନେଇ ସରକାରଙ୍କ ଜଙ୍ଗଲ ନୀତି ବିରୁଦ୍ଧରେ ଆନ୍ଦୋଳନ କରିଥିଲେ । କାରଣ ଏ ନୀତି ସେମାନଙ୍କୁ ସୁହାଉ ନଥିଲା । ଏ ଆନ୍ଦୋଳନର ପ୍ରଭାବରେ ସରକାର ଗରିବ ବିରୋଧୀ ଜଙ୍ଗଲ ନୀତି ବଦଳେଥିଲେ । ଏହା ଆଜି ସାମ୍ପ୍ରତିକ ବିକାଶ କ୍ଷେତ୍ରରେ ଏକ ଐତିହାସିକ ସାଫଲ୍ୟ ବୋଲି ଗଣା ଯାଉଛି)

ଶୁଙ୍ଗେର ଅଞ୍ଚଳରେ ମଧ୍ୟ ଅଣଆଦିବାସୀ ସାହୁକାରମାନଙ୍କର ଦୌରାତ୍ମ୍ୟ ଖୁବ୍ ବଢ଼ିଥିଲା । ଜମିକୁ ନେଇ ବିଭିନ୍ନ ପ୍ରକାରର କେସ୍ ମଧ୍ୟ ଲାଗିଥିଲା । କିନ୍ତୁ ବନ୍ତେଜୀ ଗାଁର ନିଧନ ନାଏକ ରାମଧାରୀ ଆଦି ଖୁବ୍ ସଚେତନ ଥିଲେ । ସେମାନେ ସାହୁକାରୀ ଓ ସରକାରୀ ଶୋଷଣ ବିରୋଧରେ ଲଢ଼ିବାକୁ ଅଣ୍ଟାଭିଡିଥିଲେ । ଜମି ସବୁ ମୁକୁଳାଇ ଚାଷ କରିବାକୁ ଚାହୁଁଥିଲେ । ଏହା ଗାଁକୁ ଗାଁ ପ୍ରଚାରିତ ହୋଇଥିଲା । ଆଦିବାସୀ ଓ ହରିଜନ ଦୁଇଟି ଗୋଷ୍ଠୀ ହେଲେ ମଧ୍ୟ ସେମାନେ ଭାଇ ଭାଇ ଭଳି ଗାଁରେ ଅଛନ୍ତି ତାହାର ଖୁବ୍ ପ୍ରଚାର ହେଲା । ଶୁଙ୍ଗେର ଅଞ୍ଚଳରେ ଏହା ଖୁବ୍ ପ୍ରଭାବ ପକାଇଥିଲା । ଆମର ଯେକୌଣସି କାର୍ଯ୍ୟକ୍ରମ ଆରମ୍ଭ ହେଲା ମାତ୍ରକେ, ଏ ଦୁଇଗୋଷ୍ଠୀ କାନ୍ଧରେ କାନ୍ଧ ମିଳାଇ ସହଭାଗିତା ପ୍ରଦର୍ଶନ କରୁଥିଲେ । ଶୁଙ୍ଗେର ଓ ମାଣ୍ଡିବିଶିର ଅନୁଭୂତି କଥା ସାରା କାଶୀପୁରକୁ ବ୍ୟାପିଗଲା ଏବଂ 'ଅଗ୍ରଗାମୀ' ଯେ ଉଭୟ ଆଦିବାସୀ ଓ ହରିଜନଙ୍କ ପାଇଁ ଉତ୍ସର୍ଗୀକୃତ ତାହା ସମସ୍ତେ ଅବଗତ ହେଲେ । କ୍ରମେ ଦିପାବଳୀ ପରବରେ ଆଦିବାସୀଙ୍କ ପାଖରୁ ହରିଜନମାନେ ଆଉ କୌଣସି ବସ୍ତୁ ଜୋର ଜବରଦସ୍ତି ଆଦାୟ କରିବା କଥା ବିଚାରକୁ ନେଲେ ନାହିଁ । (ପରବର୍ତ୍ତୀ ସମୟରେ କାଶୀପୁରରେ ମାଇନିଂ କମ୍ପାନୀମାନଙ୍କ ବିରୁଦ୍ଧରେ ଶୁଙ୍ଗେର ପଞ୍ଚାୟତରେ ଏକ ଜନଆନ୍ଦୋଳନ ମୁଣ୍ଡ ଟେକିଥିଲା । ଏହାର ନେତୃତ୍ୱ ହରିଜନମାନେ ହିଁ ନେଇଥିଲେ । ଅନେକଙ୍କୁ ଜେଲ୍ ଯିବାକୁ ପଡିଥିଲା । 'ଅଗ୍ରଗାମୀ' ଉପରେ ଯେଉଁ ଅମାନୁଷିକ ଆକ୍ରମଣ କରାଯାଇଥିଲା ଓ ଗୁଣ୍ଡାମାନଙ୍କ ଦ୍ୱାରା ଭଙ୍ଗାରୁଜା ହୋଇଥିଲା, ସେତେବେଳେ ଶୁଙ୍ଗେରର ଉଭୟ ଆଦିବାସୀ ଓ ହରିଜନ ଆମକୁ ସୁରକ୍ଷା ଦେବାକୁ ପଛେଇ ନଥିଲେ) ।

□□□

# ୧୯

କାଶୀପୁରର ସାହସୀ ମଣିଷମାନଙ୍କର ତାଲିକା କଲେ ସେଥିରେ ଯେଉଁ କେତେ ଜଣ ଅନ୍ତର୍ଭୁକ୍ତ ହେବେ, ତା ଭିତରେ ନିଶ୍ଚିତ ଭାବେ ରହିବ ଗୁରିଆ ଝୋଡିଆ । ଗୁରିଆ ମରିଗଲାଣି ସତ, କିନ୍ତୁ ମୋ ମାନସପଟରେ ସେ ରହିଛି ଚିରଦିନ ଜୀବିତ । ତା'ର ମଧୁର ସ୍ମୃତି ରହିଛି ଚିର ସତେଜ । ମୁଁ ଜାଣେ ପୃଥିବୀର ସେପଟେ ସେ ଆମକୁ ଅପେକ୍ଷା କରିଛି । ଏକ ସଂଘର୍ଷର କାହାଣୀରେ ସେ ଥିଲା ନାୟକ । ତା'ଭଳି ଅନେକଙ୍କ ପାଇଁ ସେ ଥିଲା ଏକ ପ୍ରେରଣାର ଉତ୍ସ । ମୋ ଦୃଷ୍ଟିରେ ସେ ଥିଲା ସ୍ୱାଧୀନତା ସଂଗ୍ରାମରଥର ଏକ ସାରଥୀ । କହିବାକୁ ଗଲେ ସେ ଜଣେ 'ଜୋନାଥନ୍ ଲିଭିଙ୍ଗଷ୍ଟୋନ୍ ସିଗଲ୍' (Jonathan Living stone Seagull) । ଆମ କାଶୀପୁର ଅଫିସଠାରୁ ଅନତି ଦୂରରେ ତା'ର ଗାଁ ପରଜାଶିଳା ଅବସ୍ଥିତ । ଗାଁକୁ ଲାଗି ପାହାଡ଼ ତିନି ପାର୍ଶ୍ୱରେ ଘେରି ରହିଛି । ଗାଁରେ ଝୋଡିଆ ଆଦିବସୀମାନେ ବାସ କରନ୍ତି । ପାଖକୁ ଲାଗି ହରିଜନ ସାହି । ବାପ, ଅଜା ଅମଳରୁ ପାହାଡ କାଟି, ସମତଳ କରି ତିଆରି କରିଥିବା ଜମି ସବୁ କାଶୀପୁରର ଅଣଆଦିବାସୀ ସାହୁକାରମାନଙ୍କ ପାଖକୁ ଚାଲି ଯାଇଛି ସମୟକ୍ରମେ । ସେ ଜମି ଝରଣାପାଣି ଦ୍ୱାରା ଜଳସେଚିତ ହେଉଥିବାରୁ ବର୍ଷକେ ଦୁଇଥର ଫସଲ ହେଉଛି । ଗାଁ ପାଖରେ ଯଥେଷ୍ଟ ଜମିନାହିଁ । ପାଖ ପାହାଡରେ ଗାଁ ସାରା ଲୋକ ଡଙ୍ଗର ଚଷ ବା ପୋଡୁ ଚଷ କରୁଛନ୍ତି । ଏ ଡଙ୍ଗର ଚଷ, ପଶ୍ଚିମରେ ରାଶିଝିରି ଗାଁ ଠାରୁ ଉତ୍ତରରେ କାଶୀପୁର ଓ ଦକ୍ଷିଣରେ ଭୋଗାମୁଣ୍ଡା ଗାଁର ସରହଦ ପର୍ଯ୍ୟନ୍ତ ବ୍ୟାପିଛି । ତଥାପି ଗାଁର ସବୁ ଆଦିବାସୀ ହରିଜନ ବର୍ଷସାରା ଭୋକିଲା ରହୁଛନ୍ତି । କାଶୀପୁରକୁ ଯାଉଛନ୍ତି କୁଲିଭୁତି କରିବା ପାଇଁ ପୁରୁଷ, ସ୍ତ୍ରୀ । କେତେଜଣ ଜାଳେଣି କାଠ ଭାର ନେଉଛନ୍ତି ସଞ୍ଜସକାଳେ । ଗାଁରେ ଅଛି ଜାନି । ତା'ର କଥା ସମସ୍ତେ ମାନିବେ । ଗାଁରେ ଅଛି ମେମ୍ବର ବୁଢ଼ା-ଅର୍ଥାତ୍, ପଞ୍ଚାୟତ ୱାର୍ଡ଼ ମେମ୍ବର । ତା'ର ଜମି ଅଛି ଓ ବର୍ଷସାରା ଖାଇବାକୁ ଫସଲ କରୁଛି । ଆଜ୍‌ବେଷ୍ଟସ୍ ଘର କରିଛି । ସେ ମଧ୍ୟ ରାଜନୀତି ଜାଣିଛି । କାଶୀପୁର ସାହୁକାର ଓ ରାଜନୀତି କରୁଥିବା ନେତାଙ୍କ ସେ କାନକୁହା ବୋଲି ସମସ୍ତେ ଜାଣନ୍ତି । ଗାଁର ଭଲ ମନ୍ଦ ସବୁଖବର ସେ ରଖିଛି । ତା'କୁ ସମସ୍ତଙ୍କର ଡର । ସେ ଚାହିଁଲେ କାହାକୁ କେଶ୍‌ରେ ପକାଇ ଦେବ । କାହାକୁ ପଡି କାର୍ଡ଼ ମିଳିବ ଓ କାହାକୁ ବ୍ୟାଙ୍କ ଋଣ ମିଳିବ, ଏ ନିଷ୍ପତ୍ତି ତାହାର । ଜାନି ଅପେକ୍ଷା ମେମ୍ବରର କଥା ସବୁଠାରେ ଚାଲୁଛି ଆଜି ପର୍ଯ୍ୟନ୍ତ ।

ଏକଥା ଆମେ ସେ ଗାଁକୁ ପ୍ରଥମେ ପ୍ରବେଶ କରିଲା ମାତ୍ରକେ ଜାଣି ପାରିଥିଲୁ । ଆମେ ସର୍ଭେ କରିଗଲା ବେଳେ ଗାଁ ଲୋକଙ୍କଠାରୁ ସେମିତି କିଛି ଉତ୍ସାହ ପାଇନଥିଲୁ । ମୁଁ

ଅବାକ୍ ହେଲି । ଗାଁରେ ରାତ୍ରି ସ୍କୁଲ ଖୋଲିବା ବା କୁଟୁମ୍ବ ପାଣ୍ଠି କରିବାକୁ ଲୋକେ ସହମତି ପ୍ରକାଶ କରୁ ନାହାନ୍ତି । ଏ ଗାଁକୁ ପ୍ରତି ସନ୍ଧ୍ୟାରେ ଚାଲି ଚାଲି ଯିବା ଆମ ପାଇଁ ଏକ ପ୍ରକାରର ଆହ୍ୱାନ ହୋଇଥିଲା କିଛି ମାସ ଧରି । ଆମ କଥା ବୁଝିବାକୁ ଗାଁ ଲୋକେ ଅନେକ ବିଳମ୍ବ କରୁଥିଲେ । ପ୍ରତି ମିଟିଂରେ ଆମେ ତିନୋଟି କଥା କହୁଥିଲୁ । ପ୍ରଥମଟି ହେଲା, ରାତ୍ରି ପାଠଶାଳା, ଦ୍ୱିତୀୟଟି ହେଲା, କୁଟୁମ୍ବ ପାଣ୍ଠି ଓ ତୃତୀୟଟି ହେଲା, କୁଲିଭୁତି କଥା । ଗାଁରେ ଗୋବର୍ଦ୍ଧନ ନାଏକ ହରିଜନ ପିଲା । ରାତ୍ରିସ୍କୁଲ ତା' ସାହିରେ ସେ ଆରମ୍ଭ କରିବାର ଆୟୋଜନରେ ଲାଗି ପଡିଲା । କିଛି ଦିନପରେ ଗାଁର ଦୁଇ ବିବାହିତ ମହିଳା ଲକ୍ଷ୍ମମନୀ ଓ ଲକ୍ଷ୍ମୀ ସଚେତିକା ହିସାବରେ ପ୍ରଶିକ୍ଷଣ ନେବା ଆରମ୍ଭ କଲେ । ଗାଁର ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିବା ଯୁବକ ଶିର ଝୋଡିଆ ଦିବାସୀ ପିଲାଙ୍କ ପାଇଁ ରାତ୍ରି ପାଠଶାଳା ଆରମ୍ଭ କରିବାକୁ ଗାଁ ଲୋକଙ୍କୁ ପ୍ରବର୍ତ୍ତାଉ ଥିଲା । ଧୀରେ ଧୀରେ ଗାଁର ସାମାଜିକ, ଆର୍ଥିକ ଓ ରାଜନୈତିକ ମାନଚିତ୍ର ଆମେ ଆଙ୍କିପାରିଲୁ ଓ ଗାଁର କେଉଁମାନଙ୍କ ଜମି ସାହୁକାରମାନେ ହଡ଼ପ କରିଛନ୍ତି ତାହାର ଏକ ଇତିହାସ ସଂଗ୍ରହ କରିପାରିଲୁ । ଗାଁର କେଉଁମାନେ ଶ୍ରମଜୀବୀ ଓ କେଉଁମାନେ ଗୋତି ଶ୍ରମିକ, ସେ କଥା ମଧ୍ୟ ନିର୍ଣ୍ଣୟ କରିପାରିଲୁ ।

ଦୀପତଳ ଅନ୍ଧାର ଭଳି, ପରଜାଶିଳା ଗାଁ । ଶୋଷଣ, ଅନ୍ୟାୟ, ଅତ୍ୟାଚାରର ଅନେକ କାହାଣୀ ଆମେ ସଂଗ୍ରହ କରିପାରିଲୁ । ଗାଁରେ ସ୍କୁଲ ଅଛି, କିନ୍ତୁ ମାଷ୍ଟର କେବେ ଦେଖାନାହିଁ । ଗାଁରେ ଅଙ୍ଗନବାଡ଼ି ଚାଲୁଛି ଅଥଚ ଗାଁ ଲୋକେ ପିଲାଙ୍କୁ କେଉଁ ଦିନ ଖାଦ୍ୟ ମିଳିଥିବା କେହି ଜାଣିନାହାନ୍ତି । ଗାଁର ପଡି କାର୍ଡ଼ ସବୁ ସାହୁକାରଙ୍କ ପାଖରେ । ଗାଁକୁ ଆସୁଥିବା ସମସ୍ତ କାମ ଠିକାଦାର ନିୟନ୍ତ୍ରଣ କରେ । ଗାଁ ଲୋକଙ୍କୁ ମଜୁରି କେବେ ମିଳେ ତ କେବେ ମିଳେ ନାହିଁ । କାଶୀପୁର ବସ୍ତିର ଯୁବକମାନଙ୍କ ଲୋଲୁପଦୃଷ୍ଟି ପଡିଥାଏ ଗାଁର ଧାଙ୍ଗଡୀମାନଙ୍କ ଉପରେ । ମୋଟାମୋଟି କହିବାକୁ ଗଲେ ପରଜାଶିଳା ଗାଁଟି କାଶୀପୁର ସାହୁକାରଙ୍କ ଉପନିବେଶ ଭଳି ରହିଥାଏ ।

ଦିନେ ଏକ ସନ୍ଧ୍ୟାରେ ଗୁରିଆ ଝୋଡିଆ ଆମକୁ ଅଟକାଇ ଥିଲା ଓ ସେ ନିଜକୁ କାଶୀପୁରର ଏକ ବ୍ରାହ୍ମଣ ପରିବାରରେ ଗୋତି ଖଟୁଛି ବୋଲି ସୂଚନା ଦେଇଥିଲା । ସେ ଦିନ ସାହୁକାର ସହ ତା'ର ଭୀଷଣ କଳି, ଗଣ୍ଡଗୋଳ । କିଛି ଦିନ ଧରି ସେ ଅସୁସ୍ଥ ଥିଲା ଓ ସାହୁକାର ଘରକୁ ଯାଇପାରି ନଥିଲା । କିନ୍ତୁ ସାହୁକାର ତାକୁ ଜମିକୁ କାମ କରିଯିବାକୁ ଜବରଦସ୍ତି ପଠାଇଥିଲା । ସେ ଠିକ୍ କାମ କରିପାରିନଥିବାରୁ ସାହୁକାର ତା' ଉପରେ ମାରପିଟ କରିଥିଲା । ଏଥିରେ ଅପମାନିତ ହୋଇ ସେଦିନ ସନ୍ଧ୍ୟାରେ ସେ ସାହୁକାର ଘରୁ ପଳାଇ ଆସୁଥିବାବେଳେ ଆମ ସହ ସାକ୍ଷାତ ହୋଇଥିଲା । ଗୁରିଆର ଜେଜେବାପା ଓ ବାପା ଉଭୟେ କାଶୀପୁରରେ ବ୍ରାହ୍ମଣ ଘରେ ବର୍ଷ ବର୍ଷ ଧରି ଗୋତି ଖଟୁଥିଲେ । ସେମାନଙ୍କ ମୃତ୍ୟୁପରେ ଗୁରିଆର ପାଳି ପଡିଥିଲା । ଋଣ ଯନ୍ତାରୁ ମୁକ୍ତି ପାଇବା କ'ଣ ସହଜ କଥା ? ପୁଣି ଆଦିବାସୀ ଅଞ୍ଚଳର ସାହୁକାର କବଳରୁ ? ପରିବାରଟି ତିନିପୁରୁଷ ଧରି ସାହୁକାର ଜମିରେ ଚାଷ କରୁଥିଲେ । ଜମିର ଅବସ୍ଥିତି ପରଜାଶିଳା ଗାଁ ନିକଟରେ । ସାହୁକାର ଗୁରିଆକୁ ଦେଉଥିଲା

ବର୍ଷକୁ ୨୦ମାଣ ଧାନ ବା ମାଣ୍ଡିଆ ଏବଂ ୨୦୦ ଟଙ୍କା । ଗୁରିଆର ବାପା ପାଉଥିଲା ବର୍ଷକୁ ଦଶଟଙ୍କା ଏବଂ ଜେଜେବାପାକୁ ମିଳୁଥିଲା ବର୍ଷକୁ ୭ଟଙ୍କା । ସାହୁକାର ଖୁସି ହେଲେ ଦେଉଥିଲା ପୁରୁଣା କପଡ଼ା ।

ଗୁରିଆ ଭଳି ସାହୁକାର ଘରେ ଗୋତି ଖଟୁଥିଲେ ପ୍ରାୟ ପନ୍ଦରଜଣ ଆଦିବାସୀ । ଖରାବର୍ଷା ହେଉ ବା ଦେହ ଅସୁସ୍ଥ ହେଉ, ସାହୁକାର ଘରକୁ ବର୍ଷସାରା ଯିବାକୁ ହେବ । ଗୋତି ଖଟୁଥିବା ବ୍ୟକ୍ତି କୌଣସି କାରଣରୁ ନଯାଇ ପାରିଲେ ତା ବଦଳରେ ଗୋତିର ସ୍ତ୍ରୀ ବା ଭାଇକୁ ଯାଇ ସାହୁକାର ଘରେ କାମ୍ କରିବାକୁ ପଡିବ ବାଧ୍ୟରେ । ଗୁରିଆ ସମ୍ଭବତଃ ଶୋଷଣ, ଅନ୍ୟାୟ ଓ ଅତ୍ୟାଚାର ଅସହ୍ୟ ମନେକରି ଗୋତିରୁ ମୁକ୍ତ ହେବାକୁ ପ୍ରବଳ ଇଚ୍ଛାଶକ୍ତି ସଂଗ୍ରହ କରିଥିଲା । ଆମ ସହ ଭେଟିବା ପରେ ତା'ର ଆତ୍ମବିଶ୍ୱାସ କେତେ ଗୁଣ ବଢ଼ି ଯାଇଥିଲା । ଆମେ ସବୁକଥା ସତର୍କତାର ସହ ବୁଝିବାକୁ ଚେଷ୍ଟା କରୁଥିଲୁ । ମଣିଷ ଛୁଆ ହୋଇ ବାଘ ସହ ଲଢ଼ିପାରୁଥିବା ଆଦିବାସୀର ସାହୁକାର ପ୍ରତି ଭୟକୁ ମଧ୍ୟ ଅନୁଭବ କରୁଥିଲୁ । ସରକାରଙ୍କ ଗୋତି ନିରୋଧ ଓ ଥଇଥାନ ଆଇନ୍ ଅଛି । ଯିଏ ଗୋତି ରଖିବ ସେ ଆଇନ୍ ଅନୁସାରେ ଦଣ୍ଡନୀୟ । ଏସବୁ ଜାଣି ମଧ୍ୟ କେହି ଜଣେ ହେଲେ ଗୋତି, ସାହୁକାର ବିରୁଦ୍ଧରେ କୌଣସି କେଶ୍ କରିବାକୁ ସାହସ ସଞ୍ଚୟ କରିନଥିଲେ । ପୁରୁଷ ପୁରୁଷ ଧରି କେତେକ ପରିବାରଙ୍କ ଗୋତି ଖଟିବା ଯେମିତି ଭାଗ୍ୟ ଲିଖନ ହୋଇଯାଇଥିଲା ।

ସରକାରୀ କଳରେ ଅନେକ ସମ୍ବେଦନଶୀଳ ଅଫିସର ସେ ସମୟରେ କୋରାପୁଟରେ ଓ ରାୟଗଡ଼ାରେ ଥିଲେ । ଆଦିବାସୀ ମଙ୍ଗଳ ବିଭାଗ ହେଉ କି ଅନ୍ୟ ପ୍ରଶାସନିକ ଦପ୍ତର ହେଉ, ମହାଜନୀ ଋଣ କାରବାର ଆଇନ୍ ହେଉକି ଗୋତି ଉଚ୍ଛେଦ ଆଇନ୍ ହେଉ ଅବା ଆଦିବାସୀ ଅତ୍ୟାଚାର ଆଇନ୍ ହେଉ କି ସର୍ବନିମ୍ନ ମଜୁରି ଆଇନ୍ ହେଉ, ତାହା କେହି ଜଣେ ହେଲେ ସରକାରୀ କର୍ମଚାରୀ ଲାଗୁ କରିବାକୁ ତତ୍ପର ହେଉନଥିଲେ । ୧୯୭୫ ମସିହା ଜରୁରୀ କାଳୀନ ପରିସ୍ଥିତି ବେଳେ ସରକାରୀ କଳ ସାମାନ୍ୟ ଚଞ୍ଚଳ ହୋଇଥିଲା ଓ ଆଦିବାସୀଙ୍କ ସୁରକ୍ଷା ପ୍ରଦାନ କରିବା ପାଇଁ ବିଭିନ୍ନ ପଦକ୍ଷେପ ମଧ୍ୟ ନିଆ ଯାଇଥିଲା । ଦୁଃଖର କଥା ଯେ ଅବିଭକ୍ତ କୋରାପୁଟ ଜିଲ୍ଲାରେ ଆଦିବାସୀମାନଙ୍କ ସୁରକ୍ଷା ପାଇଁ ଯେତେ ଆଇନ୍ ଥିଲା, ତାହାର ପ୍ରୟୋଗ ପ୍ରାୟ ହେଉ ନଥିଲା । ଏ ଅଞ୍ଚଳରେ ନେତା ହୁଅନ୍ତୁକୁ ଅଫିସର ହୁଅନ୍ତୁ, ସମସ୍ତେ ଆଖି କାନ ବନ୍ଦ କରି ଦେଇଥିଲେ । କୌଣସି ଅଭିଯୋଗ ଆସିଲେ ମଧ୍ୟ ତାହା ସାହୁକାରକୁ ପ୍ରଭାବିତ କରୁନଥିଲା ।

ଗୁରିଆ କିନ୍ତୁ ସାହୁକାର ବିରୁଦ୍ଧରେ କେଶ୍ ଦାୟର କରିଲା । ଏହା କାଶୀପୁର ଇତିହାସରେ ଏକ ଅଭୁତପୂର୍ବ ଘଟଣା ବୋଲି ସବୁଆଡେ ପ୍ରଚାର ହେଲା । ଅଗ୍ରଗାମୀ ମଧ୍ୟ ଏଇ କେଶ୍‌କୁ ସର୍ବଭାରତୀୟ ସ୍ତରରେ ପହଞ୍ଚାଇଥିଲା । କାଶୀପୁରରେ ବିଭିନ୍ନ ଗାଁରେ ଯେଉଁମାନେ ଗୋତି ଖଟୁଥିଲେ, ଗୁରିଆର ଲଢେଇ ସେମାନଙ୍କ ମନରେ ନୂତନ ଉତ୍ସାହ ଓ ଉଦ୍‌ବେଳନ ସୃଷ୍ଟି କରିଥିଲା । ଗୁରିଆର କେଶ୍ ତିନିବର୍ଷ ଲାଗିଲା ଫଇସଲା ହେବାକୁ ।

ସାହୁକାରମାନେ ମିଶି ରାୟଗଡ଼ାର ଦାମୀ, ନାମୀ ଓକିଲମାନଙ୍କୁ ନିୟୋଜିତ କରିଥିଲେ । ଗୁରିଆ ଉପରେ କେଶ୍ ପ୍ରତ୍ୟାହାର କରୁ ବୋଲି ବହୁ ଚାପ ମଧ୍ୟ ପଡିଥିଲା । ପଦସ୍ଥ ସରକାରୀ କର୍ମଚାରୀମାନେ ପରୋକ୍ଷରେ ଏ କେଶ୍ ପ୍ରତ୍ୟାହାର ହୋଇ ଆପୋଷ ଆଲୋଚନା ମାଧ୍ୟମରେ ସମାଧାନ ହେବ ବୋଲି ଆମକୁ ପ୍ରବର୍ତ୍ତାଇ ଥିଲେ । କିନ୍ତୁ ଗୋତି ଉଚ୍ଛେଦ ଆଇନ୍ ସତ୍ତ୍ୱେ ଏତେ ସଂଖ୍ୟାରେ ଗୋତି ଓଡ଼ିଶାରେ ଥାଇ ପାରନ୍ତି ବୋଲି ଅନେକ ଜାଣି ଆଶ୍ଚର୍ଯ୍ୟ ହେଉଥିଲେ । କାରଣ, ଓଡ଼ିଶାର ସମ୍ପୂର୍ଣ୍ଣ ଗୋତିମୁକ୍ତ ହୋଇ ସାରିଛି ବୋଲି ପ୍ରଚାର ହୋଇଥିଲା । ଗୁରିଆର ନେତୃତ୍ୱରେ କାଶୀପୁରର ଗୋତିମୁକ୍ତି ଆନ୍ଦୋଳନ ବଳିଷ୍ଠ ହୋଇଥିଲା । ସାହୁକାରମାନେ ଉତ୍କ୍ଷିପ୍ତ ହୋଇଥିଲେ ସତ ଓ ଅଗ୍ରଗାମୀ ଅନେକ ଆକ୍ରମଣର ଶରବ୍ୟ ହୋଇଥିଲେ ମଧ୍ୟ, ଏ ଆନ୍ଦୋଳନ କାଶୀପୁରରେ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା ।



# ୨୦

ଅବିଭକ୍ତ ଓ ଅବିକଶିତ କୋରାପୁଟ ଜିଲ୍ଲାର ଆୟତନ କେରଳ ପ୍ରଦେଶ ଠାରୁ ଅଧିକ ବୋଲି ସବୁଆଡ଼େ ଚର୍ଚ୍ଚା ଚାଲିଥାଏ । ବୟାଳିଶଟି ବ୍ଲକ୍ । ମୋଟୁ ଠାରୁ ଆରମ୍ଭକରି ଜଣେ ମୋଟର ଗାଡିରେ ଆସିଲେ ଜିଲ୍ଲାଟି, ଅତିକ୍ରମ କରିବାକୁ ପ୍ରାୟ ବାରଘଣ୍ଟା ସମୟ ଲାଗିଯାଏ । ଏକେତ ରାସ୍ତାଘାଟ ଠିକ୍ ନଥାଏ । ଯାନବାହନ ବି ସହଜରେ ମିଳେନାହିଁ । କାଶୀପୁରରୁ ମୋର ଖୁବ୍ ଇଚ୍ଛା ଥାଏ ଯେ ଅନ୍ୟ ଅଞ୍ଚଳକୁ ଯାଇ ସେ ଅଞ୍ଚଳର ଅବସ୍ଥା ବୁଝି ଆସିବାକୁ । ଅବଶ୍ୟ କୋରାପୁଟ ଜିଲ୍ଲା ଗେଜେଟିୟର, ଭେରିଅର ଏଲଓ୍ୱିନ (Verrier Elwin)ଙ୍କ ବଣ୍ଡୋ ହାଇଲାଣ୍ଡର (Bondo Highlander) ଏବଂ ରିଲିଜିଅନ୍ ଅଫ୍ ଆନ୍ ଇଣ୍ଡିଆନ୍ ଟ୍ରାଇବ୍ (Religion of an Indian Tribe) ଲକ୍ଷ୍ମୀକାନ୍ତ ସାହୁଙ୍କ ହିଲ୍ ଟ୍ରାଇବ୍‌ସ ଅଫ୍ ଜୟପୁର (Hill Tribes of Jeypore) ଆଦି ବହି ପଢ଼ିଥାଏ । ମନରେ ଭାରି ଇଚ୍ଛା ଥାଏ ଗୁଣପୁରର ଲାଞ୍ଜିଆ ସଉରା, ମୁଦୁଲିପଡ଼ାର ବଣ୍ଡା, କୁରୁଲିର ଡଙ୍ଗରିଆ କନ୍ଧ, ନନ୍ଦପୁରର ଗଦବା, ମାଲକାନଗିରିର କୋୟା, ନବରଙ୍ଗପୁର ଓ ବସ୍ତର ଅଞ୍ଚଳର ଗଣ୍ଡମାନଙ୍କୁ ସ୍ୱଚକ୍ଷୁରେ ଦେଖି ଆସିବାକୁ । ମନ ଡାକୁଥାଏ ସେମାନଙ୍କର ଭାଷା ଶିଖିବାକୁ ଓ ସାଂସ୍କୃତିକ ମୂଲ୍ୟବୋଧ ବେଶି ଜାଣିବାକୁ । ଏମାନଙ୍କ ଉପରେ କ'ଣ ଗବେଷଣା କରାଯାଇଛି ଓ ନୃତତ୍ତ୍ୱବିତ୍‌ମାନେ କ'ଣ ସବୁ ଆଲୋଚନା କରିଛନ୍ତି ସେସବୁ ଜାଣିବା ପାଇଁ ମୋ ମନରେ କୌତୂହଳ ପ୍ରକାଶ ପାଇଥାଏ । କୋରାପୁଟର ସର୍ବୋଦୟ ଓ ଭୂଦାନ ଆନ୍ଦୋଳନ କଥା ମୁଁ ଜାଣିଥାଏ । କୋରାପୁଟ ଆଭ୍ୟନ୍ତରୀଣ ଇଲାକାରେ ଖ୍ରୀଷ୍ଟିୟାନ୍ ମିଶନାରୀମାନେ କାର୍ଯ୍ୟରତ ଅଛନ୍ତି ବୋଲି ମୋତେ ମଧ୍ୟ ଅନେକ ସୂତ୍ରରୁ ଆଭାସ ମିଳିଥିଲା । କୋରାପୁଟର ଆଦିବାସୀ ଭାଷାମାନଙ୍କ ଉପରେ ଦ୍ରାବିଡ ଭାଷାମାନଙ୍କର ପ୍ରଭାବରୁ ମନେ ହେଉଥିଲା ଯେ, ଯେମିତି ତେଲୁଗୁମାନେ କୋରାପୁଟର ଅନେକ ଭିତରକୁ ପଶି ଆସିଛନ୍ତି । ଗୁଣୁପୁର ଓ ରାୟଗଡ଼ା ଉପାନ୍ତ ସହର ହୋଇଥିବାରୁ ସେଠାରେ ବହୁଭାଗ ଲୋକ ତେଲୁଗୁ କହିବାକୁ ପସନ୍ଦ କରନ୍ତି । କୋରାପୁଟରୁ ସୁନାବେଡା ଓ ପଟାଙ୍ଗୀ ଦେଇ ସୁଙ୍କି-ସାଲୁର ଘାଟିରେ ପହଞ୍ଚିଲା ବେଳକୁ ଏ ଅଞ୍ଚଳ ଓଡ଼ିଶା ପ୍ରଦେଶରେ ଅଛି କି ନାହିଁ, ବୋଲି ପ୍ରଶ୍ନ ଉଠିଥାଏ । ଓଡ଼ିଆ ହୁଅନ୍ତୁ କି ତେଲୁଗୁ ହୁଅନ୍ତୁ, କୋରାପୁଟ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଏମାନଙ୍କର ପ୍ରଭାବ ସହଜରେ ଅନୁଭୂତ ହୁଏ । କୁଟିଆ ଗାଁ ମାନଙ୍କରେ ରହୁଥିବା ଆଦିବାସୀମାନେ ଓଡ଼ିଶାରେ ରହିବେ କି ଆନ୍ଧ୍ରରେ ମିଶିବେ ତାହା ଖବରକାଗଜ ମାନଙ୍କରେ ବଡ ବଡ ଅକ୍ଷରରେ ପ୍ରକାଶ ପାଉଥାଏ । ବାଲିମେଳା ଡ୍ୟାମ୍ ଭିତରେ ଜାନ୍‌ବାଇ ଅଞ୍ଚଳର ୪ଟି ପଞ୍ଚାୟତ ଓ ୯୦ରୁ ଉର୍ଦ୍ଧ୍ୱ ଗାଁ ଏକ ବିଚ୍ଛିନ୍ନ ଅଞ୍ଚଳ ହୋଇ ରହିଥାଏ, କାରଣ ସେ ଅଞ୍ଚଳକୁ ଡଙ୍ଗା ବା ଲଞ୍ଚ ନନେଇ ପହଞ୍ଚି ହୁଏ ନାହିଁ । ସେଠାକୁ

କୌଣସି ସରକାରୀ ଅଫିସର ଯାଆନ୍ତି ନାହିଁ । ବର୍ଷେ ଦୁଇବର୍ଷରେ ଥରେ ଜିଲ୍ଲାପାଳ, ଏସ୍.ପି.ସମସ୍ତେ ଏକାଠି ଯାଇ କ୍ୟାମ୍ପ୍ କରନ୍ତି ଦିନେ ଦୁଇଦିନ ପାଇଁ ଓ ପ୍ରଶାସନିକ ଆଧିପତ୍ୟ ଜାହିର କରିବା ପାଇଁ । କାଶୀପୁରରେ ଥାଇ ଏସବୁ ମୁଁ ଲକ୍ଷ୍ୟ କରୁଥାଏ । ପିଠିରେ ହାଭର ସ୍ୟାକ୍ ଧରି ମୋଟୁ ଠାରୁ ଏକ ପଦଯାତ୍ରା କରି ଗୁମୁଡା ପର୍ଯ୍ୟନ୍ତ ପହଞ୍ଚିବାକୁ ମୋର ଆବିଷ୍କାରକମନ ଖୁବ୍ ଉଚ୍ଚାଟ ହୋଇ ଯାଇଥାଏ । କୋରାପୁଟ ଅଣଆଦିବାସୀଙ୍କ ପାଇଁ ଏକ ଉପନିବେଶ ହୋଇ ସାରିଛି ବୋଲି ମନରେ ଖୁବ୍ ଦୁଃଖ ଲାଗେ ।

ମୁଁ କିନ୍ତୁ ଖୁବ୍ ଆନ୍ତରିକତାର ସହ ସାଥୀ ଖୋଜୁଥାଏ । ଏତେ ବଡ଼ କୋରାପୁଟ ଜିଲ୍ଲା, ଏତେ ସଂଖ୍ୟକ ଆଦିବାସୀ, ଅସଂଖ୍ୟ ସମସ୍ୟା । ସରକାର ଅଛନ୍ତି ଓ ସାହୁକାରମାନେ ଅଛନ୍ତି, ଅଛନ୍ତି ସ୍ୱେଚ୍ଛାସେବୀ ସଂଗଠନମାନେ ଓ ଖ୍ରୀଷ୍ଟିୟାନ୍ ମିଶନାରୀମାନେ । କିନ୍ତୁ ଆଦିବାସୀଙ୍କ ସ୍ଥିତି କେଉଁଠି ? ମୁଁ କାଶୀପୁର ଆସିବାବେଳକୁ ବଂଶଧାରା ନଦୀରେ ଭୟଙ୍କର ବନ୍ୟା ଆସିଥିଲା ଓ ଅନେକ ଲୋକ ମରିଥିଲେ । ଗୁଣୁପୁର ଓ ଆଖପାଖ ଅଞ୍ଚଳ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇଯାଇଥିଲା । ଅକ୍ସଫାମ୍‌ରେ କାର୍ଯ୍ୟରତ କେତେକ ବନ୍ଧୁ ସେଠାକୁ ଆସି ଗୁଡାରି ଅଞ୍ଚଳରେ ବନ୍ୟାପ୍ରପୀଡିତଙ୍କ ପାଇଁ କାର୍ଯ୍ୟ ଆରମ୍ଭ କରିଥିଲେ ଓ 'ଜାଗରଣ' ନାମରେ ଏକ ସଂସ୍ଥା ଖୋଲିଥିଲେ । ଗୁଣୁପୁରରେ ରତନଭାଇ ଓ ଶାନ୍ତିଅପାଙ୍କ ଆଶ୍ରମ । ଚନ୍ଦ୍ରପୁର ଭଳି ଦୁର୍ଗମ ଅଞ୍ଚଳରେ ସିଷ୍ଟର ଭର୍ସୁଲା କୁଆଡେ ଆଦିବାସୀଙ୍କ ପାଇଁ ଅନେକ ଭଲ କାମ କରିଛନ୍ତି ବୋଲି ଚିତ୍ତଭାଇ କହୁଥିଲେ । କୁଚ୍ଚେନ୍ଦ୍ରୀଠାରେ ଭୂସତ୍ୟାଗ୍ରହ ବିଶ୍ୱନାଥ ଆଙ୍କା ଆରମ୍ଭ କରିଥିଲେ ବୋଲି ମୁଁ ଜାଣିଥିଲି । ଗୁଣୁପୁରରେ ନକ୍‌ସାଲ୍ ନେତା ନାଗଭୂଷଣ ପଟ୍ଟନାୟକ ମଧ କାର୍ଯ୍ୟରତ ଥିଲେ । ଏ ଅଞ୍ଚଳକୁ ଯିବାକୁ ମୁଁ ସମୟ ଓ ସୁଯୋଗ ଖୋଜୁଥିଲି । କୋରାପୁଟରେ ତିନିଜଣ ବରିଷ୍ଠ ସର୍ବୋଦୟୀ କର୍ମୀଙ୍କ କଥା ମୁଁ ଶୁଣିଥିଲି । ସେମାନେ ହେଲେ ବନଭାରତୀର ନିମାଇଁ ଭାଇ, ସର୍ବୋଦୟ ସମିତିର ଅକ୍ଷୟ ଭାଇ ଓ ବୃନ୍ଦାବନ ଭାଇ । ବିନୋବାଙ୍କ ଭୂଦାନ ଆନ୍ଦୋଳନ ଯେତେବେଳେ କୋରାପୁଟରେ ଖୁବ୍ ସକ୍ରିୟ ଥିଲା, ଏମାନେ ମୁଖ୍ୟକର୍ମୀ ଥିଲେ ଓ ବିଭିନ୍ନ ଦୁର୍ଗମ ଅଞ୍ଚଳରେ ଯାଇ ବିଭିନ୍ନ ସେବାମୂଳକ କାର୍ଯ୍ୟ କରି ଆସୁଥିଲେ । ସମସ୍ତଙ୍କର ଆଶ୍ରମଜୀବନ । କୋରାପୁଟ ଅଞ୍ଚଳର ବିକାଶର ଇତିହାସ ତାଙ୍କଠାରୁ ମୁଁ ଶୁଣିଥିଲି ଓ ସେମାନଙ୍କର ଦୃଷ୍ଟିକୋଣ ସମ୍ପର୍କରେ ଅବଗତ ହୋଇଥିଲି । ସର୍ବୋଦୟୀ ଗାନ୍ଧୀବାଦୀଙ୍କ ଭିତରେ ଅନେକ ଫାଙ୍କ ଓ ମତାନୈକ୍ୟ ରହିଥିବା ସେମାନଙ୍କର କଥାବାର୍ତ୍ତାରୁ ଜଣାପଡୁଥିଲା । ପ୍ରତ୍ୟେକଙ୍କର ପ୍ରଭାବର ଏକ ପରିସର ଥାଏ । ସେ ଭିତରେ ସେମାନେ ନିଜକୁ ଆବଦ୍ଧ କରି ରଖିଥାଆନ୍ତି । ସୁନ୍ଦର ଓ ସରଳ ମଣିଷ କିନ୍ତୁ ପରସ୍ପର ପାଇଁ ଖୁବ୍ ଜଟିଳ ପରିସ୍ଥିତି ସୃଷ୍ଟି କରିଥିଲେ । ଗାନ୍ଧୀବାଦୀଙ୍କ ଭିତରେ କିଏ ବଡ଼, କିଏ ସାନ ଓ କିଏ ବିନୋବା ଗୋଷ୍ଠୀ ଓ କିଏ ଜୟପ୍ରକାଶ ଗୋଷ୍ଠୀ ତାହା ଜାଣିବା ପରେ ଗାନ୍ଧୀବାଦର ମାନ କେତେ ହ୍ରାସ ହୋଇଛି ମୁଁ ଅନୁଭବ କରିପାରୁଥାଏ । ଜୟପୁର ଏଭାଞ୍ଜେଲିକାଲ୍ ଲୁଥେରାନ ଚର୍ଚ୍ଚର ସାଇନ୍ ବୋର୍ଡ଼ ମୁଁ ଅନେକ ଜାଗାରେ ଦେଖୁଥାଏ । ଅବିଭକ୍ତ କୋରାପୁଟ ଜିଲ୍ଲାରେ ସେମାନଙ୍କର ଐତିହାସିକ ଉପସ୍ଥିତି ମୁଁ କୌତୁହଳତାର ସହ ଲକ୍ଷ୍ୟ କରୁଥାଏ । ଆଦିବାସୀ ଓ ଦଳିତମାନେ ଧର୍ମପ୍ରଚାର

ଦ୍ୱାରା କେତେ ମାତ୍ରାରେ ଜବଳିତ ହୋଇଛନ୍ତି, ତାହା ସମ୍ପର୍କରେ ବିଭିନ୍ନ ସୂତ୍ରରୁ ବିଭିନ୍ନ ପ୍ରକାରର ବିଶ୍ଳେଷଣ ମୋତେ ମିଳୁଥାଏ । ଏକଥା ସତ ଯେ, କୋରାପୁଟ ଜିଲ୍ଲାର ବିକାଶର ଦିଗ ନିର୍ଣ୍ଣୟ କରିବାକୁ ହେଲେ ଗାନ୍ଧୀବାଦୀ ଓ ଖ୍ରୀଷ୍ଟିୟାନ୍ ମିଶନାରୀଙ୍କ ସହ ସମ୍ପର୍କ ରଖିବାକୁ ହେବ; ଏହା ମୁଁ ହୃଦବୋଧ କରିଥିଲି ।

କୋରାପୁଟର ତତ୍କାଳୀନ ଜିଲ୍ଲାପାଳ ସ୍ୱର୍ଗତ ଶ୍ରୀଯୁକ୍ତ ଆଇ.ଜେ.ଏସ୍ ଖୁରାନା କାଶୀପୁର ଗ୍ରସ୍ତରେ ଆସିଥିଲେ ଓ ସ୍ଥାନୀୟ ବି.ଡ଼ି.ଓ ମୋତେ ତାଙ୍କୁ ଭେଟିବାକୁ ନିମନ୍ତ୍ରଣ କରିଥିଲେ । ଶ୍ରୀଯୁକ୍ତ ଖୁରାନା ମୋତେ କାଶୀପୁରରେ ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ ଓ ମୁଁ କେଉଁଠି ରହୁଛି ଓ କ'ଣ କରୁଛି ପଚାରି ବୁଝିଥିଲେ । ମାଇକଞ୍ଚ ଗାଁ ପରିଦର୍ଶନରେ ଗଲାବେଳେ ମୋତେ ସାଙ୍ଗରେ ନେଇଥିଲେ । ସେ ବଙ୍କର ରାୟ ଓ ଅରୁଣା ରାୟଙ୍କୁ ଖୁବ୍ ଭଲ ଭାବେ ଜାଣିଥିଲେ ଓ ମୁଁ ତିଲୋନିଆରୁ ଆସି ଏଠାରେ ପ୍ରକଳ୍ପଟିଏ ଆରମ୍ଭ କରିଛି ବୋଲି ଜାଣି ଖୁବ୍ ଖୁସି ହୋଇଥିଲେ । ବି.ଡ଼ି.ଓଙ୍କୁ ନିର୍ଦ୍ଦେଶ ଦେଇଥିଲେ ମୋତେ ସବୁକ୍ଷେତ୍ରରେ ସାହାଯ୍ୟ କରିବାକୁ । କୋରାପୁଟ ଆସିବାକୁ ମଧ୍ୟ ଆମନ୍ତ୍ରଣ କରିଥିଲେ । କାଶୀପୁରରୁ କୋରାପୁଟ ଯିବା ଖୁବ୍ କଷ୍ଟକର ବ୍ୟାପାର । ଅପରାହ୍ନରେ ବସ୍‌ଧରି ରାୟଗଡ଼ା ଯିବାକୁ ହେବ ଓ ସେଠାରେ ଲଜ୍‌ରେ ରାତ୍ରିଯାପନ କରି ସକାଳୁ ଜୟପୁରଗାମୀ ବସ୍‌ଧରି କୋରାପୁଟ ଯିବାକୁ ହେବ । ବସ୍ ଖୁବ୍ ଭିଡ଼ହୁଏ ଓ ବସିବାକୁ ସ୍ଥାନ ମିଳେନାହିଁ । ବସ୍ ମଧ୍ୟ ବାଟସାରା ଅଟକେ ଓ ଲକ୍ଷ୍ମୀପୁର, କାକରିଗୁମା ଓ ପୋଡାଗଡ଼ରେ ମଧ୍ୟ ଚା'ପାଣି ପାଇଁ ବେଶି ସମୟ ରହେ । ଏଇଭଳି କାଶୀପୁରରୁ କୋରାପୁଟ ପ୍ରାୟ ଗୋଟାଏ ଦିନ ଲାଗିଯାଏ । କୋରାପୁଟ ଜିଲ୍ଲା ସଦର ମହକୁମା ହୋଇ ମଧ୍ୟ ଛୋଟ ସହରଟିଏ । ଜୟପୁର ବଡ଼ ସହର ଓ ଦୋକାନ ବଜାର ଦ୍ୱାରା ସୁଶୋଭିତ । ଏଣୁ କୋରାପୁଟକୁ ଉପେକ୍ଷା କରି ସମସ୍ତେ ଜୟପୁର ଆଡକୁ ମୁହାଁଇ ଥାଆନ୍ତି । କିନ୍ତୁ କୋରାପୁଟ ଗୋଟାଏ ହିଲ୍ ଷ୍ଟେସନ୍ ଭଳି । ଥଣ୍ଡା ଲାଗୁଥାଏ ଅଥଚ ଲ୍ୟାଣ୍ଡସ୍କେପ୍ ଖୁବ୍ ସୁନ୍ଦର । ମୁଁ କୋରାପୁଟ ପ୍ରଥମ ଥର ଆସୁଛି ବୋଲି ନିମାଇଁ ଭାଇ ଓ ଅକ୍ଷୟ ଭାଇଙ୍କୁ ଲେଖିଥାଏ । କୋରାପୁଟରେ ଅନ୍ୟ ଏକ ଆକର୍ଷଣ ଥାଆନ୍ତି ଶ୍ରୀ ତରୁଣକାନ୍ତି ମିଶ୍ର । ନୂଆ ନୂଆ ହୋଇ ଖୋଲିଥାଏ ଡି.ଆର୍.ଡି.ଏ ଅଫିସ୍ । ତାଙ୍କ ସହ ବ୍ରହ୍ମପୁରରେ ଆଗରୁ ପରିଚୟ ଥିଲା । ଜିଲ୍ଲାପାଳ ଓ ଡି.ଆର୍.ଡି.ଏ.ର ପ୍ରକଳ୍ପ ନିର୍ଦ୍ଦେଶକ, ପ୍ରଶାସନର ମୁଖ୍ୟକେନ୍ଦ୍ର ଓ ସେମାନଙ୍କ ସହ ବ୍ୟକ୍ତିଗତ ପରିଚୟ ଏକ ଅଭୂତପୂର୍ବ ସୁଯୋଗ । କୋରାପୁଟରେ ସେତେବେଳେ ଦଣ୍ଡକାରଣ୍ୟ ପ୍ରକଳ୍ପର ମୁଖ୍ୟ ପ୍ରଶାସକ ଥିଲେ ଶ୍ରୀ ପ୍ୟାରୀ ମୋହନ ମହାପାତ୍ର ଏବଂ ଏସ୍.ପି. ଶ୍ରୀ ବିପିନ୍ ବିହାରୀ ମିଶ୍ର । ଏମାନେ ମୋର ଜନ୍ମସ୍ଥାନ ତାଳଚେରର ବାସିନ୍ଦା ଓ ମୋର ବଡ଼ ଭାଇନା ଭଳି ।

କୋରାପୁଟର ବିକାଶ ଉପରେ ଏକ ସେମିନାର୍ ଶ୍ରୀ ମହାପାତ୍ର ଆୟୋଜନ କରିଥିଲେ ବୋଲି ମୁଁ ଖବର ପାଇଥିଲି, କାରଣ ସେଥିରେ ଅଂଶଗ୍ରହଣ କରିଥିବା ଅର୍ଥନୀତି ବିଶାରଦ ପ୍ରଫେସର୍ ବିନୋଦ ବ୍ୟାସୁଲୁ ମୋର ପରିଚିତ ଥିଲେ । ସେ ସେମିନାରକୁ କାହିଁକି ମୋତେ ଡକାଗଲା ନାହିଁ ବୋଲି ମୁଁ ଜିଲ୍ଲାପାଳ ଶ୍ରୀଯୁକ୍ତ ଖୁରାନା ଓ ପ୍ରକଳ୍ପ ନିର୍ଦ୍ଦେଶକ ତରୁଣ ବାବୁଙ୍କ

ଠାରୁ ଜାଣିବାକୁ ଚାହିଁଥିଲି । ଏହା ପରେ ପରେ ମୁଁ ଶ୍ରୀ ପ୍ୟାରୀମୋହନ ମହାପାତ୍ରଙ୍କୁ ଚିଠିଟିଏ ଲେଖି ମୁଁ କିଏ ଓ କ'ଣ କରୁଛି ଜଣାଇଥିଲି । କିନ୍ତୁ ତାଙ୍କ ସହ ମୋର କୋରାପୁଟରେ ଦେଖାସାକ୍ଷାତ ହେବା ସମ୍ଭବ ହୋଇନଥିଲା । ତରୁଣବାବୁଙ୍କ ସହ ଆଦିବାସୀ ବିକାଶ ସମ୍ପର୍କରେ ଅନେକ ଚର୍ଚ୍ଚା ହୋଇଥିଲା କୋରାପୁଟ ପରିପ୍ରେକ୍ଷୀରେ । ସେ ଅନେକ ଉପାଦେୟ ତଥ୍ୟ ଓ ଅନୁଭୂତି ପ୍ରଦାନ କରିଥିଲେ । ସେତେବେଳେ ସରକାର ଓ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଜିଲ୍ଲାସ୍ତରୀୟ ସମନ୍ୱୟ କମିଟି ଗଢ଼ାଗଲା ପ୍ରଥମଥର ପାଇଁ । ତରୁଣବାବୁ ମୋତେ ସୂଚନା ଦେଇଥିଲେ ଯେ, ଜିଲ୍ଲାପାଳ ଓ ସେ ଉଭୟେ ମିଳିତ ଭାବେ ମୋତେ ବାଛିଛନ୍ତି ଏ କମିଟିର ଆବାହକ ଭାବେ । କୋରାପୁଟରେ ଅନେକ ଅଭିଜ୍ଞ ଓ ବରିଷ୍ଠ ସ୍ୱେଚ୍ଛାସେବୀ ସଂଗଠନ ଥାଉ ଥାଉ ମୋତେ କାହିଁକି ଚୟନ କରାଗଲା ଏଥିପାଇଁ ଅନେକ ପ୍ରଶ୍ନ ଉଠିଥିଲା । ତରୁଣ ବାବୁ ପରେ ସେ ସବୁର ସବିଶେଷ ବିବରଣୀ ମୋତେ ଦେଇଥିଲେ । ସରକାରଙ୍କ ସହ ଏକାଠି ବସି କୋରାପୁଟର ବିକାଶକୁ ଆଗେଇନେବାରେ ଦାୟିତ୍ୱ ମୋତେ ବହନ କରିବାକୁ ପଡ଼ିବ ଜାଣି ମୁଁ ବ୍ୟସ୍ତ ହେଉଥିଲି । କିନ୍ତୁ ତରୁଣ ବାବୁଙ୍କ ଯୁକ୍ତି ଅକାଟ୍ୟ ଥିଲା । ପ୍ରଶାସନର ନିକଟସ୍ଥ ହେବା ଓ ଦାରିଦ୍ର୍ୟ ବିରୁଦ୍ଧରେ ସଂଗଠିତ ଭାବେ ଲଢ଼େଇ କରିବାକୁ ଆଗେଇ ଆସିବାକୁ ପ୍ରୋତ୍ସାହନ ଦେବା, ତରୁଣ ବାବୁଙ୍କର ମୋ ପ୍ରତି ଏକ ଅଦ୍ୱିତୀୟ ଅବଦାନ ଥିଲା । କୋରାପୁଟରେ ଆଉ ଜଣେ ଚିହ୍ନା ମଣିଷ ଥିଲେ ଶ୍ରୀଯୁକ୍ତ ଦିଗମ୍ବର ଶତପଥୀ, ନେହରୁ ଯୁବକେନ୍ଦ୍ରର ସଂଯୋଜକ । ରେଭେନ୍‌ସା କଲେଜରେ ସେ ମୋତେ ରସାୟନବିଜ୍ଞାନ ପଢ଼ାଇଥିଲେ ମୁଁ କାଶୀପୁରରେ କାମ କରୁଛି ବୋଲି ଜାଣି ସେ ଖୁବ୍ ଖୁସି ହୋଇଥିଲେ । ପରବର୍ତ୍ତୀ ଦିନମାନଙ୍କରେ ସେ ମୋର ଖୁବ୍ ଘନିଷ୍ଠ ହୋଇଥିଲେ ।



# ୨୧

ଗୁରିଆ ଝୋଡିଆର ଗୋତିମୁକ୍ତି ଖବର କାଶୀପୁରରେ ନିଆଁଭଳି ବ୍ୟାପୀ ଯାଇଥିଲା । ସବୁ ସାହୁକାରମାନେ ଏକାଠି ବସି ବିଚାର କରୁଥିଲେ କ'ଣ କରିବାକୁ ହେବ; କିଏ ହଳ ଧରିବ, କିଏ ଗାଈଗୋରୁ ଚରାଇବ ଏବଂ କିଏ କାଠ ପାଣି ଆଣିଦେବ । କାରଣ ଗୁରିଆକୁ ଦେଖି ଗୋତିଗୁଡା ଗାଁର ନାରାୟଣ ଝୋଡିଆ, ଅମର ସିଂ ଗୁଡ଼ାଗାଁର ବୀର ଝୋଡ଼ିଆ, ଖୁରିଗାଁର ଲମ୍ବୋଦର ଝୋଡିଆ, ମାଣ୍ଡିବିଶି ହଳିଆ ସାହିର ଘାସି ମାଝୀ, ଋଦିଗିରି ଗାଁର ବାରିହା ମାଝୀ ଆଦିଙ୍କ ନେତୃତ୍ୱରେ ବର୍ଷ ବର୍ଷ ଧରି ରହି ଆସିଥିବା ଗୋତିମାନେ ମିଟିଂ କରିଥିଲେ ଓ ଗୋତି ଛାଡିଆସିବାକୁ ନିଷ୍ପତ୍ତି ନେଇଥିଲେ । ଫସଲ ଲଗା ହୋଇଛି ଜମିରେ । ଚାଷ କାମ ସରିନାହିଁ । ହଠାତ ଏମିତି ଗୋତିରୁ ମୁକୁଳି ଆସିବା କମ୍ ସାହସର କଥା ନୁହେଁ । ଅଗ୍ରଗାମୀ ଗୋତିମାନଙ୍କ ପଛରେ ଛିଡ଼ା ହୋଇଛି ଏକଥା ଜାଣିବା ପରେ, ସେମାନଙ୍କର ଆତ୍ମବିଶ୍ୱାସ ହେଲା । ସାହୁକାରମାନଙ୍କ ସମସ୍ତ ପ୍ରକାର ଧମକ ଚମକ ସତ୍ତ୍ୱେ କାଶୀପୁରର ବିଭିନ୍ନ ଗାଁରୁ ପ୍ରାୟ ୩୦ଜଣ ଗୋତି ଛାଡିଥିଲେ ଓ ରାୟଗଡ଼ାର ସବ୍ କଲେକ୍ଟର ଓ କୋରାପୁଟର କଲେକ୍ଟରଙ୍କୁ ଦରଖାସ୍ତ ଦେଇଥିଲେ । ଜଣେ ଗୋତି ରହିଛି ଓ ଛାଡିବାକୁ ଚାହିଁଛି ତାହା ଆଇନ୍ ଅନୁସାରେ ବ୍ୟବସ୍ଥିତ ହେଲେ ମଧ୍ୟ ଅନେକ ଜଟିଳତା ଅଣାଯାଇଛି । ଜାତୀୟ ଗୋତି ନିରୋଧ ପ୍ରକଳ୍ପ ଅନୁସାରେ ଗୋତିମାନଙ୍କୁ ପ୍ରଥମେ ସର୍ଭେ କରାଯାଇ ଚିହ୍ନଟ କରାଯାଏ । କର୍ତ୍ତୃପକ୍ଷ ଏକ କେସ୍ ଆରମ୍ଭ କରନ୍ତି । ଗୋତିମାନଙ୍କୁ ମୁକ୍ତ କରି ଥଇଥାନ କରିବା କାର୍ଯ୍ୟ ଆରମ୍ଭ ହୁଏ । ପ୍ରଥମେ ଗୋତି ରଖିଲେ ସାହୁକାରମାନଙ୍କୁ ଦଣ୍ଡ ବ୍ୟବସ୍ଥା ଥିଲା । ଏ ଭିତରେ ଗୋତି ଆଇନ୍‌କୁ କୋହଳ କରିଦିଆଯାଇଛି ସାହୁକାର ଓ ସ୍ୱାର୍ଥାନ୍ୱେଷୀ ରାଜନୈତିକ ନେତାଙ୍କ ପ୍ରରୋଚନାରେ । ଏବେ ଯଦି ସାହୁକାର କୌଣସି ବ୍ୟକ୍ତିକୁ ଗୋତିରୁ ମୁକ୍ତ ହୋଇଛି ବୋଲି ସାର୍ଟିଫିକେଟ୍‌ଟିଏ ଦିଏନାହିଁ, ତେବେ ସେ ମଣିଷଟି ଗୋତି ମୁକ୍ତି ହୁଏ ନାହିଁ ଓ ଥଇଥାନ ପାଇଁ କୌଣସି ସାହାଯ୍ୟ ପାଏ ନାହିଁ । ଏଇଭଳି ବ୍ୟବସ୍ଥାର ଦୁର୍ବ୍ୟବହାର କରାଯାଇ ସାରା ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ସବୁଠାରୁ ବେଶୀ ସଂଖ୍ୟକ ଗୋତି ଓ ସାହୁକାର ଉଭୟଙ୍କୁ ଚିହ୍ନଟ କରାଯାଇ ଥଇଥାନ କରାଯାଇଛି ବୋଲି ଓଡ଼ିଶା ସରକାର ଦାବି କରିଛନ୍ତି ଓ କେନ୍ଦ୍ରୀୟ ସାହାଯ୍ୟ ପାଇଛନ୍ତି । ଅସଲକଥା ହେଉଛି ଜଣେ ଗୋତିର ଅଭିନୟ କରିବ ଓ ଆଉଜଣେ ସାହୁକାରର । ଜିଲ୍ଲା କର୍ତ୍ତୃପକ୍ଷଙ୍କୁ ଭେଟି ପ୍ରମାଣିତ କରିବେ ଯେ ଗୋତିଟି ମୁକ୍ତ ହୋଇଛି । ଥଇଥାନ ସାହାଯ୍ୟ ତତ୍‌କ୍ଷଣାତ୍ ମିଳିଲେ ତା'କୁ ଗୋତି ଓ ସାହୁକାର ବାଣ୍ଟି ନିଅନ୍ତି । ସରକାରୀ ପରିସଂଖ୍ୟାନରୁ ଜଣା ପଡିଛି ଯେ କଟକ ଜିଲ୍ଲାରୁ ସବୁଠାରୁ ବେଶୀ ସଂଖ୍ୟକ ଗୋତି ଚିହ୍ନଟ କରାଯାଇଛି ଓ ଥଇଥାନ ଅର୍ଥ ଖର୍ଚ୍ଚ କରାଯାଇଛି ରାଜନୈତିକ ଚାପ ଫଳରେ । ମୋତେ ଖୁବ୍ ହସ ଲାଗୁଥିଲା ଏକଥା ଜାଣି ଓ ଦୁର୍ନୀତି କେତେ ବ୍ୟାପିଛି ସହଜରେ ଅନୁମାନ କରାଯାଇ ପାରୁଥିଲା ।

କିନ୍ତୁ ସାହୁକାରମାନେ ସଂଘ କରି ନିଷ୍ପତ୍ତି କରିଥିଲେ ଯେ ଯେଉଁ ଗୋତିମାନେ ବିନା କଥାବାର୍ତ୍ତାରେ ମୁକ୍ତ ହୋଇଛନ୍ତି, ସେମାନଙ୍କୁ ସେମାନେ ଗୋତି ମୁକ୍ତିର ସାର୍ଟିଫିକେଟ୍ ଦେବେ ନାହିଁ । ସାର୍ଟିଫିକେଟ୍ ନମିଳିଲେ ସରକାରୀ ସାହାଯ୍ୟ ମିଳିବ ନାହିଁ । ସରକାରୀ ସାହାଯ୍ୟ ନମିଳିଲେ ଗୋତିମାନେ ଯିବେ କୁଆଡେ ? ପାନେ ଦେବାକୁ ସାହୁକାରମାନେ ଯୋଜନା କରୁଥିଲେ । ଏହାଛଡା ଅଗ୍ରଗାମୀକୁ ମଧ୍ୟ ଉଚିତ୍ ଶିକ୍ଷା ଦେବାକୁ ଷଡଯନ୍ତ୍ର କରିଥିଲେ । ମୋର ସବ୍‌କଲେକ୍ଟର ଓ କଲେକ୍ଟରଙ୍କ ପରିଚୟ ଥିଲା ଓ ଗୋତି ଥଇଥାନ ପାଇଁ ମୁଁ ଖୁବ୍ ଯୋଗାଯୋଗ କରିଥିଲି । ଅନେକ ଥର ବ୍ୟକ୍ତିଗତ ଭାବେ ଭେଟିଥିଲି ମଧ୍ୟ । କୋରାପୁଟରେ ସେତେବେଳେ ଜିଲ୍ଲାପାଳ ଥାଆନ୍ତି ଶ୍ରୀ ଅରୁଣ କୁମାର ସାମନ୍ତରାୟ । ଜଣେ ଦକ୍ଷ ଓ କର୍ମଚଞ୍ଚଳ ଜିଲ୍ଲାପାଳ ହିସାବରେ ସେ ମୋ ଉପରେ ଅନେକ ପ୍ରଭାବ ପକାଇଥିଲେ । ତାଙ୍କର ସାନଭାଇ ଦିଲ୍ଲୀପ ରେଭେନ୍‌ସା କଲେଜରେ ମୋ ସହ ପଦାର୍ଥ ବିଜ୍ଞାନ ଅନର୍ସ ନେଇ ପଢୁଥିଲା । ତେଣୁ ମୋତେ ବି ଶ୍ରୀ ସାମନ୍ତରାୟ ସାନଭାଇ ହିସାବରେ ଦେଖୁଥିଲେ । କାଶୀପୁରର ଗୋତି ଥଇଥାନ ପାଇଁ ସେ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ସବୁବେଳେ ତାଗିଦ୍ କରୁଥିଲେ । କିନ୍ତୁ ସାହୁକାରମାନଙ୍କର ବିନା ସାର୍ଟିଫିକେଟ୍‌ରେ ଗୋତିମାନଙ୍କୁ ସରକାରୀ ସାହାଯ୍ୟ ମିଳିବା ଅସମ୍ଭବ ଥିଲା ।

ଅଗ୍ରଗାମୀ ତରଫରୁ ପାରୁପର୍ଯ୍ୟନ୍ତ କାମ ଯୋଗାଇ ଦିଆଗଲା କେତେ ମାସ ଧରି, କିନ୍ତୁ ତାହା ଯଥେଷ୍ଟ ନଥିଲା । ଆମମାନଙ୍କର ଗୋତିମାନଙ୍କ ସହ ବାର୍ତ୍ତାଳାପ ଓ ପରାମର୍ଶ ଲାଗି ରହିଥିଲା । ସେମାନେ କିନ୍ତୁ ଗୋଟିଏ କଥା କହୁଥିଲେ ଯେ, ଭୋକ ଉପାସରେ ମରିବେ ପଛେ କିନ୍ତୁ ସାହୁକାରର ଦ୍ୱାରସ୍ଥ ହେବେ ନାହିଁ । ଆମେ କହୁଥିଲୁ ଯେ କିଛି ନା କିଛି ସାମୂହିକ କାର୍ଯ୍ୟ ଆରମ୍ଭ କରିବା ପାଇଁ । ମୁକ୍ତ ହୋଇଥିବା ଗୋତି ଓ ତାଙ୍କର ସ୍ତ୍ରୀ ପିଲାମାନେ ବସି ଯୋଜନା କଲେ ଯେ କେଉଁ ପ୍ରକାର ସାମୂହିକ କାର୍ଯ୍ୟକ୍ରମ ଆରମ୍ଭ କରାଯାଇପାରିବ । ନିଷ୍ପତ୍ତି ହେଲା ଯେ କାଶୀପୁର ଅଞ୍ଚଳର ସମସ୍ତ ଗୋତି ଏକାଠି ହୋଇ ମାଳିଗାଁ ଝରଣାରୁ ପାଣି ଆଣିବେ କେନାଲ ବା ବାଟିଆ ଖୋଳି । ମୁଁ ଓ ମୋର ସହକର୍ମୀ ଶରତ ପ୍ରଧାନ ସକାଳୁ ସକାଳୁ ଅମରସିଂଗୁଡା ଗାଁରେ ପହଞ୍ଚିଥିଲୁ । ଗାଁରେ ସମସ୍ତେ କୋଡି, ଶାବଳ, ରଫା ଗଇଁତି ଧରି ବାହାରିଥିଲେ । ଖୁରିଗାଁ, ଅମରସିଂଗୁଡ଼ା, ଶିରିଗୁଡ଼ାର ଆଦିବାସୀ ବାପା, ମାଆମାନେ ମଧ୍ୟ ଏକାଠି ହୋଇଥିଲେ । ପାହାଡ଼ ଉପରୁ ପାଣି ଆଣିବାକୁ କେନାଲ ଖୋଳା ଆରମ୍ଭ ହେଲା । ଲୋକେ ଶାବଳ, ରଫା ସାହାଯ୍ୟରେ କେନାଲ୍ ଖୋଳୁ ଥାଆନ୍ତି ଓ ଝରଣା ପାଣି କେନାଲ୍‌ରେ ବୋହୁଥାଏ ।

ମାଳିଗାଁର ଗଉଡମାନଙ୍କ ସହ କଥାବାର୍ତ୍ତା ଆଗରୁ ହୋଇଥିଲା ବାଟିଆ ତିଆରି କରିବା ବିଷୟରେ । ସେମାନେ ଅମଙ୍ଗ ହେଉଥିଲେ ପ୍ରଥମେ ଓ ପାଣି ଛାଡିବାକୁ କୁଣ୍ଠା ପ୍ରକାଶ କରୁଥିଲେ । କିନ୍ତୁ ଆଦିବାସୀମାନଙ୍କର ପାଣି ଉପରେ ଯେ ହକ୍ ଅଛି ତାହା ମୋତେ ବୁଝାଇବାକୁ ପଡିଥିଲା । ସେମାନେ ଅଳ୍ପଭାଗ ପାଣି ନେବେ ଓ ଆଖୁଋଷ ଉପରେ ତାହାର କିଛି ପ୍ରଭାବ ପଡିବ ନାହିଁ ବୋଲି ମଧ୍ୟ ଆଲୋଚନା ହୋଇଥିଲା । କିନ୍ତୁ ମାଳିଗାଁ ନାଳ ପାଖେ କାମ ଆରମ୍ଭ କରିବାର କିଛି ସମୟ ପରେ ମାଳିଗାଁର ଗଉଡମାନେ ମେଳି ହୋଇ,

ଲାଠି ଟାଙ୍ଗିଆ ଧରି କାର୍ଯ୍ୟସ୍ଥଳକୁ ଆସି କାମ ନକରିବାକୁ ଜୋର ଜବରଦସ୍ତି କରୁଥିଲେ ଓ ଆଦିବାସୀମାନଙ୍କୁ ଧମକ ଚମକ ଦେଉଥିଲେ । ମୁଁ ପାହାଡ ଉପରକୁ ଚଢ଼ି ପାଣି ବାଟିଆରେ ଯିବାର ଦୃଶ୍ୟରେ ବିମୋହିତ ହୋଇଥାଏ । ପାଟି ତୁଣ୍ଡ ଶୁଣି ମୁଁ ଓହ୍ଲାଇ ଆସି ଗଉଡ଼ମାନଙ୍କ ସହ କଥାବର୍ତ୍ତା କରିବାକୁ ଚେଷ୍ଟା କରୁଥାଏ । ଏ ସମୟରେ ଗଉଡ଼ମାନେ ଉତ୍ୟକ୍ତ ହୋଇ ଆଦିବାସୀମାନଙ୍କୁ ଆକ୍ରମଣ କରିଥିଲେ ଲାଠି ଓ ପଥର ଦ୍ୱାରା ଏବଂ ଜଣେ ଦୁଇଜଣଙ୍କୁ ଛାଡିଦେଲେ ଅନ୍ୟମାନେ ପଳାଇ ଯାଇଥିଲେ । ଆମକୁ ଏକୁଟିଆ ଦେଖି ଲାଠି ଓ ପଥର ସାହାଯ୍ୟରେ ଭୀଷଣ ମାଡ଼ମାରିଥିଲେ । ମୁଁ ଆଗରେ ଥିବାରୁ ମୋ ଉପରେ ବେଶୀ ପ୍ରହାର ହୋଇଥିଲା । ମୁଁ ତଳେ ପଡିଯିବାରୁ ଜଣେ ଦୁଇଜଣ ପଥର ସାହାଯ୍ୟରେ ମୋର ମୁଣ୍ଡକୁ ଛେଚି ଦେଇଥିଲେ । ମୁଁ କିଛି ସମୟ ପରେ ଛିଡ଼ା ହୋଇଥିଲି ଓ ସର୍ବାଙ୍ଗ ରକ୍ତାକ୍ତ ହୋଇ ଯାଇଥିଲା । ମୁଁ ଲାଲ ରକ୍ତରେ ଜୁଡୁବୁଡୁ ହୋଇଥିବା ଦେଖି ଆକ୍ରମଣକାରୀମାନେ ଘଟଣାସ୍ଥଳରୁ ପଳାଇଯାଇଥିଲେ । ତା'ପରେ ଆଦିବାସୀମାନେ ମୋତେ ଉଠାଇ ଅମର ସିଂଗୁଡ଼ା ଗାଁକୁ ନେଇଥିଲେ । ଗୋଟିଏ ଖଟ ଅଣାଗଲା ଓ ମୁଁ କିଛି ସମୟ ଶୋଇଥିଲି ସେଠାରେ । କନ୍ଧେନ୍ ବୋଲି ଜଣେ ଆଦିବାସୀ ଭଉଣୀ ଖୁବ୍ କାନ୍ଦୁଥାଏ । ତା'କୁ ଦେଖି ଅନ୍ୟମାନେ କାନ୍ଦିବା ଆରମ୍ଭ କରିଥିଲେ । ମୁଁ ଟିକିଏ ପାଣି ପିଇ ନିଜକୁ ସାହସ ଦେଲି । କାଶୀପୁର ପ୍ରାୟ ୪ କିଲୋମିଟର । ମୋର ସହକର୍ମୀ ଶରତର ସାହାଯ୍ୟ ନେଇ ମୁଁ କାଶୀପୁର ଥାନାରେ ଲିଖିତ ଏତଲା ଦେଲି । ମୁଁ ମାଡ଼ ଖାଇଛି, ମୁଣ୍ଡ ଫାଟିଛି ଖବର କାଶୀପୁରରେ ପ୍ରଚାର ହେବାକୁ ବେଶୀ ସମୟ ଲାଗି ନଥିଲା । ଅନେକ ଲୋକେ ମୋତେ ସେଠାରୁ ଡାକ୍ତରଖାନା ନେଇଥିଲେ । ବନ୍ଧୁ ଡାକ୍ତର ଚୌଧୁରୀ ମୁଣ୍ଡରେ ଷ୍ଟିଚ୍ ପକାଇଲେ । ମୁଁ ଆମର ଲୁଣବନ୍ଧ ଅଫିସକୁ ଫେରିଥିଲି । ଅଫିସରେ ମଧ୍ୟ ସମସ୍ତେ କାନ୍ଦକାନ୍ଦ ଅବସ୍ଥାରେ ଥିଲେ । ଜଣେ କେବଳ ବ୍ୟସ୍ତ ହୋଇନଥିଲେ । ସେ ହେଉଛନ୍ତି ବିଦ୍ୟା, ମୋର ସ୍ତ୍ରୀ । ଆମେ ଅଳ୍ପ କେଇ ଦିନ ତଳେ ବିବାହ କରିଥାଉ । ରାଜସ୍ଥାନର ତିଲୋନିଆରେ ଦେଖା ଓ ଭଲପାଇବାର ଆରମ୍ଭ । ସେ ଆନ୍ଥ୍ରୋପୋଲୋଜିର ଛାତ୍ରୀ । ଆଦିବାସୀଙ୍କ ଗହଣରେ କାମ କରିବା ପାଇଁ ଆଗ୍ରହୀ । ଆଦିବାସୀ ଅଞ୍ଚଳରେ ଗରିବଙ୍କ ପକ୍ଷରେ ଲଢ଼ିଲେ ମୁଣ୍ଡ ଫାଟିବା କିଛି ନୂଆ କଥା ନୁହେଁ ବୋଲି ବିଭିନ୍ନ ଅଧ୍ୟୟନରୁ ସେ ଜାଣିଥିଲେ । ମୋ ପାଖରେରହି ସେଦିନ ସେ ଆଶା ଓ ବିଶ୍ୱାସ ଦେଉ ଥାଆନ୍ତି ।

କାଶୀପୁରରେ ମୁଁ ମାଡ ଖାଇ ଆହତ ହେବା ଖବର ରାୟଗଡ଼ା ଓ କୋରାପୁଟରେ ଶୀଘ୍ର ପହଞ୍ଚିଗଲା । ଜିଲ୍ଲାପାଳ ଓ ଏସ୍.ପି. ମୋର ବନ୍ଧୁ ଥିଲେ । ସବ୍‌କଲେକ୍ଟର ଓ ଡି.ଏସ୍.ପି. ମଧ୍ୟ ପରିଚିତ ଥିଲେ । ସମସ୍ତେ ଉଦ୍ୟମ କରିଥିଲେ ଯେ ମୁଁ କଟକ 'ମେଡିକାଲ କଲେଜ'କୁ ସ୍ଥାନାନ୍ତରିତ ହୁଏ । ମୁଣ୍ଡରେ ଆଘାତ ଗୁରୁତର । ପରେ ସମସ୍ୟା ଜଟିଳ ହେବ । ଆମ ଅଫିସକୁ କ୍ରମାଗତ ଭାବେ ଶହଶହ ଲୋକଙ୍କ ପଟୁଆର ଆସିଥିଲା । ଆଦିବାସୀ ମାଆମାନେ, ବାପାମାନେ ଆସିଥିଲେ । କିଏ ଅଣ୍ଡା ଆଣିଛି ତ, କିଏ ଚାଉଳ ମାଣେ ଧରିଛି । କହୁ ଥାଆନ୍ତି ଯେ ମୁଁ ସେମାନଙ୍କ ମଙ୍ଗଳ ପାଇଁ, ଉନ୍ନତି ପାଇଁ ମାଡ ଖାଇଲି । ମୋତେ ମାରିବାକୁ

କାଶୀପୁର ସାହୁକାରମାନେ ଷଡଯନ୍ତ କରିଥିଲେ । ଗଉଡ଼ମାନଙ୍କୁ ପୂର୍ବଦିନ ସନ୍ଧ୍ୟାରେ ମଦ ଟଙ୍କା ଦେଇଥିଲେ । ମୁଁ ଭାଗ୍ୟ ଜୋରରେ ବଞ୍ଚିଗଲି । ପରେ ଘଟଣାଟି ପରିଷ୍କାର ହୋଇଗଲା । ସବୁଦିନ ପାଇଁ ରାସ୍ତାରୁ ହଟାଇ ଦେବାକୁ ସାହୁକାରମାନେ ବିଧିବଦ୍ଧ ଯୋଜନା କରିଥିଲେ । ଏକଥା ସତ ଯେ, ମୁଁ ଓ ମୋର ସହକର୍ମୀ ଛଡ଼ା ପ୍ରାୟ କାଶୀପୁର ଲୋକ ଓ ଗାଁର ଆଦିବାସୀମାନେ ପ୍ରାୟତଃ ମୋର ଉପରେ ମରଣାତ୍ମକ ଆକ୍ରମଣ ହେବାର ସୂଚନା ପାଇଥିଲେ । ମୁଁ ଅବାକ୍ ହେଲି ଯେ ଜଣେ କେହି ହେଲେ ମୋତେ ସତର୍କ କରାଇ ନଥିଲେ । କିନ୍ତୁ ମୋ ଉପରେ ଆକ୍ରମଣର ସୁଫଳ ଖୁବ୍ ଶୀଘ୍ର ମିଳିଲା । କାଶୀପୁରର ଗୋଡିମୁକ୍ତି ଆନ୍ଦୋଳନ ସାରା ଭାରତରେ ଦୃଷ୍ଟି ଆକର୍ଷଣ କରିଲା । ଅନେକ ପଦସ୍ଥ ସରକାରୀ କର୍ମଚାରୀ, ସ୍ୱେଚ୍ଛାସେବୀ ସଂଗଠନ ଓ ଶୁଭେଚ୍ଛୁମାନେ ସମ୍ବେଦନା ବାର୍ତ୍ତା ପଠାଇଥିଲେ ଓ ସମର୍ଥନ ପ୍ରଦର୍ଶନ କରିଥିଲେ । ମୁଁ ଯେ ସେଦିନମାନଙ୍କରେ ଏକ ଯୁଦ୍ଧର ସେନାପତି ବା ନାୟକ ହୋଇସାରିଛି ବୋଲି କେହି କେହି ଅତିରଞ୍ଜିତ କରି ବର୍ଣ୍ଣନା କରୁଥିଲେ ।



# ୨୨

କାଶୀପୁରର ବର୍ଷାଦିନଗୁଡ଼ିକୁ ଯିଏ ଅଙ୍ଗେ ନିଭାଇଛି, ସେ କେବେ ଭୁଲି ପାରିବ ନାହିଁ । ଜୁଲାଇ ଓ ଅଗଷ୍ଟ ମାସ ଧରି ଅବିଶ୍ରାମ ବର୍ଷା ଟପଟପ ପଡ଼ିଥାଏ । ଝିପି ଝିପି ବର୍ଷା ବା ଲଗାଣ ବର୍ଷା ଦିନରାତି ଚାଲିଥାଏ । ସୂର୍ଯ୍ୟ ପ୍ରାୟ ଏକମାସ ଧରି ଦେଖାଯାଆନ୍ତି ନାହିଁ । ମେଘ ସବୁ ଦେହରେ ଘସି ହୋଇଯାଏ । ନିଶ୍ୱାସରେ ଜଳୀୟ ବାଷ୍ପ ଅନୁଭବ କରିହୁଏ । ଦେହକୁ ଚାଦରରେ ଢ଼ାଙ୍କିବାକୁ ପଡ଼େ । ବାହାରକୁ ବାହାରି ହୁଏ ନାହିଁ । ଗାଁ ମାନଙ୍କରେ ପଶି ହୁଏ ନାହିଁ । ବଡ଼ ଦୁର୍ଦ୍ଦିନ ସମୟ । ଖାଦ୍ୟାଭାବର ଦିନଗୁଡ଼ିକ । କର୍ମକଷଣରୁ କାହାଣୀ ହିଁ କେବଳ ଶୁଣିବାକୁ ମିଳେ । ଏ ସବୁ ସତ୍ତ୍ୱେ ଆଦିବାସୀ ପରିବାର ଚୁପ୍ ହୋଇ ବସେ ନାହିଁ । ଛତ୍ରୁ, କରଡ଼ି, କନ୍ଦା ଖୋଳୁଥାଏ । ଆଉ ଖୋଜିଥାଏ କାମଧନ୍ଦା । କାଶୀପୁର ହାଟ ଫାଙ୍କା ପଡ଼ିଯାଏ । ସାହୁକାର ଦାଣ୍ଡପିଣ୍ଡାରେ ଅବଶ୍ୟ ଗହଳ ଲାଗିଥାଏ । ଆଦିବାସୀ ମାଆମାନେ ଶିଆଳି ପତ୍ରର ବର୍ଷାତି ବା ରେନ୍ କୋଟ୍ ତିଆରି କରି ଧାନ ବିଲମାନଙ୍କର ଘାସ ବାଛୁଥାଆନ୍ତି ଓ ଅଳସୀ କ୍ଷେତରେ ମାଡ଼ିଥିବା ପରାଙ୍ଗପୁଷ୍ଟ ଲତାକୁ ସଫା କରନ୍ତି । ଏ ସବୁ ନକରିଲେ କିଛି ହେଲେ ଫସଲ ପାଚି ହେବ ନାହିଁ । ବର୍ଷ ଯାକର ପରିଶ୍ରମ ବୃଥା ହୋଇଯିବ । ତେଣୁ ବର୍ଷା ମାସ ସାରା ଆଦିବାସୀ ଭାରି ବ୍ୟସ୍ତତା ଭିତରେ ରହେ । ଦଶହରା ଯାତ୍ରାକୁ ଅପେକ୍ଷା କରିଥାଏ । ଘରେ କିଛି ଦିନ ପରେ ମକା, ମାଣ୍ଡିଆ, ଡ଼ଙ୍ଗରଧାନ ସବୁ ଅମଳ ହୋଇଯିବ । ନୂଆ ମାଣ୍ଡିଆ, ନୂଆ ମକା, ନୂଆ ଚାଉଳ ସବୁ ତକ ସୁଆଦିଆ । ବର୍ଷାମାସର ଦୁଃଖ ଅପସରି ଯାଏ । ଆମେ ପୁଣି ନୂଆ କଳ୍ପନା ଓ ଯୋଜନା ନେଇ ପ୍ରତି ଗାଁମାନଙ୍କୁ ସନ୍ଧ୍ୟାରେ ବୁଲିଯାଉ । ରାତ୍ରିସ୍କୁଲ ପୁଣି ଆରମ୍ଭ ହୋଇଯାଏ । ଲଣ୍ଠନ ଆଲୁଅ ଚାରିପାଖେ ପିଲାମାନେ ଏବଂ ଗୁରୁଭାଇ ବା ଗୁରୁଭଉଣୀମାନେ ବସିଥାଆନ୍ତି । ଉପରେ ନିର୍ମଳ ଆକାଶ ଓ ଜହ୍ନରାତି । ଦେହରେ ଟିକିଏ ଟିକିଏ ଶୀତ ଶିହରଣ ସୃଷ୍ଟି କରୁଥାଏ ।

କାଶୀପୁରରେ କେବେ ଆଦିବାସୀ ରାଜା ଥିଲା ନିଶ୍ଚିତ । ରାଜା ନଥିଲେ ବି ସାଓଁତା ଥିଲା, ଜାନୀ ଥିଲା, ଦିସାରି ଥିଲା । ଅନେକ ବର୍ଷ ଧରି ଏଠାରେ ପ୍ରକୃତରେ ହିନ୍ଦୁ ରାଜା ଶାସନ କରି ଆସିଛି । ଦଶହରା ଯାତ୍ରା କାଶୀପୁରର ମାଣିକେଶ୍ୱରୀଙ୍କ ପାଇଁ । ଅଷ୍ଟମୀ ଦିନ ରାତ୍ରିରେ ପ୍ରତି ଗାଁର ଲୋକେ ବୋଦା ବଳି ପକାଇବାକୁ ଆଣିଥାଆନ୍ତି । ସାଙ୍ଗରେ ପିଲାଛୁଆ, ଢ଼େକଚି, ବାଲଟି । ସମସ୍ତେ ଚାନ୍ଦା କରି ରାଜାଙ୍କ ପାଇଁ ଭେଟି ଆଣନ୍ତି । ରାଜା ମଧ୍ୟ ପ୍ରତି ଗାଁକୁ ଗୋଟିଏ ଲୁଗା ଓ କିଛି ଚାଉଳ ପ୍ରତିଦାନ ହିସାବରେ ଦେବେ । ବୋଦା ବଳିପଡ଼ିଲା ପରେ ତାକୁ ଭୋଜି କରନ୍ତି ସମସ୍ତେ । ଦଶହରା ଦିନ ସବୁ ଗାଁର ପୁରୁଷ, ସ୍ତ୍ରୀ, ଧାଙ୍ଗଡ଼ା ଓ

ଧାଙ୍ଗଡ଼ୀ କାଶୀପୁର ଠାରେ ଏକାଠି ହୁଅନ୍ତି । ଗୀତ ନାଚ ଚାଲେ । ଦଶହରା ଯାତ୍ରା ଆନନ୍ଦ ମଉଚ୍ଛବର ସମୟ । କିନ୍ତୁ ରାଜାଙ୍କ ଦଶହରାକୁ ଆଦିବାସୀ ପ୍ରଜା ଖୁବ୍ ମାନେ । କେଜାଣି କେଉଁ ଦିନରୁ ପରମ୍ପରା ଚାଲି ଆସିଛି । ରାଜାଙ୍କର ସବୁ ପର୍ବକୁ ଆଦିବାସୀ ଖୁବ୍ ଉତ୍ସାହର ସହ ପାଳନ କରୁଛି । ଅବଶ୍ୟ ଆଦିବାସୀର ପୁଷ୍ ପର୍ବ ଓ ଚୈତ୍ର ପର୍ବ ରାଜା ମାନେ ନାହିଁ । ଅଣଆଦିବାସୀମାନେ ତାହାକୁ ଶୁଭଦିନ ବୋଲି ଭାବନ୍ତି ନାହିଁ । ବାରମାସରେ ତେରପର୍ବ ଆଦିବାସୀ ମାନୁଥାଏ । ଆମର ଏ ବିଷୟରେ ଖୁବ୍ ଆଲୋଚନା ଚାଲେ । ଆଦିବାସୀଙ୍କର କିଛି ଧର୍ମ ଅଛି କି ? ସେମାନେ ହିନ୍ଦୁ କି ନୁହଁ ? ତାଙ୍କ ଭିତରେ ଜାତି ପ୍ରଥା ଅଛି କି ନାହିଁ? ଜଗନ୍ନାଥ ମହାପ୍ରଭୁ ଆଦିବାସୀମାନଙ୍କର ଆରାଧ୍ୟ ଦେବତା ବୋଲି ମୁଁ ଆଗରୁ ପଢ଼ିଥିଲି । ରଥଯାତ୍ରା ଓ ଦଶହରା ଆଦିବାସୀଙ୍କ ମୁଖ୍ୟ ପର୍ବ କେତେ ଯୁଗରୁ ହୋଇସାରିଛି । ଆମ ଭିତରେ ଆଦିବାସୀମାନଙ୍କର ଧର୍ମକୁ ନେଇ ଅନେକ ଯୁକ୍ତିତର୍କ ଚାଲେ । ଆମର ଗୁରୁ ଭାଇଙ୍କ ମିଟିଂ ବେଳେ ଏଇ ପ୍ରଶ୍ନ ବାରବାର ଉଠିଥାଏ । ଆଦିବାସୀ ପୂଜା କରେ ପ୍ରକୃତିକୁ - ଗଛଲତା, ପ୍ରାଣୀଜଗତ ଓ ଧରିତ୍ରୀ ମାତାକୁ, ଆକଶକୁ । କିନ୍ତୁ ସାରା ପୃଥିବୀରେ ଆଦିବାସୀମାନଙ୍କୁ ବିଭିନ୍ନ ଧର୍ମରେ ଧର୍ମାନ୍ତରୀକରଣ କରିବାକୁ ଗତ କେତେ ଶତାବ୍ଦୀ ଧରି ଉଦ୍ୟମ ଚାଲି ଆସିଛି । ଏ ଅଞ୍ଚଳରେ ଖ୍ରୀଷ୍ଟିୟାନ୍ ମିଶନାରୀମାନେ ଅହରହ ଚେଷ୍ଟା କରୁଛନ୍ତି । ହିନ୍ଦୁ ଧର୍ମ ସମର୍ଥନକାରୀ ଆର୍.ଏସ୍.ଏସ୍ ବା ବିଶ୍ୱହିନ୍ଦୁ ପରିଷଦ ମଧ୍ୟ ଖୁବ୍ ବ୍ୟଗ୍ର ଅଛନ୍ତି ଯେ ଆଦିବାସୀମାନେ ମୂଳତଃ ହିନ୍ଦୁ ଓ ହିନ୍ଦୁଧର୍ମର ଦାୟାଦ । ତେଣୁ ସେମାନେ ଅନ୍ୟ ଧର୍ମରେ ଦୀକ୍ଷିତ ହେବା ଅନ୍ୟାୟ । ଶୁଣାଯାଏ ଯେ କାଶୀପୁର ପାଖ କଳାହାଣ୍ଡି ଜିଲ୍ଲାରେ ମୁସଲମାନମାନେ ମଧ୍ୟ ଆଦିବାସୀ ଓ ହରିଜନମାନଙ୍କୁ ତାଙ୍କ ଧର୍ମରେ ମିଶାଇବାକୁ ଚେଷ୍ଟା କରୁଛନ୍ତି । ଆର୍ଥିକ ଦୃଷ୍ଟିରୁ ଏ ଅଞ୍ଚଳ ଏକ ଉପନିବେଶ ହୋଇସାରିଛି । ଧର୍ମ ଏବଂ ସଂସ୍କୃତି ଦୃଷ୍ଟିରୁ ଅନ୍ୟ ଏକ ଉପନିବେଶବାଦ ମଧ୍ୟ ଅନୁପ୍ରବେଶ କରିପାରିଛି । ସବୁ ମଣିଷ ସମାନ ଓ ମାନବିକତାର ମୂଲ୍ୟବୋଧରେ ମହାୟାନ, ତାହା କେହି ସ୍ୱୀକାର କରୁନାହାନ୍ତି । ଜଣେ ତହସିଲ୍‌ଦାର ମୋତେ ଗୋଟିଏ ରେଜିଷ୍ଟର ଦେଖାଇଥିଲେ ଯାହା ସେ ଜଣେ ଖ୍ରୀଷ୍ଟିୟାନ୍ ପାଦ୍ରୀଙ୍କ ଠାରୁ ଜବତ୍ କରିଥିଲେ । ଏଥିରେ କାଶୀପୁରର ୨୬ଟି ଗାଁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇ ସାରିଲେଣି ବୋଲି ସେମାନଙ୍କର ନାମ ଲେଖାଯାଇଛି । କିନ୍ତୁ କିଏ କେଉଁ ଧର୍ମରେ ବିଶ୍ୱାସ କରୁଛି, ସମ୍ପୂର୍ଣ୍ଣ ଗୋପନୀୟ ରଖାଯାଇଛି ।

ଦିନେ ମୁଁ କୋରାପୁଟ ଜିଲ୍ଲାପାଳଙ୍କ ପାଖରେ ବସିଥାଏ ଏକୁଟିଆ । ସେ ହଠାତ୍ ମୋତେ ଅନୁରୋଧ କରି କହିଲେ ଯେ, ଖାଦ୍ୟ ବଦଳରେ କାମ ଯୋଜନାରେ ଚାଉଳ ଆଦି ମିଳିବ । ଟଙ୍କା ବି ଆସିବ, ଅଗ୍ରଗାମୀ ତାହାର ପରିସର ଭିତରେ ଗୋଟିଏ ମନ୍ଦିର ତିଆରି କରୁ । ଏ ପ୍ରସ୍ତାବ ମୋତେ ବଡ଼ ଅଡୁଆ ଲାଗିଲା । ମୁଁ କହିଲି ଯେ ମନ୍ଦିର ଗଢ଼ିବା କିଛି ଖରାପ କଥା ନୁହେଁ, କିନ୍ତୁ ଗାଁର ଲୋକମାନେ ଆସି ବସାଉଠା କରିବାକୁ ଆମର ଟ୍ରେନିଂ ଘର ଅଛି, ମନ୍ଦିର ତୋଳିବା ସମ୍ଭବ ଯଦି ପାଖ କୁମ୍ଭାରଶୀଳା ଗାଁରେ କରାଯାଇପାରେ । ସେ ମୋତେ କାହିଁକି ଏ ପ୍ରସ୍ତାବ ଦେଇଥିଲେ ହଠାତ୍ କହି ନଥିଲେ । କିନ୍ତୁ ଗୋଟାଏ ମନ୍ଦିର

ତୋଳିବାକୁ ସେ ମୋ ଉପରେ ଚାପ ପକାଇନଥିଲେ । ଅନେକ ଦିନ ପରେ ସେ ସୂଚନା ଦେଇଥିଲେ ଯେ ଆମେ ଆଦିବାସୀ ଓ ହରିଜନମାନଙ୍କୁ ଧର୍ମାନ୍ତରୀକରଣ କରୁଛୁ ବୋଲି କିଏ ଜଣେ ମାଣ୍ଡିବିଶି ଅଞ୍ଚଳରୁ ଅଭିଯୋଗ ବାରମ୍ବାର କରୁଛି । ଆମେ ବିଦେଶୀ ସାହାଯ୍ୟ ଆଣୁଛୁ । ଗୋରା ବିଦେଶୀମାନେ ମଧ୍ୟ ଆମ ପାଖକୁ ଯିବା ଆସିବା କରୁଛନ୍ତି । ବିକାଶ ଓ ସେବା ନାଁରେ ଆମେ ଧର୍ମ ପ୍ରଚାର କରୁଛୁ ବୋଲି ତୀବ୍ର ଅଭିଯୋଗ । ଯେଉଁ ଗାଁର ଲୋକମାନେ ବେଶୀ ସହଯୋଗ କରୁଥାଆନ୍ତି ଆମ ସହିତ, ସେହି ଗାଁ ମାନଙ୍କରେ ବେଶୀ ଆମ ବିରୁଦ୍ଧରେ ପ୍ରଚାର ହେଉଥାଏ । ଆମେ ଆଦିବାସୀଙ୍କ ଧର୍ମ ନେବୁ ବୋଲି ଆଦିବାସୀଙ୍କୁ ଉସୁକାଇ ଦିଆଯାଇଥାଏ । ଗୋରା ସରକାର ପୁଣି ଆମ ଜରିଆରେ ଆସି ଶାସନ କରିବେ ବୋଲି କୁତ୍ସାରଟନା କରାଯାଇଥାଏ । ମାଣ୍ଡିବିଶି ସ୍କୁଲର ବ୍ରହ୍ମପୁର ଅଞ୍ଚଳରୁ ଆସିଥିବା ଜଣେ ଶିକ୍ଷକ ଓ ଗୋଡ଼ିବାଲିର ଜଣେ ସ୍ଥାନୀୟ ଆଦିବାସୀ ଯୁବକ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ସକ୍ରିୟ ସଦସ୍ୟ ଥାଆନ୍ତି । ସେମାନେ ରୀତିମତ ମୋ ବିରୁଦ୍ଧରେ ଓ ଆମ ସଂସ୍ଥା ବିରୁଦ୍ଧରେ ଅଭିଯୋଗ ଆଣୁଥାଆନ୍ତି ଯେ ଆମର ମୁଖ୍ୟ କାର୍ଯ୍ୟ ହେଉଛି ଧର୍ମ ପ୍ରଚାର । ଅନ୍ୟ ସବୁ କିଛି କେବଳ ଅଭିନୟ ମାତ୍ର । ସମ୍ଭବତଃ କୋରାପୁଟ ଜିଲ୍ଲାପାଳ ଏ ସବୁ ଅଭିଯୋଗ ଉପରେ ଗୁରୁତ୍ୱ ଦେଇଥିବେ ଓ ଜଣେ ଶୁଭେଚ୍ଛୁ ହିସାବରେ ଆମମାନଙ୍କର ସୁରକ୍ଷା ପାଇଁ ମନ୍ଦିର ଗଢ଼ିବାକୁ ପ୍ରସ୍ତାବ ଦେଇଥିବେ । ମୁଁ ସବୁକଥା ଅନେକ ଡ଼େରିରେ ବୁଝିଲି ।

ଆମର ସହକର୍ମୀମାନେ ଗଣେଶ ପୂଜା ବା ସରସ୍ୱତୀ ପୂଜା କରିଲେ କାଶୀପୁରର ବ୍ରାହ୍ମଣପୂଜକ ବେଳେବେଳେ ମନା କରିଦିଏ ଯେ, ଖ୍ରୀଷ୍ଟିୟାନ୍ ଧର୍ମ ପ୍ରଚାର କରୁଥିବା ସଂସ୍ଥାକୁ ପୂଜା କରିଗଲେ ଲୋକେ କ'ଣ କହିବେ ? ଆମର କର୍ମୀ ବୈଠକରେ ଏକଥା ବାରମ୍ବାର ଉଠୁଥାଏ ଯେ ଆମକୁ ବଦନାମ କରିବା ପାଇଁ ସାହୁକାରମାନେ ଧର୍ମର ଅସ୍ତ୍ର ବ୍ୟବହାର କରୁଛନ୍ତି । କେହି କେହି କହିଲେ ଯେ ଶ୍ରୀ ଜଗନ୍ନାଥ ଚକାଡ଼ୋଳା ଷ୍ଟିକର୍ ସବୁ ଆଡ଼େ ମାରିବା ପାଇଁ । ଆଉ କେତେ ଜଣ କହିଥିଲେ ଯେ ଶ୍ରୀ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଚିତ୍ର ଆମର ଅଫିସ କାନ୍ଥରେ ମାରିବା ପାଇଁ । ଜଣେ ପ୍ରସ୍ତାବ ଦେଇଥିଲେ ଯେ ମୋ ଅଫିସ୍ ଘରେ ଗୋଟାଏ ବଡ଼ ଗଣେଶ ମୂର୍ତ୍ତି ରଖିବା ପାଇଁ । କିନ୍ତୁ ଆମକୁ ଜଣେ ହେଲେ କେହି ଆଦିବାସୀ ଭାଇଭଉଣୀ ପଚାରି ନାହିଁ ଆମର ଧର୍ମ କ'ଣ ଓ ଆମେ ଧର୍ମ ପ୍ରଚାର କରୁଛୁ କି ନାହିଁ । ଏ ଥିଲା ବିଶ୍ୱାସର ଏକ ବୁଝାମଣା । ଆମେ ତାଙ୍କସହ ଧର୍ମ ଓ ପରମ୍ପରା ବିଷୟରେ କେବେ ଆଲୋଚନା କରିନାହୁଁ । କିଏ ଯଦି ପୋଢ଼ ବା ଗୋରୁ ମାରି ଖାଇଲା ଓ ଆମେ ଦେଖିଦେଲୁ, ସେମାନେ ଲାଜରେ ମୁହଁ ଲୁଚାନ୍ତି ସତ, କିନ୍ତୁ ଆମେ କେବେ ସେମାନଙ୍କୁ ଘୃଣା କରିନାହୁଁ । କାଶୀପୁରର ଜଳବାୟୁ ଓ ଆଦିବାସୀର ସଂସ୍କୃତି ମାଗିଥାଏ ମଦ ଓ ମାଂସ । ଏଇ ମଦ ମାଂସ ପାଇଁ ଆଜି ଆଦିବାସୀ ଟଳିଟଳାନ୍ତ । ମଦ ପିଇବାକୁ ଆମେ ନିଶ୍ଚିତ ଭାବେ ଆଦିବାସୀଙ୍କୁ ମନା କରିଛୁ, କିନ୍ତୁ ଛେଳି, କୁକୁଡ଼ା, ଘୁଷୁରୀ, ଗୋରୁ ମାଂସ ଖାଇବାକୁ ଆମେ କେବେ ରୋକି ନାହୁଁ । ଯେଉଁଠି ଅନାହାର ଲାଗି ରହିଛି, ସେଠାରେ ଶରୀର ପାଇଁ ଆବଶ୍ୟକ ପ୍ରୋଟିନ୍ । ଡାଲି ଜାତୀୟ ଖାଦ୍ୟ ଏଠାରେ ଶହ ଶହ ଟନ୍ ଉତ୍ପାଦିତ ହୁଏ ସତ, କିନ୍ତୁ

ଆଦିବାସୀ ତାକୁ ଖାଇପାରେ ନାହିଁ। ଆଦିବାସୀ ଦୁଗ୍ଧ କେବେ ପିଏ ନାହିଁ । ତେବେ ପ୍ରୋଟିନ୍ ପାଇଁ ସେ କ'ଣ ଖାଇବ ? କେବେ କେମିତି ଶୁଖୁଆ ଓ ପର୍ବପର୍ବାଣିରେ ବଳି ହେଉଥିବା ସାମଗ୍ରୀ ଛଡ଼ା ଆଉ ତାକୁ କ'ଣ ମିଳେ ?

କାଶୀପୁର ହେଉଛି କନ୍ଧ ଓ ପରଜା ମାନଙ୍କର ଦେଶ । କନ୍ଧମାନେ ତିନିପ୍ରକାର - ଦେଶିଆ, କୁଇ, ପେଙ୍ଗ । ପରଜାମାନେ ହେଲେ ଝୋଡ଼ିଆ ଓ ପରଜା । ଉଭୟଙ୍କ ଭିତରେ ସାମଞ୍ଜସ୍ୟ କିଞ୍ଚିତ୍ ଓ ପାର୍ଥକ୍ୟ ଅନେକ । ଭାଷା, ସଂସ୍କୃତି,ପୂଜାପାର୍ବଣ, ରୀତିନୀତି ସବୁ ସ୍ୱତନ୍ତ୍ର । ସମସ୍ତେ କିନ୍ତୁ ଅମୃତର ସନ୍ତାନ । ଯେତେବେଳେ ବର୍ଷା ଅନବରତ ଲାଗିଥାଏ ମୁଁ ସେମାନଙ୍କ କଥା ଭାବିଥାଏ ଓ ଏହା ଅସରନ୍ତି ହୋଇଯାଏ । ଆମମାନଙ୍କର ବୌଦ୍ଧିକ ଜଟିଳତା ସେମାନଙ୍କୁ ସ୍ପର୍ଶ କରିନାହିଁ । ଆମ ମନର ଛନ୍ଦକପଟ ସେମାନଙ୍କୁ ଛୁଇଁନାହିଁ । ସେମାନେ ସମ୍ଭବତଃ ଜାଣିନାହାନ୍ତି ଯେ ସେମାନଙ୍କୁ ନେଇ ରାଜନୀତି ଓ ଅର୍ଥନୀତିର ଖେଳ ଚାଲିଛି । ସେମାନେ ଜାଣିନାହାନ୍ତି ଯେ ସେମାନଙ୍କ ପାଇଁ କେତେ ଗବେଷକ ଓ ବିଶେଷଜ୍ଞ କେତେ ଅଧ୍ୟୟନ କରୁଛନ୍ତି, ତାଙ୍କ ପାଇଁ ଯୋଜନାର ଯେଉଁ ସବୁ ଦଲିଲ୍ ତିଆରି ହୋଇଛି, ତାହା ସେମାନେ ଜୀବନରେ କେବେହେଲେ ଦେଖିନାହାନ୍ତି । ସବୁ ମୂଳରେ ସେମାନେ ଅଛନ୍ତି । ଅବଶ୍ୟ ସେମାନେ କେଉଁଠି ନାହାନ୍ତି । ସେମାନଙ୍କର ଧର୍ମ ଆଜି ପର୍ଯ୍ୟନ୍ତ ଅସଲରେ ଚିହ୍ନଟ କରାଯାଇ ନାହିଁ ।



## ୨୩

କାଶୀପୁରର ଆଦିବାସୀ ବହୁଳ ଇଲାକା ଓ ଏହା ଅନୁସୂଚୀତ ଅଞ୍ଚଳ ବା ସିଡ୍ୟୁଲଡ଼୍ ଏରିଆ ଅନ୍ତର୍ଭୁକ୍ତ । ସମ୍ବିଧାନର ପଞ୍ଚମସୂଚୀ ବା ଫିଫ୍ଥ ସିଡ୍ୟୁଲର ବ୍ୟବସ୍ଥା ଓ ନୀତିନିୟମ ଦ୍ୱାରା ଏ ଅଞ୍ଚଳ ପ୍ରତିବନ୍ଧିତ । ଏ ଅଞ୍ଚଳ ଓଡ଼ିଶାର ରାଜ୍ୟପାଳଙ୍କ ବାର୍ଷିକ ରିପୋର୍ଟରେ ସ୍ଥାନ ପାଏ କି ନାହିଁ ଜାଣିବାର କୌଣସି ଉପାୟ ନାହିଁ । ଏ ଅଞ୍ଚଳର ଲୋକେ ମରିହଜିଗଲେ ତାହାର ସମ୍ବାଦ ବାହାର ପୃଥିବୀ ଜାଣେକି ନାହିଁ କିଏ କହିବ ? ଓଡ଼ିଶାର ଖ୍ୟାତନାମା ବୁଦ୍ଧିଜୀବୀ ଓ ସମାଜବାଦୀ ନେତା ସ୍ୱର୍ଗତ କିଶନ ପଟ୍ଟନାୟକଙ୍କଠାରୁ ତାଙ୍କର ବାଲ୍ୟାବସ୍ଥା ସମୟର କାଶୀପୁରର ପରିସ୍ଥିତିର କିଛି ଆଭାସ ପାଇଥିଲି । କେବେ କେମିତି ଅବସରପ୍ରାପ୍ତ ସରକାରୀ କର୍ମଚାରୀଙ୍କ ସହ ବାର୍ତ୍ତାଳାପ ବେଳେ ମଧ୍ୟ କାଶୀପୁରର ସ୍ୱାଧୀନତା ପରର ଦୃଶ୍ୟାବଳୀର ଚିତ୍ର ମିଳିଥାଏ । କାଶୀପୁରର ଘନ ଜଙ୍ଗଲକୁ ବିଚାରକୁ ନେଇ ସରକାର ବାହାଦୁର ବି.ଡି.ଓଙ୍କ ଗମନାଗମନ ପାଇଁ ହାତୀର ବ୍ୟବସ୍ଥା କରିଥିଲେ ବୋଲି ମୁଁ ବରିଷ୍ଠ ପ୍ରଶାସନ ସ୍ୱର୍ଗତ ଶିବରମଣଙ୍କଠାରୁ ଶୁଣିଥିଲି । କହିବାକୁ ଗଲେ କାଶୀପୁର ଏକ ଦୁର୍ଗମ ଓ ଅଭେଦ୍ୟ ଅଞ୍ଚଳ ଥିଲା ଓ ବାହାର ଦୁନିଆ ସହ ସମ୍ପର୍କ ଖୁବ୍ ଦୁର୍ବଳ ଥିଲା । ସୂର୍ଯ୍ୟ ଉଦୟ ହେଉଥିଲା ଓ ଅସ୍ତ ହେଉଥିଲା । ଛ'ମାସ ବର୍ଷା, ଛ'ମାସ ଶୀତ । ଅଧା ଆଲୁଅ ଓ ଅଧା ଅନ୍ଧାର । ଉଚ୍ଚ ପାହାଡ଼ ଓ ଗଭୀର ଉପତ୍ୟକା । ଆଦିବାସୀମାନେ ଗୀତ ମନେ ମନେ ରଚନା କରନ୍ତି ଓ ସଂଗୀତର ତାଳେ ତାଳେ ତାକୁ ବି ଗାଇ ଥାଆନ୍ତି । ଆଦିବାସୀ ଧାଙ୍ଗଡ଼ା ଓ ଧାଙ୍ଗଡ଼ୀ ଉଲ୍ଲାସର ସହ ନାଚି ପାରନ୍ତି ଓ ଉଦ୍ଦାମତାର ସହ ବିଭୋର ହୁଅନ୍ତି । କିନ୍ତୁ ଏହା ବାହାରେ ଏ ସଂଘର୍ଷର ପୃଥିବୀ ଅଛି ତାଙ୍କ ପାଇଁ, ଆଦିବାସୀ ସମ୍ଭବତଃ ଲଢ଼ାଇ କରୁଛି ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ । ବ୍ୟବସ୍ଥା ସହ ଓ ବ୍ୟବସ୍ଥାର ରକ୍ଷକମାନଙ୍କ ସହ ସେମାନଙ୍କର ଲଢ଼ାଇ ସରିନାହିଁ ।

ଆମେ ସ୍ୱେଚ୍ଛାସେବୀମାନେ ଯେତେବେଳେ ସବୁ ଗାଆଁରୁ ଗାଆଁକୁ ଚାଲି ଚାଲି ବୁଲୁଥିଲୁ, ସବୁବେଳେ ସଚେତନ ଥିଲୁ ଯେ ଆମେ ଆଦିବାସୀଙ୍କ ମନରେ କି ଭାବନା ସୃଷ୍ଟି କରୁଛୁ ? ଆମେ ସରକାରୀ କର୍ମଚାରୀ କି ସାହୁକାରର ସମ୍ପର୍କୀୟ ? ଆମେ କେଉଁ ଦେଶର ମଣିଷ ଓ କାହିଁକି ଆସୁଛୁ ? ଏତେ ବଣପର୍ବତ, ନଦୀନାଳ, ବର୍ଷା ଓ ଶୀତ କାକର, ରୋଗ ବେମାରିକୁ ଖାତିର ନକରି କାହିଁକି ଏ କଷ୍ଟ ସହୁଛୁ ? କି ଲାଭ ପାଉଛୁ ଆମେ ? କି ସ୍ୱାର୍ଥ ଅଛି ଆମର ? ଏଇ ସବୁ ପ୍ରଶ୍ନ ନିଶ୍ଚୟ କାଶୀପୁର ବସ୍ତିରେ ଓ ଗାଁମାନଙ୍କରେ ନିଶ୍ଚିତ ଆଲୋଚନା ହେଉଛି ବୋଲି ଆମେ ସୂଚନା ପାଇଥିଲୁ । ଆମ ପ୍ରତି ଯେମିତି ସନ୍ଦେହ ସମସ୍ତଙ୍କର ବଢୁଛି ! ଦୂର ଗାଁମାନଙ୍କରେ ଯେଉଁଠି ଓଡ଼ିଆ ଭାଷା ବୁଝିବା ସହଜ ନୁହେଁ । ଆମେ ଆସିଲା କ୍ଷଣି ଗାଁର ପିଲାମାନେ ଘର କୋଣରେ ଲୁଚୁଛନ୍ତି । ଆମେ ପାଦଦେଲା କ୍ଷଣି ଗାଁର ମାଆ ଭଉଣୀମାନେ

କବାଟ କିଳି ଦେଉଛନ୍ତି । ଆମକୁ ଖୁବ୍ କଷ୍ଟ ହେଉଥିଲା ଓ ଗୋଟାଏ ନୈରାଶ୍ୟ ଖେଳି ଯାଉଥିଲା । ଆମ ମନଭିତରେ କାଶୀପୁରରେ ସମାଜ ପରିବର୍ତ୍ତନ ଓ ବିକାଶ ସମ୍ଭବ ହେବ କି ନାହିଁ ପ୍ରଶ୍ନବାଚକ ଚିହ୍ନରେ ଅଟକି ଯାଉଥିଲା । କାଶୀପୁରରେ କଂଗ୍ରେସ ଓ ଜନତାଦଳଙ୍କ ସ୍ଥିତି ଉନିଶ୍-ବିଶ୍ । ଅର୍ଥାତ୍ ବିଧାନସଭା ନିର୍ବାଚନରେ କେଉଁଥର କଂଗ୍ରେସ ଜିତିଥାଏ ତ କେଉଁଥର ଜନତା ଦଳ ବିଜୟ ଲାଭ କରିଥାଏ । ଆଦିବାସୀ ବିଧାୟକ କାଶୀପୁର ସାହୁକାରଙ୍କ ପିଣ୍ଡାରେ ଗୋଟି ଭଳି ବସା ଉଠା କରେ ବୋଲି ଲୋକମାନେ ଆମକୁ କହୁଥିଲେ । ଏସବୁ କଥା ଅତି ରଞ୍ଜିତ ବୋଲି ଆମକୁ ମନେହୁଏ । ଆମେ କାମ ଆରମ୍ଭ କରିଲା ବେଳକୁ କଂଗ୍ରେସ ଦଳର ବିଧାୟକ ତାଙ୍କର ଗୋଟିଏ ଲକ୍ଷ୍ୟ ଥାଏ ଯେ ବିଶ୍ୱ ବ୍ୟାଙ୍କ ସହାୟତାରେ ବାଘରିଝୋଲା ମଧ୍ୟମ ଜଳସେଚନ ପ୍ରକଳ୍ପ କିପରି କାର୍ଯ୍ୟକାରୀ ହେବ । ଏହାଦ୍ୱାରା ସେ ସବୁଠାରୁ ବେଶୀ ଉପକୃତ ହେବେ । ତାଙ୍କର ଜମି ଜଳସେଚନ ହେବ । ଠିକାଦାର ମାନଙ୍କଠାରୁ ମଧ୍ୟ କିଛି ମିଳିଯିବ । ରାଜନୈତିକ ଫାଇଦା ଅବଶ୍ୟ ମିଳିବ । କାଶୀପୁର ବସ୍ତିରେ କିନ୍ତୁ ଜନତା ଦଳର ଖୁବ୍ ପ୍ରଭାବ । ବିଧାୟକ ହୁଅନ୍ତୁ ବା ସାଂସଦ ହୁଅନ୍ତୁ, ମୁଖ୍ୟମନ୍ତ୍ରୀ ହୁଅନ୍ତୁ ବା ସ୍ଥାନୀୟ ମନ୍ତ୍ରୀ ହୁଅନ୍ତୁ, କାଶୀପୁରକୁ ଆସି ଏକ ଦଳୀୟ ସଭା କରିବା ଅସମ୍ଭବ । ମାଡ଼ଗୋଳ ଓ ହିଂସାର ଏକ ଇତିହାସ ଅଛି କାଶୀପୁରର । ଆମକୁ ରାଜନୈତିକ ଦଳମାନେ ଓ ତାଙ୍କର ସକ୍ରିୟ କର୍ମୀମାନେ ପ୍ରଶ୍ନିଳ ଦୃଷ୍ଟିରେ ଦେଖୁଥାଆନ୍ତି । ଆମେ କିଏ, ଓ କାହିଁକି ଆସିଛୁ ? ଆମେ କାହିଁକି କୌଣସି ରାଜନୈତିକ କର୍ମୀଙ୍କ ସହ ଯୋଗାଯୋଗ କରୁନାହୁଁ ? ଆମେ କାହିଁକି ଗାଆଁକୁ ଗଲେ ଦଳୀୟ କର୍ମୀଙ୍କ ସହାୟତା ଲୋଡୁ ନାହୁଁ ? ଜଣେ ଅଧେ ଧମକ ବି ଦେଇଥିଲେ ଯେ ଦେଖାଯାଉ ଆମେ କେମିତି ତିଷ୍ଠିବୁ କାଶୀପୁରରେ । ଯଦି କେହି ପଦସ୍ଥ ଅଫିସର କାଶୀପୁରକୁ ଆସନ୍ତି, ରାଜସ୍ୱ ବଙ୍ଗଳାରେ ଆମ ବିରୁଦ୍ଧରେ କୁତ୍ସାରଟନା କରାଯାଏ ଓ ଲିଖିତ ଅଭିଯୋଗ କରାଯାଏ । ପଦସ୍ଥ ଅଫିସରଙ୍କଠାରୁ ସବିଶେଷ ବିବରଣୀ ମିଳେ ବା ସ୍ଥାନୀୟ ଅଫିସରମାନେ ବେଳେବେଳେ ସୂଚନା ଦିଅନ୍ତି ଯେ ଅମୁକ ପାତ୍ର, ଅମୁକ ମିଶ୍ର, ଅମୁକ ନାୟକ ଆମକୁ ବଦନାମ୍ କରୁଥିଲେ । କାଶୀପୁରରେ ଜଣେ ଅଜଣା ବ୍ୟକ୍ତି ସତରେ ତିଷ୍ଠିବା କଷ୍ଟକର କଥା । ସାହୁକାର ହେବା ସହଜ, ଅଥଚ ସାମାଜିକ କର୍ମୀ ହେବା କଷ୍ଟକର । ମୋର ମନେ ହୁଏ ଯେ ଦୂରଦୂରାନ୍ତରେ ଶିକ୍ଷକମାନେ ଯେତେବେଳେ ଗାଁରେ ରହିବା ଆରମ୍ଭ କରନ୍ତି, ସେମାନେ ପଢ଼ାଇବା ପରିବର୍ତ୍ତେ ଋଣ ବାଡ଼ି ଲଗାଣିରେ ମାତି ଯାଆନ୍ତି । କାରଣ ଶିକ୍ଷକ ଅପେକ୍ଷା ସାହୁକାରର ମାନ୍ୟତା ଯଥେଷ୍ଟ । ଦିନେ ଖବର ଆସିଲା ଯେ ଶିକ୍ଷକମାନେ ଖାଲି ଗୁଡ଼ାଖୁ ବା ଲୁଗାପଟା ବ୍ୟବସାୟ କରୁନାହାନ୍ତି । ଗୋରୁ ଛେଳି ବ୍ୟବସାୟ ମଧ୍ୟ କରୁଛନ୍ତି । ଆମକୁ ଅବାକ୍ ଲାଗିଲା । ଶିକ୍ଷକମାନେ ଆମକୁ ଗୁପ୍ତଚର ବିଭାଗର ଲୋକ ବୋଲି ପଛରେ କହୁଥାଆନ୍ତି ।

ଆମର ଉପସ୍ଥିତି ରହସ୍ୟ ଜନକ ନହେଉ ବୋଲି ଆମେ ଗୋଟାଏ ପ୍ରଚାର ପତ୍ର ବା ଲିଫ୍‌ଲେଟ୍ ପ୍ରସ୍ତୁତ କରିଥିଲୁ ଓଡ଼ିଆରେ । ଏଥିରେ ଆମର ଲକ୍ଷ୍ୟ, ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମର ସୂଚନା ଦିଆଯାଇଥିଲା ଚୁମ୍ବକରେ । ଆମର ଗୋଟିଏ ଉଦ୍ଦେଶ୍ୟ ଥିଲା ସାହୁକାରି ଶୋଷଣ ବିରୁଦ୍ଧରେ ଲଢ଼େଇ କରିବା । ଏହା ବୋଧହୁଏ ସବୁଠାରୁ ବେଶି ସନ୍ଦେହ ସୃଷ୍ଟି କରିଥିଲା । ପ୍ରଚାର ପତ୍ର ରାୟଗଡ଼ାକୁ ପହଞ୍ଚିବାକୁ ବିଳମ୍ବ ହୋଇନଥିଲା । କାଶୀପୁର ସାହୁକାରମାନେ

ଛୋଟ ସାହୁକାର । କିନ୍ତୁ ରାୟଗଡ଼ାରେ ଥିଲେ ବଡବଡିଆମାନେ । ରାଜ୍ୟ ସରକାରଙ୍କ ଗୁପ୍ତଚର ବିଭାଗ ବା ସ୍ପେଶାଲ୍ ବ୍ରାଞ୍ଚର ଜଣେକ ଅଫିସର ଆମ ବିଷୟରେ ଜାଣିବାକୁ ବେଶି ଆଗ୍ରହୀ ଥିଲେ । ରାୟଗଡ଼ାରେ ମୋର ବନ୍ଧୁମାନଙ୍କ ଭିତରେ ସବୁଠାରୁ ଅନ୍ତରଙ୍ଗ ଥିଲେ ରେଭେନ୍‌ସା କଲେଜର ସହପାଠୀ ଶ୍ରୀ ବ୍ରଜ ଶତପଥୀ । ପେସାରେ ବ୍ୟାଙ୍କ୍ କର୍ମଚାରୀ । ସ୍ତ୍ରୀ ପ୍ରାଥମିକ ସ୍କୁଲର ଶିକ୍ଷୟିତ୍ରୀ । ୧୯୭୫ ମସିହାର ଜରୁରୀ ଅବସ୍ଥା ସମୟରେ ତାଙ୍କୁ ନକ୍‌ସଲ୍ ପନ୍ଥୀ ବୋଲି ଗିରଫ କରାଯାଇ ଜେଲକୁ ପଠାଯାଇଥିଲା, ଯଦିଓ ସେ ସର୍ବୋଦୟ ନେତା ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀଙ୍କର ସହକର୍ମୀ ଥିଲେ ଅନେକ ବର୍ଷ ତଳେ । ଜରୁରୀ ଅବସ୍ଥା ଶେଷ ହେଲା ପରେ ସେ ଜେଲ୍‌ରୁ ଖଲାସ ହୋଇଥିଲେ ଓ ତାଙ୍କର ବ୍ୟାଙ୍କ ଚାକିରି ଫେରି ପାଇଥିଲେ । ରାୟଗଡ଼ା ଜିଲ୍ଲାରେ ତାଙ୍କର ସବୁଠାରୁ ସମୃଦ୍ଧ ଲାଇବ୍ରେରୀ ଥିଲା ଓ ଭାରତବର୍ଷର ସମସ୍ତ ପୁସ୍ତିକା ଓ ମ୍ୟାଗାଜିନ୍ ସେ ମଗାଉଥିଲେ । ସମୟ ପାଇଲେ ମୁଁ ତାଙ୍କ ପାଖକୁ ଯାଇ ପଢୁଥିଲି । ଗୁପ୍ତଚର ବିଭାଗ ଏଇକଥା ଲକ୍ଷ୍ୟ କରିଥିଲେ ବୋଧେ । ଦିନେ ରାୟଗଡ଼ା ବସ୍‌ଷ୍ଟାଣ୍ଡରେ ସ୍ପେଶାଲ୍ ବ୍ରାଞ୍ଚ ଇନ୍‌ସେପକ୍ଟର ଶ୍ରୀ ଆର.ବି.ମିଶ୍ରଙ୍କ ସହ ମୁହାଁମୁହିଁ ହୋଇଗଲା । ସେ ଜାଣିବାକୁ ଚାହିଁଲେ ଯେ ମୁଁ ଶ୍ରୀ ବ୍ରଜ ଶତପଥୀଙ୍କୁ କେମିତି ଚିହ୍ନିଛି । ନକ୍‌ସଲ ନେତା ଶ୍ରୀ ନାଗଭୂଷଣ ପଟ୍ଟନାୟକଙ୍କ ସହ ମୋର କେବେ ଭେଟ ହୋଇଛି କି ନାହିଁ ଓ ମୁଁ ଗୁଣପୁର ଯାଉଛି କି ନାହିଁ ? ମୁଁ କାହିଁକି ସାହୁକାରୀ ଶୋଷଣ କଥା ଆମର ଲିଫଲେଟ୍‌ରେ ଉଲ୍ଲେଖ କରିଛି ? ମୁଁ ରାଜସ୍ଥାନର କେଉଁ ସଂସ୍ଥା ସହ ଜଡିତ ଓ ଓଡ଼ିଶାରେ କେଉଁ ବ୍ୟକ୍ତି ଓ ଅନୁଷ୍ଠାନ ସହ ମୋର ପରିଚୟ ରହିଛି ? ଘଣ୍ଟେ ଦୁଇ ଘଣ୍ଟାଧରି ମୋତେ ଜେରା କରିଥିଲେ । ସରକାରଙ୍କୁ କି ରିପୋର୍ଟ ଦେଇଥିଲେ ମୁଁ ଜାଣିନାହିଁ, କିନ୍ତୁ ସେ ମୋର ସବୁଦିନ ପାଇଁ ଶୁଭେଚ୍ଛୁ ହୋଇଥିଲେ । ମୋ ଉପରେ ଗୋଟି ଥଇଥାନ ଉଦ୍ୟମକୁ ନେଇ ମରଣାନ୍ତକ ଆକ୍ରମଣ ହୋଇଥିଲା, ସେ କୁଆଡେ ଅସଲ ରିପୋର୍ଟ ସରକାରଙ୍କ ପାଖକୁ ପଠାଇ କାଶୀପୁରର ଶୋଷଣର ଅମାନୁଷିକତା କଥା ବର୍ଣ୍ଣନା କରିଥିଲେ । କିଛି ଦିନ ପରେ ପରିଚିତା ଶ୍ରୀମତୀ ଅନିତା ଅଗ୍ନିହୋତ୍ରୀ ଗୃହବିଭାଗରେ ଉପସଚିବ ଭାବେ ଯୋଗ ଦେଇଥିଲେ । କୋରାପୁଟର ଉପାନ୍ତ ଅଞ୍ଚଳରେ ବିଶେଷ କରି ମାଲକାନଗିରିରେ ନକ୍‌ସଲପନ୍ଥୀଙ୍କ ଉପସ୍ଥିତି ଖୁବ୍ ବଢ଼ିଥାଏ । ସେ ଅଞ୍ଚଳକୁ ସରକାରୀ କର୍ମଚାରୀ ଏପରିକି ପୋଲିସ୍ ମଧ୍ୟ ଯିବାକୁ କୁଣ୍ଠା ପ୍ରକାଶ କରିଥାଆନ୍ତି । ଅନିତା କୁଆଡେ କୋରାପୁଟ ଜିଲ୍ଲାପାଳ ଶ୍ରୀ ଅରୁଣ ସାମନ୍ତରାୟ ଓ ଏସ.ପି. ଶ୍ରୀ ବିଦ୍ୟାଭୂଷଣ ମହାନ୍ତିଙ୍କୁ ପରାମର୍ଶ କରି ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ ଯେ ଆମ ସଂସ୍ଥାର ଏକ ଶାଖା ନକ୍‌ସଲ ପ୍ରଭାବିତ ଅଞ୍ଚଳରେ ଖୋଲି ବିକାଶମୂଳକ କାର୍ଯ୍ୟ ଆରମ୍ଭ କରିବାକୁ । ଏହା କିନ୍ତୁ ଗୃହ ବିଭାଗ ଓ ସେ ସମୟର ରାଜନୈତିକ ମୁଖ୍ୟମାନେ କୁଆଡ଼େ ଗ୍ରହଣ କରିନଥିଲେ । ସେତେବେଳକୁ ପୁଲିସ୍ ଦପ୍ତରରେ ଓ ଗୃହବିଭାଗରେ ଆମ ଉପରେ କୁଆଡେ ଫାଇଲ ଖୋଲାଯାଇ ନକ୍‌ସଲ ପନ୍ଥୀଙ୍କ ପ୍ରତି ମୋର ସହାନୁଭୂତି ଅଛି ବୋଲି ଉଲ୍ଲେଖ କରାଯାଇଥିଲା । ଏହା ଆମର କାର୍ଯ୍ୟକ୍ରମ ପ୍ରତି ଏକ ଭଲ ବା ଖରାପ ସାର୍ଟିଫିକେଟ୍ ବୋଲି ଆଜି ପର୍ଯ୍ୟନ୍ତ ମୁଁ ଜାଣି ପାରିନାହିଁ ।



# ୨୪

ଆଦିବାସୀଙ୍କ ଅଧିକାର ପାଇଁ ମୁଁ ଲଢୁଛି ବୋଲି ଅନେକ ବନ୍ଧୁ ମୋତେ ପ୍ରଶଂସା କରିଥିଲେ । ମୋର ମୁଣ୍ଡ ଫାଟିଛି ଓ ଲହୁଲୁହାଣ ହୋଇଛି, ଏକଥା ସେ ସମୟରେ ସ୍ୱେଚ୍ଛାସେବୀ ସଂଗଠନଙ୍କ ମଧ୍ୟରେ ଅସାଧାରଣ ଥିଲା । ସ୍ୱେଚ୍ଛାସେବୀ ସଂଗଠନମାନେ ସବୁବେଳେ ଗରିବମାନଙ୍କ ସପକ୍ଷରେ ଖୁବ୍ ଲମ୍ବା ଲମ୍ବା ଭାଷଣ ଦିଅନ୍ତି, କିନ୍ତୁ ଅସଲ ଲଢ଼ାଇ ବେଳେ ପଛରେ ଥାଆନ୍ତି । ଯେଉଁମାନେ ଜନ ଆନ୍ଦୋଳନରେ ଥାଆନ୍ତି, ସେମାନଙ୍କ କଥା ଅଲଗା । ତିଲୋନିଆରେ ମୋ ସହ ଏକାଠି କାମ କରିଥିବା ଖେମ୍‌ରାଜ, ଝାବୁଆ ଜିଲ୍ଲାରେ ଭିଲ୍ (Bhil) ଆଦିବାସୀଙ୍କ ଗହଣରେ ଜଙ୍ଗଲ ଜମି ପାଇଁ ଏକ ଜନଆନ୍ଦୋଳନ ଆରମ୍ଭ କରିଥିଲେ । ଜଙ୍ଗଲର ରାଜା ହେଉଛି ଜଙ୍ଗଲ ବିଭାଗ । ତେଣୁ ତାଙ୍କର ବିନା ଅନୁମତିରେ ଜଙ୍ଗଲ ଜମିର ଦଖଲରେ କିଏ ପୁଣି ରହିପାରିବ ? ଖେମ୍‌ରାଜ ଆଦିବାସୀଙ୍କୁ ଜମି ଦଖଲ କରିବାକୁ କୁଆଡେ ପ୍ରବର୍ତ୍ତାଉଛି ବୋଲି ଅଭିଯୋଗ ହୋଇଥିଲା । ଏଇଥିପାଇଁ ଜଙ୍ଗଲ ବିଭାଗ ଅଫିସରମାନେ ତାକୁ ଅଫିସ୍‌କୁ ଡାକି ଭୀଷଣ ଅତ୍ୟାଚାର କରିଥିଲେ । ଖେମ୍‌ରାଜ୍ ନୂଆ ନୂଆ ବିବାହ କରିଥାଏ । ତା'ର ସ୍ତ୍ରୀ ମଧ୍ୟ ସାଥୀରେ ଥାଏ । ଜଙ୍ଗଲ ବିଭାଗ ଅଫିସରମାନେ ଉଭୟ ସ୍ୱାମୀ ସ୍ତ୍ରୀଙ୍କୁ ପଚରା ଉଚୁରା କରିବା ବାହାନାରେ ବନ୍ଦୀକରି ରଖିଥିଲେ । କଥା ଆଦାୟ ପାଇଁ ଖେମ୍‌ରାଜର ଶରୀରରେ ସିଗାରେଟ୍ ଚିଆଁ ଦିଆଯାଇଥିଲା ତା'ର ସ୍ତ୍ରୀ ସମ୍ମୁଖରେ । ସେ କିନ୍ତୁ ଡରି ନଥିଲା, କି ଦବି ନଥିଲା । ମୁଁ ସବୁବେଳେ ତା'କୁ ମୋ ମନ ଭିତରେ ହିରୋ ବୋଲି ଧରିଥାଏ । କିନ୍ତୁ ସେଇଭଳି ହିରୋମାନଙ୍କର ସଂଖ୍ୟା କମିଯାଉଥିବା କଥା ସାମାଜିକ କର୍ମକର୍ତ୍ତାଙ୍କ ଭିତରେ ଆଲୋଚନା ହେଉଥିଲା ।

ମୁଁ ୧୯୮୩ ମସିହାରେ ହଲାଣ୍ଡର ଏକ ଗବେଷଣା ପ୍ରତିଷ୍ଠାନରେ ମାନବାଧିକାର ଉପରେ ଏକ ତିନିମାସିଆ ପାଠ୍ୟକ୍ରମରେ ଯୋଗ ଦେବାକୁ ନିମନ୍ତ୍ରଣ ପାଇଥିଲି । କିନ୍ତୁ କେତେକ ବିଶେଷ ଅସୁବିଧା ହେତୁ ଯାଇପାରିନଥିଲି । ୧୯୮୪ ମସିହାରେ ଏ ନିମନ୍ତ୍ରଣ ପୁଣି ଆସିଥିଲା । ହଲାଣ୍ଡର ବନ୍ଧୁ ଶ୍ରୀ ୟାନ୍ ଡି ୱିଟେ ଏ ନିମନ୍ତ୍ରଣର ଆୟୋଜନ କରିଥିଲେ ଦ୍ୱିତୀୟ ଥର ପାଇଁ । ମୁଁ ୟାନ୍‌ଙ୍କୁ ଅନୁରୋଧ କରିଥିଲି ମୋର ସ୍ତ୍ରୀ ବିଦ୍ୟାକୁ ମଧ୍ୟ ଏ ପାଠ୍ୟକ୍ରମରେ ଯୋଗ ଦେବାକୁ ନିମନ୍ତ୍ରଣ କରିବା ପାଇଁ । ସେ ରାଜି ହୋଇଥିଲେ । ଭଡା ସହିତ ଖାଇବା ଓ ରହିବାର ବ୍ୟବସ୍ଥା ହୋଇଛି । ଏହାଛଡା ହାତ ଖର୍ଚ୍ଚ ପାଇଁ ମଧ୍ୟ କିଛି ଅର୍ଥ ମିଳିବ । ବିଦେଶ ଯିବାଟା ଗୋଟାଏ ଦୂରସ୍ୱପ୍ନ ଥିଲା ମୋପାଇଁ । ମୁଁ ସବୁବେଳେ ଦୂରଗାମୀ ପକ୍ଷୀ ଭଳି ଉଡିବାକୁ ସ୍ୱପ୍ନ ଦେଖୁଥିଲି । 'ଯେ ପକ୍ଷୀ ଉଡ଼େ ଯେତେ ଦୂର' କଥା ମୋର ମନେ ପଡୁଥାଏ ।

ମୁଁ ସସ୍ତ୍ରୀକ ଦିଲ୍ଲୀରୁ କେ.ଏଲ୍.ଏମ୍. ବିମାନରେ ଆମ୍ଷ୍ଟରଡ୍ୟାମ୍ ପହଞ୍ଚିଥିଲି । ବିମାନ ଯାତ୍ରା ବିଶେଷ କରି ଆନ୍ତର୍ଜାତିକ ବିମାନଯାତ୍ରା ଖୁବ୍ ଉତ୍ତେଜନାମୟ ଥିଲା । ପାସ୍‌ପୋର୍ଟ ଠାରୁ ଆରମ୍ଭ କରି ବିଦେଶ ମୁଦ୍ରା ସଂଗ୍ରହ କରିବା ଓ କ'ଣ କ'ଣ ଆଣିବାକୁ ପଡିବ, ବନ୍ଧୁମାନଙ୍କଠାରୁ ଏକ ତାଲିକା ସଂଗ୍ରହ କରିବା ମଧ୍ୟ ଖୁବ୍ ଆଗ୍ରହ ସୃଷ୍ଟି କରିଥିଲା । ବିଦେଶରେ ସବୁ ଜିନିଷ କୁଆଡେ ମିଳିଥାଏ ସହଜରେ; ଯାହା ଏଦେଶକୁ ଚୋରାବେପାରୀମାନେ ଆଣିଥାଆନ୍ତି । କଷ୍ଟମ୍ସ ବାଲା କୁଆଡେ ସବୁ ବ୍ୟାଜାପ୍ତ କରିଥାଆନ୍ତି ଏସବୁ ମୁଁ ଶୁଣୁଥାଏ ।

ଏକ ଆନ୍ତର୍ଜାତିକ ବିମାନରେ ଆଠଘଣ୍ଟା ଯାତ୍ରା କରିବା ଖୁବ୍ ଚମକପ୍ରଦ ଥିଲା ଆମ ଦୁହିଁଙ୍କ ପାଇଁ । ଆମେ ନିରାମିଷାଶୀ ଖାଦ୍ୟ ବରାଦ କରିଥାଉ । ଗରମ ଗରମ ପଲାଉ ମିଳିଲା ଆମକୁ ଓ ସାରା ବିମାନରେ ସର୍ବପ୍ରଥମେ ପରଶା ଗଲା । ଆମ୍ଷ୍ଟରଡ୍ୟାମ୍‌ରେ ପହଞ୍ଚୁ ପହଞ୍ଚୁ ସକାଳ । ରାତି ଅନିଦ୍ରା; ଖୁବ୍ କ୍ଲାନ୍ତ ଲାଗୁଥିଲା ଆମକୁ । 'ହିଭସ୍'ନାମକ ଏକ ସଂସ୍ଥା ଆମକୁ ଅନୁଦାନ ଦେଇଥିଲା ପ୍ରଥମେ ଓ ୟାନ୍ ଏ ସଂସ୍ଥାର କର୍ମକର୍ତ୍ତା ଥିଲେ । ସେ ତାଙ୍କର ଜଣେ ସହକର୍ମୀଙ୍କୁ ଆମକୁ ସ୍ୱାଗତ କରିବା ପାଇଁ ପଠାଇଥିଲେ । ଆମ୍ଷ୍ଟରଡ୍ୟାମ୍‌ର ସିଫଲ୍ ବିମାନବନ୍ଦର ଏତେ ସୁନ୍ଦର ଓ ଆଧୁନିକ ହୋଇଥାଏ ଯେ ଏହା ପର୍ଯ୍ୟଟକମାନଙ୍କୁ ବହୁ ସଂଖ୍ୟାରେ ଆକର୍ଷଣ କରିଥାଏ । ଆଗେ ବିମାନବନ୍ଦରର ସମସ୍ତ ଉପଗ୍ରେର ଓ ଭିସା ଆଦି ତଦାରଖ ପରେ ବନ୍ଧୁଙ୍କ ସହ ଲିଫ୍‌ଟରେ ତଳକୁ ଓହ୍ଲାଇ ଦି ହେଗ୍ (The Hague) ସହର ପାଇଁ ଏକ୍‌ସପ୍ରେସ୍ ଟ୍ରେନ୍ ଧରିଥିଲୁ । କିଛିବାଟ ସୁଡଙ୍ଗରେ ଗଲା ପରି ଲାଗୁଥାଏ । ତାହାପରେ ଆଲୋକ ଦେଖାଗଲା ଓ ଟ୍ରେନ୍‌ର ଦୁଇ ପାର୍ଶ୍ୱର ଦୃଶ୍ୟ ପରିଷ୍କାର ଦେଖାହେଲା । ସବୁଆଡେ ସମତଳ ଓ ଅସମ୍ଭବ ସବୁଜିମା । ହଲାଣ୍ଡରେ ପବନ କଳ, ଛେନାର ଫୁଟ୍‌ବଲ, ଭାନ୍ ଗାଗ୍( Van Gaga) ଓ ରେମ୍ବ୍ରାନ୍ତ (Rembrant)ଙ୍କ ଚିତ୍ର ବିଷୟରେ ମୁଁ ଜାଣି ଖୁବ୍ ଆକର୍ଷିତ ହୋଇଥାଏ ।

ଷ୍ଟେସନ୍‌ରୁ ବାହାରିଲା ମାତ୍ରକେ ଅତିକାୟ ପବନ କଳ ଦେଖାଦେଲା । ବନ୍ଧୁ ଜଣକ ବୁଝାଇ ଦେଲେ ଯେ ପବନକଳ ଆଉ ହଲାଣ୍ଡରେ ଚାଲୁ ନାହିଁ ଏବେ । ବିଦ୍ୟୁତ୍ ଶକ୍ତିରେ ପମ୍ପ ଚାଲୁଛି ଓ ପାଣି ଉଠାଉଛି । ହଲାଣ୍ଡର ବହୁଭାଗ ସମୁଦ୍ର ପତନରୁ ତଳେ ଓ ପାଣି ଉପରକୁ ଉଠାଇ ନିଷ୍କାସିତ କରି ସେଥିରୁ ଚାଷ ଜମି ବାହାର କରାଯାଇଛି । ବନ୍ଧୁ ଜଣକ ସୂଚନା ଦେଲେ ଯେ ଏପ୍ରିଲ୍ ମାସରେ କିକେନ୍ ହଫ୍ (Kicken hoff) ଠାରେ ଟୁଲିପ (Tulip) ଫୁଲର ପ୍ରଦର୍ଶନ ହେବ । ଆମେ ଯେମିତି ନଭୁଲୁ ଏକଥା । ହଲାଣ୍ଡରେ ଏପ୍ରିଲ୍ ମାସରେ ଖୁବ୍ ଥଣ୍ଡା । ଆମକୁ ପ୍ରଥମେ ସ୍ୱେଟର ଓ ଜ୍ୟାକେଟର ଆଉ ଗୋଟାଏ ସେଟ୍ କିଣିବାକୁ ପଡିଲା ପ୍ରଥମ ସୁଯୋଗରେ । ଗୋଟାଏ ଆନ୍ତର୍ଜାତିକ ଛାତ୍ରଙ୍କ ଫ୍ଲାଟ୍‌ରେ ଆମର ରହିବା ବ୍ୟବସ୍ଥା କରାଯାଇଥିଲା । ସେଠାରେ ଜଣେ ଦୁଇଜଣ ପାକିସ୍ତାନରୁ ଓ ଆଉ ଜଣେ ମହିଳା ଶ୍ରୀଲଙ୍କାରୁ ଥିଲେ । ସେମାନେ ଆମକୁ ପ୍ରଥମେ ସ୍ୱାଗତ କରିଥିଲେ ଓ ଆମେ ରୋଷେଇ ଆରମ୍ଭ କରିବା ପୂର୍ବରୁ ଖାଇବାକୁ ଡାକିଥିଲେ । ଦିନେ ଦୁଇଦିନ ପରେ ବିଖ୍ୟାତ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସୋସିଆଲ୍ ଷ୍ଟଡିଜ୍ (Institute of social studies)ରେ ଆମର କ୍ଲାସ୍ ଆରମ୍ଭ ହେଲା ।

ଦୁଇଜଣ କୋର୍ସ ଡିରେକ୍‌ଟର ଥିଲେ । ଜଣେ ଥିଲେ ପ୍ରଫେସର୍ ଗାଏଡି ଫୋର୍ଟମ୍ୟାନ୍ ଓ ଆଉଜଣେ ଥିଲେ ପ୍ରଫେସର ୟୁଷ୍ଟ କାଇଟେନ୍ ବ୍ରାଓର୍ । ପ୍ରଫେସର ଫୋର୍ଟମ୍ୟାନ୍ ଥିଲେ ହଲାଣ୍ଡ ପାର୍ଲିଆମେଣ୍ଟର ଜଣେ ସଦସ୍ୟ । ପ୍ରଫେସର କାଇଟେନ୍ ବାଓର୍ ବହୁଦିନ ଧରି ଜାତିସଂଘ ତରଫରୁ ଦକ୍ଷିଣପୂର୍ବ ଏସିଆରେ କାମ କରିଥିଲେ । ଆନ୍ତର୍ଜାତିକ ଅର୍ଥନୀତି ସହିତ, ସେ ଯୋଗ ମଧ୍ୟ ଛାତ୍ରଛାତ୍ରୀଙ୍କୁ ପଢ଼ାଉଥିଲେ ବୋଲି ନାଁ ଅର୍ଜନ କରିଥିଲେ ।

କ୍ଲାସ୍ ଆରମ୍ଭର ପ୍ରଥମ ଦିନ ସହପାଠୀମାନଙ୍କ ସହ ପରିଚିତ ହେଲା । ସମସ୍ତେ ନିଜ ନିଜ ଦେଶରେ ମାନବାଧିକାର ପାଇଁ ସଂଗ୍ରାମରତ । ଦକ୍ଷିଣ ଆମେରିକାରୁ ଯେଉଁମାନେ ଆସିଥିଲେ ସେମାନଙ୍କୁ ବୀର ବୋଲି ମାନିବାକୁ ହେବ । ହୋସେ ବୋଲି ଚିଲିର ଜଣେ ବନ୍ଧୁ ଥିଲେ, ଯିଏ ଦୁର୍ଦ୍ଧର୍ଷ ପିନୋସେଙ୍କ ବିରୁଦ୍ଧରେ ସଂଗ୍ରାମ କରିଥିଲେ । ମାଟିଓ ବୋଲି ନିକାରାଗୁଆର ସାଣ୍ଡିନିଷ୍ଟା ସୈନ୍ୟବାହିନୀର ଜଣେ ଆଗୁଆ ସୈନିକ ଆସିଥିଲେ । ସେ ଇଂରାଜୀ ବୁଝି ପାରୁନଥିଲେ । କଲମ୍ବିଆରୁ ଦୁଇଜଣ ଝିଅ ଅମଣ୍ଡା ଓ ଜେନୀ, ଆର୍ଜେଣ୍ଟିନାରୁ ୟୁଆନ୍ ନିଜ ନିଜ ଦେଶରେ ମାନବାଧିକାର ପାଇଁ ସଂଗ୍ରାମରତ ଥିଲେ । ଆଫ୍ରିକାରୁ ବି କେତେଜଣ ଆସିଥିଲେ । ଜିମ୍ବାଓ୍ୱେରୁ ନୋଥ, ଦକ୍ଷିଣ ଆଫ୍ରିକାରୁ ଜଣେ ଫାଦର୍, ଜାମ୍ବିଆରୁ ସ୍ତୁ ସେମାନଙ୍କ ଭିତରୁ ଅନ୍ୟତମ । ସେତେବେଳେ ପୋଲାଣ୍ଡରେ ସଲିଡାରିଟି (Solidarity) ଆନ୍ଦୋଳନ ସାରା ପୃଥିବୀରେ ଚହଳ ପକାଇଥାଏ । ସେଥିରୁ ଜଣେ ପ୍ରତିନିଧି ଆସିଥାନ୍ତି । ଦକ୍ଷିଣ କୋରିଆ ଓ ପାକିସ୍ଥାନରୁ ଦୁଇଜଣଙ୍କୁ ଭିସା ମିଳୁନଥାଏ ବୋଲି ଆମେ ଶୁଣୁଥିଲୁ । ଆଉ ଜଣେ ବନ୍ଧୁ ଆସିଥିଲେ ତାଙ୍କର ନାମ ଥିଲା ଡକ୍ଟର ମାଇକେଲ୍ ମାନିଫେଣ୍ଡେ (Dr. Michel Manifenda) । ସେ ପାପୁଆ ନିଉଗିନିରୁ ଆସିଥିଲେ ଓ ଇଣ୍ଡୋନେସିଆର ବାସିନ୍ଦାମାନେ କିପରି ତାଙ୍କ ରାଜ୍ୟକୁ ଏକ ଉପନିବେଶରେ ପରିଣତ କରିଛନ୍ତି, ତାହା ସେ ଅଙ୍ଗେ ନିଭେଇଛନ୍ତି । ମୋଟାମୋଟି ଆମେ ପ୍ରାୟ ୧୨ ଜଣ ଛାତ୍ରଛାତ୍ରୀ ଥିଲୁ । ବିଭିନ୍ନ ଦେଶରେ ମାନବାଧିକାର ଉଲଂଘନର ଏକ ଚିତ୍ର ଆମକୁ ମିଳୁଥାଏ ସେମାନଙ୍କର ଅନୁଭୂତି ବର୍ଣ୍ଣନା କରିଲା ବେଳେ । ଆମକୁ ଆଦିବାସୀ ଅଞ୍ଚଳରେ ଅଣଆଦିବାସୀଙ୍କ ଶୋଷଣ ଉପରେ ବର୍ଣ୍ଣନା କରିବାକୁ ପଡିଥିଲା । ଇନ୍‌ଷ୍ଟିଚ୍ୟୁଟ୍‌ର ବିଭିନ୍ନ ପ୍ରଫେସର୍‌ମାନେ ଆମର କ୍ଲାସ୍ ସବୁ ନେଇଥାଅନ୍ତି । ଜଣେ ପ୍ରଫେସର ପିଟର୍ ଓ୍ୱାଟର୍ ମ୍ୟାନ୍ ଭାରତର ଶ୍ରମିକ ଆନ୍ଦୋଳନ ଉପରେ ଖୁବ୍ ଅଧ୍ୟୟନ କରିଥିଲେ ଓ ସ୍ୱର୍ଗତ ଶଙ୍କର ଗୁହା ନିଲାଶୀଙ୍କ ସହ ତାଙ୍କର ଅନ୍ତରଙ୍ଗ ସମ୍ପର୍କ ଥିଲା । ଇନ୍‌ଷ୍ଟିଚ୍ୟୁଟ୍‌ରେ ମହିଳାମାନଙ୍କ ଅଧିକାରକୁ ନେଇ ଖୁବ୍ ସେମିନାର୍ ମଧ୍ୟ ହେଉଥାଏ ଓ ଆମେ ଯୋଗ ଦେଉଥାଉ ।

ବେଳେବେଳେ ମୁଁ ଓ ବିଦ୍ୟା କାଶୀପୁର ଏବଂ ସେଠାକାର ବ୍ୟବସ୍ଥା କଥା ମନେ ପକାଇ ଥାଉ । 'ହିଭସ୍'ର ବନ୍ଧୁମାନେ ଆମକୁ ସେମାନଙ୍କ ଘରକୁ ଡାକୁ ଥାଆନ୍ତି । ଫନ୍‌ସ ଭାନଡର୍ ଭେଲଡେନ୍ (Fons vander Velden) ବୋଲି ଜଣେ ବନ୍ଧୁ ଆମକୁ ତାଙ୍କ ବିଶ୍ୱ ବିଦ୍ୟାଳୟର ଛାତ୍ରମାନଙ୍କୁ ଆଦିବସୀମାନଙ୍କ ବିଷୟରେ କହିବାକୁ ଡାକିଥିଲେ । ସେଠାରେ ଛାତ୍ରମାନେ ଆମ ଖର୍ଚ୍ଚ ପାଇଁ କିଛି ଅର୍ଥ ସାହାଯ୍ୟ ଆକାରରେ ଦେଇଥିଲେ । ଆମେ ସମୟ

ଦେଖି ଟୁଲିପ୍‌ର ପୁଷ୍ପ ପ୍ରଦର୍ଶନୀ ଦେଖିବାକୁ ଯାଇଥିଲୁ । ଆମ୍‌ଷ୍ଟରଡ୍ୟାମ୍‌ର ମ୍ୟୁଜିୟମ୍‌ରେ ବିଶ୍ୱ ବିଖ୍ୟାତ ଚିତ୍ର ବା ପେଣ୍ଟିଙ୍ଗ୍ ସବୁ ଦେଖିଥିଲୁ ଓ ସେଗୁଡ଼ିକର ନକଲ ମଧ୍ୟ କିଣିଥିଲୁ । ହଲାଣ୍ଡ ଛେନାର ଦେଶ ହୋଇଥିବାରୁ ଛେନା କେମିତି ତିଆରି ହୁଏ ଜଣେ ବନ୍ଧୁ ନେଇ ଦେଖାଇଥିଲେ । ସେଠାରେ ବଂଶାନୁକ୍ରମେ ଛେନା ତିଆରି ହେଉଛି ଓ ଆଜିପର୍ଯ୍ୟନ୍ତ ତାହାର ଗୁଣାତ୍ମକମାନ ହ୍ରାସ ପାଇନାହିଁ । ହଲାଣ୍ଡ ଏତେ ଛୋଟ ଦେଶଟିଏ । ବେପାର କରିବା ଏ ଦେଶର ଲୋକଙ୍କ ରକ୍ତରେ ଅଛି । ଇଉରୋପର ଅନ୍ୟ ଦେଶ ଭଳି ଏମାନେ ପୃଥିବୀର ବିଭିନ୍ନ ଦେଶରେ ଉପନିବେଶ ସ୍ଥାପନ କରିଥିଲେ । ଓଡ଼ିଶାର ବାଲେଶ୍ୱରରେ ଏମାନେ ମଧ୍ୟ ପହଞ୍ଚିଥିଲେ । ଇଣ୍ଡୋନେସିଆ ଓ ସୁରିନାମ୍ ଭଳି ଦେଶ ଏମାନଙ୍କ ଅଧୀନରେ ବହୁଦିନ ଧରି ଉପନିବେଶ ଥିଲା । ଏମାନେ ମଧ୍ୟ ଦକ୍ଷିଣ ଆଫ୍ରିକାର ବର୍ଣ୍ଣବୈଷମ୍ୟ ନୀତି ରଖିଥିବା ଶାସକମାନଙ୍କର ସମର୍ଥକ ଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜର୍ମାନୀ ହଲାଣ୍ଡକୁ ଦଖଲ କରିଥିଲା ଓ ଅନେକ ଇହୁଦୀମାନଙ୍କୁ ହତ୍ୟା କରିଥିଲା । ଡାଏରୀ ଅଫ୍ ଆନି ଫ୍ରାଙ୍କ (Diary of Anne Frank) ବହି ଏଠାରେ ଲେଖାଯାଇଥିଲା । ହଲାଣ୍ଡରେ ମାନବାଧିକାର ଚର୍ଚ୍ଚା ପ୍ରସଙ୍ଗ ଆମକୁ ପ୍ରଭାବିତ କରିଥିଲା ।



## ୨୪

କାଶୀପୁର ଓ ଅଳସୀ ଫୁଲ । ଦେଖିଲା ମାତ୍ରକେ ଜଣେ ପୁଲକିତ ଓ ଉଲ୍ଲସିତ ହୋଇ ଯିବ । ହଳଦିଆ ରଙ୍ଗର ଚମତ୍କାର ବିନ୍ୟାସ । ପାହାଡ଼ ଉପରେ ହେଉ ବା ତଳେ ଉପତ୍ୟକାରେ ହେଉ, ଆଦିବାସୀ କେତେ ଯୁଗରୁ ଅଳସୀ ଚାଷ କରି ଆସୁଛି । ବର୍ଷା ମାସରେ ବୁଣିବା ପୂର୍ବରୁ ବର୍ଷେ ଆଗରୁ ଉଚ୍ଚା ଗଡାଣିଆ ଜମିକୁ ହଳ କରି ରଖିଥିବ । ଦଶହରା ପରେ ପରେ ଫୁଲ ଆଉ ଫୁଲ । ହଳଦିଆ ରଙ୍ଗରେ ଏ ଅଞ୍ଚଳ ଭରିଯିବ । ଫୁଲ ମଉଳିବାକୁ କିଛି ଦିନ ଲାଗି ଯିବ । ଶୁଖିବାକୁ ଦୁଇମାସ ଲାଗିବ ଓ ଶୀତ ସରିଆସିଲା ବେଳକୁ ଅଳସୀ ଆମଦାନୀ ହେବ । ମକର ସଂକ୍ରାନ୍ତିକୁ ବିକ୍ରୟ ଆରମ୍ଭ ହେବ । ସାହୁକାର "ପଣ୍ଟୁ" ରେଟ୍ କରି କିଣିବ । ଅର୍ଥାତ୍ ମକର ସଂକ୍ରାନ୍ତିରେ ପଇସା ସମସ୍ତଙ୍କର ଲୋଡା । ତେଣୁ ଯେଉଁ ରେଟ୍‌ରେ ମାଗିଲେ ଆଦିବାସୀ ବିକ୍ରି କରିଦେବ ଅଳସୀକୁ । ଆଦିବାସୀ କିଛି ଅଳସୀ ରଖିବ ତେଲ ପେଡିବା ପାଇଁ । ପିତା ପିତା ଲାଗିଲେ ତାକୁ ବ୍ୟବହାର କରିବ ଶାଗ ତିଅଣ ରାନ୍ଧିବା ପାଇଁ ବା ଦେହରେ ମାଖିବା ପାଇଁ । ପରବ ଦିନରେ ଅଳସୀ ପିଠା କରିବ । କିନ୍ତୁ ଏ ଅଞ୍ଚଳରୁ ଟନ୍ ଟନ୍ ଅଳସୀ ଯାଏ କୁଆଡେ ? ସାନ ସାହୁକାର ବଡ଼ ସାହୁକାରକୁ ବିକେ । ବଡ଼ ସାହୁକାର ରାୟପୁର ବା ବିଶାଖାପାଟଣା ପର୍ଯ୍ୟନ୍ତ ନିଏ । ସରକାରଙ୍କ 'ନାଫେଡ୍' ବା 'ଟ୍ରାଇଫେଡ୍' ସଂସ୍ଥା ଶେଷରେ କିଣିଥାଏ ଓ ବିଦେଶକୁ ରପ୍ତାନୀ କରେ । ବିଦେଶରେ ଏହା ଦୁଇ ପ୍ରକାର କାମରେ ଲାଗେ । ଅଳସୀ ତେଲ ରଙ୍ଗ ତିଆରି ବେଳେ ଏକ ଉପାଦାନ ବା ସଲ୍‌ଭେଣ୍ଟ (Solvent) ହିସାବରେ ବ୍ୟବହାର କରାଯାଏ । ଅନ୍ୟଟି ହେଲା ଶୀତଦିନରେ ଇଉରୋପ ଓ ପଶ୍ଚିମ ଦେଶରେ ବରଫ ପଡିଲେ ସେଠାରେ ପକ୍ଷୀମାନଙ୍କ ଆହାର ପାଇଁ ଅଳସୀ ଦାନାକୁ ଦିଆଯାଏ । କାଶୀପୁରର ଅଳସୀ କେ.ଜି. ପ୍ରତି ପାଞ୍ଚଟଙ୍କା ଦରରେ ସାହୁକାର କିଣେ । ଯଦି ଜଗାଣି ଲାଗିଥିବ, ଅଳସୀ କେ.ଜି. ଟଙ୍କେ ଦି'ଟଙ୍କାକୁ ଖସିଆସେ । 'ନାଫେଡ୍' ପ୍ରାୟ ପଚିଶଟଙ୍କାରେ କେ.ଜି. ପ୍ରତି ଦର ନିର୍ଦ୍ଧାରିତ କରିଥାଏ ।

ଅଳସୀ ଓଡ଼ିଶାର ବିଭିନ୍ନ ଆଦିବାସୀ ଅଞ୍ଚଳ ଛାଡି ଦେଲେ, ଆନ୍ଧ୍ର, ଛତିଶଗଡ଼, ଝାଡଖଣ୍ଡ ଆଦି ଅଞ୍ଚଳରେ ବ୍ୟାପକ ଚାଷ କରାଯାଏ । ଅଳସୀର ଆନ୍ତର୍ଜାତିକ ବଜାର ବ୍ୟାପକ ହେଉଥିବାରୁ ଏବେ ନେପାଳ ଓ ଶ୍ରୀଲଙ୍କା ମଧ୍ୟ ବ୍ୟାପକ ଅଳସୀ ଚାଷ କରୁଛନ୍ତି ଓ ଭାରତର ରପ୍ତାନୀରେ ଖୁବ୍ ବାଧା ପଡିଛି । ସାରା ପୃଥିବୀରେ ସବୁ ଜିନିଷର ବିଶେଷ କରି ତୈଳବୀଜର ଦର ବଢୁଥିବା ବେଳେ, ଅଳସୀର ଦର ଖସୁଛି ତ ଖସୁଛି । ସାହୁକାର କହୁଛି ଯେ, ଏହାର ପୂର୍ବଭଳି ଆଉ ବଜାର ନାହିଁ । ସତ କି ମିଛ ଜାଣିବାର କୌଣସି ବାଟ ନାହିଁ । କିନ୍ତୁ ଅଳସୀ ଚାଷ ନକଲେ ଆଦିବାସୀ ହାତକୁ ଟଙ୍କା ପଇସା ଆସିବ ନାହିଁ ଏବଂ ପରବ ବେଳେ ସାହୁକାରକୁ ହାତ ପାତିବା ସାର ହେବ ।

କାଶୀପୁରର ଅଳସୀ ଦୃଶ୍ୟର ମୁଁ ବିମୋହିତ ହୋଇ ଓ ସୁଗନ୍ଧରେ ଆକର୍ଷିତ ହୋଇସାରିଛି ବୋଲି ଅନେକ ବନ୍ଧୁଙ୍କୁ କହିଛି ଓ କାଶୀପୁର ଆସିବାକୁ ଆମନ୍ତ୍ରଣ କରିଛି ଦଶହରା ବା ଦୀପାବଳୀ ସମୟରେ । ଏହି ଦୃଶ୍ୟକୁ ମୁଁ କହିବି 'ସରରିୟଲିଜିମ୍'(Surrealism) । ଏହାର ଓଡ଼ିଆ କ'ଣ ମୋତେ ଖୋଜିବାକୁ ହେବ । ଜଣେ ଚିତ୍ରକାର, ଜଣେ ଭାବବିହ୍ୱଳିତ ଲେଖକ, ଜଣେ ଦୂରଗାମୀ ପରିବ୍ରାଜକ, ଅଳସୀ ଫୁଲର ଅବର୍ଣ୍ଣନୀୟ ଦୃଶ୍ୟ ଦେଖି ଘଡିଏ ଅଟକି ଯିବ ଏବଂ ଏହି 'ସରରିୟଲିଜିମ୍'କୁ ଦଣ୍ଡେ ଉପଭୋଗ କରିବ । ହଳଦି ରଙ୍ଗର ବନ୍ୟା ବହୁଛି ଓ ଆଦିବାସୀର ଆଶା ଓ ଅଭିଳାଷ ବଢୁଛି । ମୋର ଚିଠିରେ ପ୍ରଭାବିତ ହୋଇ ବନ୍ଧୁ ପ୍ରଦୀପ ଦାସ (ଆୟକର ଅଫିସର) ମୋ ସହ ଅଳସୀ ରାଜ୍ୟରେ କିଛି ଦିନ କାଟିବାକୁ ଯୋଜନା କରି ଆସୁଛନ୍ତି । ୧୯୮୩ ମସିହାରେ ସେ ଯେଉଁ ଚିଠି ଲେଖିଥିଲେ ତାହାର କିୟଦାଂଶ ମୁଁ ନିମ୍ନରେ ଉଦ୍ଧାର କରୁଛି ।

".....ତମ ଚିଠି ପାଇବା କିଛିଦିନ ହୋଇଗଲାଣି । ଏ ମଧ୍ୟରେ ଅଳସୀ ଫୁଲମାନେ ହୁଏତ ଫୁଟି ଝରି ଯାଇଥିବେ । ପାହାଡ଼ ଉପରେ ଅଳସୀ ଫୁଲର ଶେଯ, ପବନରେ ମହକ ରାତି ଅଧରେ ମାଣ୍ଡିଆ କିଆରୀ ଜଗିଥିବା 'ପରଜା'ର ମନମତାଣିଆ ଗୀତ ଓ ଧାଙ୍ଗଡା ଧାଙ୍ଗଡୀମାନଙ୍କ ପାଦରେ ଆଗାମୀ ଜୀବନର ଆବାହନୀ ଛନ୍ଦ- ଏ ସବୁ ଏ ମଣିଷର ଅନୁଭୂତିର ବାହାରକୁ ଚାଲିଗଲେଣି । ଏଣିକି ଏ ସବୁ କ୍ରମଶଃ ସ୍ୱପ୍ନର ପରିସୀମା ପାର ହୋଇଯିବେ ବୋଧହୁଏ । ଏଠାରେ ସକାଳ ଆସେ ଆଉ ଏକ ନୀରସ ନିସ୍ପୃହ ଦିନର ଘଣ୍ଟାପିଟି, ରାତିହୁଏ ଅନେକ ଦୁଃସ୍ୱପ୍ନର ଗନ୍ତାଘର । ଲକ୍ଷ୍ୟହୀନ, ଅବଲମ୍ବନ ହୀନ, ସ୍ୱପ୍ନହୀନ ଏ ସ୍ଥିତି । ଜୀବନର ସୂକ୍ଷ୍ମ ଅନୁଭୂତି ସବୁ ଆଉ ହାତ ପା'ଆନ୍ତାରେ ନାହିଁ, ବଡ଼ କୃତ୍ରିମ ଏ ପରିବେଶ ।"

କିନ୍ତୁ ପ୍ରଦୀପ ସହ ଯେତେବେଳେ ଦେଖାହେଲେ ବି ସେ ଅଳସୀ ଫୁଲ ଫୁଟିବା ବେଳେ ନିଶ୍ଚିତ କାଶୀପୁର ଆସିବ, ଏକଥା କହିଥାଏ ।

କାଶୀପୁରରେ ଅଳସୀ ଫୁଲ ଫୁଟିଲା ବେଳକୁ ଶୀତ ପଡିଯାଇଥାଏ । ଗାଁମାନଙ୍କୁ ଗଲାବେଳେ ଅଳସୀ କିଆରି ଭିତର ଦେଇ ପାଦଚଲା ରାସ୍ତା । ସକାଳର କାକର ସହ ମନମତାଣିଆ ବାସ୍ନା ଏକ ଅଭୁଲା ଅନୁଭୂତି ସୃଷ୍ଟି କରେ । ପାହାଡ ଉପରକୁ ଉଠିଲେ ତଳେ ମାଇଲ୍ ମାଇଲ୍ ବ୍ୟାପୀ ଅଳସୀ କ୍ଷେତ । ତଳୁ ଦେଖିଲେ ପାହାଡର ଶୀର୍ଷ ସ୍ଥାନରେ, ଡୀଖରେ ଅଳସୀ ଫୁଲର ଶୋଭା । ହଳଦିଆ ରଙ୍ଗ କିଏ ଯେମିତି ବୋଳି ଦେଇଛି ସବୁଆଡେ । ଦଣ୍ଡେ ଅଟକି କବିତା ଲେଖିବାକୁ ଇଚ୍ଛା ହୁଏ । କାଶୀପୁରରେ ଅଳସୀ ଚାଷ କେତେବର୍ଷରୁ ହୋଇ ଆସୁଛି, ତାହାର କୌଣସି ହିସାବ ନାହିଁ । ଅବିଭକ୍ତ କୋରାପୁଟ, କଳାହାଣ୍ଡି ଓ କେଉଁଝର ଜିଲ୍ଲାମାନଙ୍କରେ ଅଳସୀ ଚାଷ ବ୍ୟାପକ ଭାବେ ଚାଲିଛି । ପୋଡୁ ଚାଷର ସଫଳତା ଓ ବ୍ୟାପକତା ସମ୍ଭବତଃ ଏଇ ଅଳସୀ ଚାଷକୁ ନେଇ । ଆଦିବାସୀ ଓଡ଼ିଶାରେ ହେଉକି ଝାଡଖଣ୍ଡରେ ହେଉ, ଛତିଶଗଡରେ ହେଉ କି ଆନ୍ଧ୍ରପ୍ରଦେଶରେ ହେଉ, ଅଳସୀ ଚାଷ କରିଆସୁଛି ଓ ଭବିଷ୍ୟତରେ କରିବ ହିଁ କରିବ । ଓଡ଼ିଶାରେ ଅଳସୀ ଚାଷ ମଧ୍ୟ ବଢ଼ିବାରେ ଲାଗିଛି । ସରକାର ଓ କୃଷି ବିଶ୍ୱବିଦ୍ୟାଳୟ ଆଦି ଲକ୍ଷେ ହେକ୍ଟର ଚାଷ କରିବାର ପ୍ରସ୍ତାବ ରଖି ଆସିଛନ୍ତି ।

ଆଗାମୀ ଦିନରେ ଏହା ବଢ଼ିବ ଓ ଚାରି ପାଞ୍ଚଲକ୍ଷ ଟନ୍ ଅଳସୀ ଉତ୍ପାଦନ ହେବାର ଅଟକଳ ରଖାଯାଇଛି । କିନ୍ତୁ, ଅଳସୀରୁ ତେଲ ପେଡ଼ିବା ଓ ଅଳସୀ ତେଲର ପିଡ଼ିଆକୁ ଗୋଖାଦ୍ୟ ହିସାବରେ ବ୍ୟବହାର କରିବା ପାଇଁ ଓଡ଼ିଶା ସରକାର ବା ଉଦ୍ୟୋଗପତିମାନେ ଆଗ୍ରହ ଦେଖାଉନାହାନ୍ତି । କାଶୀପୁରର ବ୍ଲକ୍‌ରେ ଗୋଟାଏ ତୈଳ ଉତ୍ପାଦକ ସମବାୟ ସମିତି କେତେ ଦିନରୁ ପ୍ରତିଷ୍ଠା ହୋଇଥିଲେ ମଧ୍ୟ ତାହାର ଉପସ୍ଥିତି ଅନୁଭବ କରିହେଉନାହିଁ । ଶିଳ୍ପ ବିଭାଗର ନିୟନ୍ତ୍ରଣରେ ଥିବା ଏଇ ସମବାୟ ସମିତିର କାରବାର ସମ୍ପର୍କରେ ଜଣେ ବିଭାଗୀୟ ଅଫିସରଙ୍କ ଠାରୁ କିଛି ସୂଚନା ମିଳିଥିଲା । ତାଙ୍କର ଅଭିଯୋଗ ଥିଲା ଯେ ଅଳସୀ ତେଲ ପେଡ଼ିବା ସହଜ, କିନ୍ତୁ ଅଳସୀ ପିଡ଼ିଆର କୌଣସି ସଦୁପଯୋଗ ନହୋଇ ପଡ଼ିରହୁଛି । ଏହା ଏକ ଆବର୍ଜନା ରୂପେ ଗନ୍ଧ ସୃଷ୍ଟି କରୁଛି । ଆମେ ଜଣେ କୃଷି ବିଶେଷଜ୍ଞଙ୍କୁ ପଚାରିଥିଲୁ ଯେ ଅଳସୀ ପିଡ଼ିଆର ବ୍ୟବହାର କିପରି ହୋଇପାରିବ । ସେ କହିଥିଲେ ଯେ ଏହାକୁ ମାଟିସହ ମିଶାଇଦେଲେ ଉର୍ବରତା ବଢ଼ିବ ।

ଆମ ଅଫିସ୍ ପାଖ ଜମିରେ ଚାଷ କରିବା ଖୁବ୍ କଷ୍ଟକର ବ୍ୟାପାର ଥିଲା । ଆମେ ସବୁ ବଡ଼ ବଡ଼ ଗାତ ଖୋଳି ସେଥିରେ ଅଳସୀ ପିଡ଼ିଆ ଭର୍ତ୍ତି କରିଥିଲୁ । ବର୍ଷା ମାସରେ ସେଥିରୁ ଏତେ ପଚାଗନ୍ଧ ବାହାରିଲା ଯେ, ଶବ ପଡ଼ିଛି ବୋଲି ଆଖପାଖରୁ ବହୁତ ବିଲୁଆ ଆମ ବାଡ଼ି ଭିତରକୁ ପ୍ରତି ରାତିରେ ଆସୁଥିଲେ । କିନ୍ତୁ ସେବର୍ଷ ଆମର ବିନସ୍, କଳରା ଚାଷ ଖୁବ୍ ଭଲ ହୋଇଥିଲା । ଆମର ଏତେ ଉତ୍ପାଦନ ହେଲା ଯେ, ଆମେ କାଶୀପୁର ହାଟରେ ବିକ୍ରୟ କରି ପ୍ରାୟ ପନ୍ଦର ହଜାର ଟଙ୍କା ଲାଭ ପାଇଥିଲୁ । ଅବଶ୍ୟ ଆମକୁ ଖୁବ୍ ପରିଶ୍ରମ କରିବାକୁ ପଡ଼ିଥିଲା । ଖରାଦିନେ କୂଅରୁ ବାଲ୍‌ତିରେ ପାଣି କାଢ଼ିବା ଓ ଗାଈ, ଛେଳି ଓ ଚୋରମାନଙ୍କ ଦାଉରୁ ଫସଲକୁ ବଞ୍ଚାଇବା ଆମ ପାଇଁ ଖୁବ୍ କଠିନ ହୋଇଥିଲା । କିନ୍ତୁ ଅଳସୀ ପିଡ଼ିଆର କରାମତି ଆମକୁ ନୂତନ ବାଟ ଦେଖାଇ ଦେଇଥିଲା । ଏଇ ଶିକ୍ଷା ଆମେ ବିଭିନ୍ନ ଗାଁରେ ଆଲୋଚନା କରିଥିଲୁ ଓ ଆଦିବାସୀମାନେ କାଶୀପୁର ତୈଳ ଉତ୍ପାଦକ ସମବାୟ ସମିତିରେ ଚାଲିଥିବା ରାଜନୀତିକୁ ଆକ୍ଷେପ କରି କହିଥିଲେ । ଗାଁରେ ଅତି ପୁରାତନ ଓ ଶ୍ରମ ବହୁଳ ପଦ୍ଧତିରେ ତେଲ ପେଡ଼ିବା ଶ୍ରେୟସ୍କର ବୋଲି ସେମାନେ କହୁଥିଲେ । ନତୁବା ଅଳସୀରୁ ଲାଭ ହେଉ କି କ୍ଷତି ହେଉ ବିକ୍ରୟ କରିଦେବା ଭଲ ବୋଲି ସମସ୍ତେ ସ୍ୱୀକାର କରୁଥିଲେ ।

ଅଳସୀ ଏକ ଅର୍ଥକାରୀ ଫସଲ । ତୈଳବୀଜ ହିସାବରେ ଏହାର ବେପାର ବଜାର ମଧ୍ୟ ଖୁବ୍ ବ୍ୟାପକ । କିନ୍ତୁ ସାରା କୋରାପୁଟରେ ଗୋଟିଏ ହେଲେ ଆଧୁନିକ ତେଲ କଳ ପ୍ରତିଷ୍ଠା ହୋଇନାହିଁ । ଖାଲି ଅଳସୀ ନୁହେଁ, ସୋରିଷ, ରାଶି ଆଦି ମଧ୍ୟ ହଜାର ହଜାର ଟନ୍ ତୈଳବୀଜ ଏ ଅଞ୍ଚଳରୁ ବାହାରୁଛି । ତାହା ରାୟପୁର କି ବିଶାଖାପାଟଣାକୁ ସାହୁକାରମାନେ ରପ୍ତାନୀ କରୁଛନ୍ତି । ନାଫେଡ଼(NAFED) ସଂସ୍ଥା ମଧ୍ୟ ଆଦିବାସୀମାନଙ୍କୁ ନ୍ୟାୟ ଦେଉନାହିଁ । ଅଳସୀର ବେପାର କିପରି ଆଦିବାସୀମାନଙ୍କୁ ଲାଭପ୍ରଦ ହେବ, ସେ କଥା ମୁଁ ଉଚ୍ଚସ୍ତରରେ

ଆଲୋଚନା କରିଥିଲି । କିନ୍ତୁ ସବୁକ୍ଷେତ୍ରରେ ସାହୁକାରୀ ଋଣ ବାଟ ଓଗାଳିଥିଲା । ଟି.ଡ଼ି.ସି.ସି ସଂସ୍ଥା ଭଳି ସରକାରୀ ସଂସ୍ଥାମାନେ ସରକାରଠାରୁ ଆହୁରି କଠୋର ଥିଲେ ଓ ଆଦିବାସୀମାନଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ଶୋଷଣ ପ୍ରକ୍ରିୟାରେ ଲିପ୍ତ ହେଉଥିଲେ । ଆଦିବାସୀ ଅଳସୀ ଚାଷ କରିବ ଓ ମକର ସଂକ୍ରାନ୍ତି ବେଳକୁ କିଛି ଟଙ୍କା ପଇସା ହାତରେ ପାଇ ଖର୍ଚ୍ଚ କରିବ ଏହା ଯେମିତି ଏକ ପରମ୍ପରା ହୋଇସାରିଛି ।

ପ୍ରତିବର୍ଷ ଅଳସୀ ଚାଷ ଆରମ୍ଭ ବେଳେ ମୁଁ ଗୋଟିଏ କଥା ସବୁବେଳେ ଭାବିଥାଏ । ଏବର୍ଷ ଅଳସୀର ରେଟ୍ ଆସିବ ତ ? ଆଦିବାସୀ ତାହାର ପରିଶ୍ରମର ମୂଲ୍ୟ ପାଇବତ ? ବଜାର ଦର କଥା କିଏ କହିବ ? ସରକାର ଜିଲ୍ଲାପାଳଙ୍କ ଜରିଆରେ ସର୍ବନିମ୍ନ ଦର ସ୍ଥିର କରୁଥିଲେ ମଧ୍ୟ ତାହା କାର୍ଯ୍ୟକାରୀ ହୁଏ ନାହିଁ । ଅଳସୀ ଫୁଲ ଫୁଟି ଶୁଖିଗଲା ପରେ, ଯେତେବେଳେ ଅମଳ ହୁଏ, ଆଦିବାସୀର ସବୁ ଆଶା ଆକାଂକ୍ଷା ପାଣିରେ ମିଳାଇଯାଏ । ମୋର ପରିକଳ୍ପନାର ଏକ ଅଧ୍ୟାୟ ସମାପ୍ତ ହୁଏ ।



# ୨୪

ଶୀତଦିନର ଜହ୍ନରାତି କାଶୀପୁରରେ ଅବର୍ଣ୍ଣନୀୟ । ପାହାଡ଼ ଉପରେ ଗାଁ ଯେଉଁଠି ଆମର ରାତି ସ୍କୁଲ ଚାଲିଥାଏ, ସଞ୍ଜ ବୁଡ଼ିବା ପୂର୍ବରୁ ଆମେ ସେଠାରେ ପହଞ୍ଚିଯାଇଥାଉ । ଫସଲ କଟା ଯାଇଛି ଓ ସବୁଆଡେ କ୍ଷେତସବୁ ପାଚିଲା ପାଳରଙ୍ଗ । ପାହାଡ଼ର ଶୀର୍ଷ ଦେଶରେ କାନ୍ଦୁଲ ମାଣ୍ଡିଆ ଜଗିବା ପାଇଁ ମଞ୍ଚାସବୁ ତିଆରି କରାଯାଇଛି । କିଛି ଦିନ ତଳେ ଫସଲ ସବୁଜିମାକୁ ଜୀବନ୍ତ କରିରଖିଥିଲା । ଇଲାକାର ବର୍ଣ୍ଣବୈଭବ କେଇଦିନ ଭିତରେ ନାଟକୀୟ ଭାବେ ବଦଳିଯାଇଛି । ଶୀତଦିନେ ରାତିସ୍କୁଲ ସଅଳ ସଅଳ ଆରମ୍ଭ କରିବାକୁ ପଡିଯାଏ । ସନ୍ଧ୍ୟା ନହେଉଣୁ ଶୀତ ପଡିଯାଏ ଓ ପିଲାମାନେ ମୁକ୍ତ ଆକାଶତଳେ ଛିଣ୍ଡାଚଦରଟିଏ ଘୋଡାଇ ହୋଇ ବେଶୀ ସମୟ ବସିବା ସମ୍ଭବ ହୁଏ ନାହିଁ । ଯେଉଁ ଗାଁରେ ସ୍କୁଲ ଘର ତିଆରି ନହୋଇଥାଏ, ଆମେ ବାରମ୍ବାର ତାଗିଦ୍ କରୁ । ଗାଁବାଲା କିନ୍ତୁ ବିଭିନ୍ନ କାରଣ ଦର୍ଶାଇ ଟାଳିଦେଇଥାଆନ୍ତି । ରାତିସ୍କୁଲ ପିଲାମାନେ ଢାକିଢୁକି ହୋଇ ଲଣ୍ଠନ ଆଲୁଅ ପାଖରେ ବସିଥାଆନ୍ତି । ମୁଁ ସ୍କୁଲରେ ପହଞ୍ଚିଲାକ୍ଷଣି ସମସ୍ତଙ୍କର ଗୋଟାଏ ଡ଼ରଭୟ ଆସିଯାଇଥାଏ । ପିଲାମାନେ କାଳେ ମୋ ପ୍ରଶ୍ନର ଉତ୍ତର ଦେଇପାରିବେ ନାହିଁ ବୋଲି ଡ଼ରିଯାଇଥାଆନ୍ତି । ଗୁରୁଭାଇ ସ୍କୁଲ ପ୍ରତି ଠିକ୍ ଯତ୍ନ ନେଉନାହିଁ ବୋଲି କାଳେ ଜଣାପଡ଼ିବ, ସେ ଖୁବ୍ ସଙ୍କୁଚିତ ହୋଇଯାଏ । ଗାଁ ଶିକ୍ଷା କମିଟି ମିଟିଂ ହେଉନାହିଁ ଓ ଗାଁର ସବୁ ପିଲା କାହିଁକି ରାତିସ୍କୁଲକୁ ଆସୁନାହାଁନ୍ତି, ଏହାର ଜବାବ ଦେବାକୁ ହେବ ବୋଲି ଗାଁବାଲା ବି ଶଙ୍କି ଯାଆନ୍ତି ।

ମୁଁ ଖୁବ୍ ସଚେତନ ହୁଏ ମୋର ଉପସ୍ଥିତି ପ୍ରତି । ପିଲାମାନଙ୍କୁ ଭଲ ପାଇବାର ଏକ ସଂକେତ ହେଉଛି ଯେ ସେମାନେ ଡ଼ରଭୟ ଛାଡ଼ି ଆସି ପାଖରେ ବସିବେ ଏବଂ ନିଜ ନିଜର କଥା ପ୍ରକାଶ କରିବେ । ଯେଉଁମାନେ ଭଲ ଶିକ୍ଷକ, ପିଲାମାନେ ତାଙ୍କୁ ଆପଣାର କରିବେ ଓ ସବୁ ସ୍ନେହ ଅଜାଡ଼ିଦେବେ । ମୁଁ କିନ୍ତୁ ସ୍କୁଲରେ ପହଞ୍ଚିଲା ମାତ୍ରକେ କାହିଁକି ଏ ପରିବର୍ତ୍ତନ ? ମୁଁ ବାରମ୍ବାର ଆତ୍ମସମୀକ୍ଷା କରେ । ସେଥିପାଇଁ ପିଲାମାନେ ଅକ୍ଷର ଶିଖୁଛନ୍ତି କି ନାହିଁ, ପଣକିଆ ମନେ ରଖିଛନ୍ତି କି ନାହିଁ, ବହି ପଢୁଛନ୍ତି କି ନାହିଁ ମୁଁ ପରୀକ୍ଷା କରି ଦେଖେ ନାହିଁ । ଅନ୍ୟପକ୍ଷରେ ପିଲାମାନଙ୍କୁ ହସିହସାଇବା ଭଳି ମଜାଗପ କହିବାକୁ ଉତ୍ସାହିତ କରେ । ପିଲାମାନେ ମନକୁ ମନ କେତେପ୍ରକାର ଉଦ୍ଭଟ କାହାଣୀ କହି ଅନ୍ୟସମସ୍ତଙ୍କୁ ହସାଇବାକୁ ଚେଷ୍ଟା କରନ୍ତି । ଏକଥା ଆରମ୍ଭ ହେଲାମାତ୍ରକେ ଗାଁର ବୟସ୍କ ବାପାମାଆ ଓ ଧାଙ୍ଗଡ଼ା ଧାଙ୍ଗଡ଼ୀ ସବୁ ସ୍କୁଲ ଚାରିପାଖେ ଘେରି ଯିବେ ଓ ପିଲାଙ୍କୁ ବି ଗପ କହିବାକୁ ଏକ ବାତାବରଣ ସୃଷ୍ଟି କରିବେ । ଗପ ସରିଲାମାତ୍ରକେ ଆରମ୍ଭ ହେବ ପିଲାଙ୍କ ଗୀତ ବୋଲିବା ପ୍ରତିଯୋଗିତା । କେତେବେଳେ ନିଜ ଭାଷାରେ କେତେବେଳେ ଓଡ଼ିଆରେ । ଦଳଗତ ସଙ୍ଗୀତ ବି ଆରମ୍ଭ ହୋଇଯାଏ ।

ପୁଅମାନେ ବୋଲିଲେ ଝିଅମାନେ ଜବାବ ଦେବେ ଓ ଝିଅମାନେ ଗୋଟିଏ ଧାଡି ଗାଇଲେ ପୁଅମାନେ ଆଉ ଗୋଟିଏ ଧାଡି ପୂରଣ କରିବେ । ଶେଷରେ ଅଭିନୟ ପର୍ବ ଆରମ୍ଭ ହୁଏ । ପିଲାମାନେ ଏକାଠି ବସି ଏକ ଛୋଟ ନାଟକ କରିବେ । ଖୁବ୍ ଭଲଲାଗେ ସେମାନଙ୍କର ଅଙ୍ଗଭଙ୍ଗୀ, କଥାବାର୍ତ୍ତା, ଭାବ ବିନିମୟର ଅଙ୍କାବଙ୍କା ମାଧ୍ୟମ । ସମ୍ଭବତଃ ଗୁରୁଭାଇ କିଛିଟା ପ୍ରଶିକ୍ଷଣ ଦେଇଥାଏ । କିନ୍ତୁ ସବୁଥିରେ ଭାବ ବିହ୍ୱଳତା ଓ ଆତ୍ମପ୍ରକାଶର ଛାପ ସହଜରେ ଅନୁଭବ କରିହୁଏ । ରାତିସ୍କୁଲ ଏହାପରେ ଶେଷ ହୁଏ । ମୁଁ ମୋର ସାଥୀ ସହଯୋଗୀମାନଙ୍କ ସହ ଫେରିଲା ବେଳକୁ ରାତିସ୍କୁଲର କେତେକ ପିଲା ମଞ୍ଚା ଉପରେ ପହଞ୍ଚି ଯାଇଥାଆନ୍ତି । କାହା ହାତରେ ବଂଶୀ ତ କାହା ହାତରେ ଢ଼ାପ । କିଏ ଗୀତ ଗାଇଲାଣିତ କିଏ ବଂଶୀ ବଜାଇଲାଣି । ପ୍ରତ୍ୟେକଟିର ମୂର୍ଚ୍ଛନା ଉପତ୍ୟକାର ନିସ୍ତବ୍ଧତାକୁ ଭାଙ୍ଗଦିଏ ଓ ଆମର ପାଦଚଲା ରାସ୍ତାର ଦୂରତ୍ୱ କମି ଯାଇଥାଏ । ଜହ୍ନ ରାତିରେ ଶୀତ ସତ୍ତ୍ୱେ ଏକ ରୋମାଣ୍ଟିକ୍ ଚିନ୍ତା ଆମ ସମସ୍ତଙ୍କୁ ଗ୍ରାସ କରେ ।

ସାରା ଭାରତରେ ସ୍ୱେଚ୍ଛାସେବୀ ସଂଗଠନମାନେ ସାକ୍ଷରତା କାର୍ଯ୍ୟକ୍ରମ ହେଉ ବା ସଂଗଠନ କାର୍ଯ୍ୟକ୍ରମ ହେଉ, ସାଂସ୍କୃତିକ ଉପାଦାନ ସବୁ ରଖିଥାଆନ୍ତି । ପ୍ରତ୍ୟେକ ବିପ୍ଳବ, ସ୍ୱାଧୀନତା ସଂଗ୍ରାମ, ଜନଆନ୍ଦୋଳନରେ ଗଣସଂଗୀତ ଓ ନୃତ୍ୟ ଏକ ଅବିଚ୍ଛିନ୍ନ ଅଙ୍ଗ ହୋଇରହିଥାଏ । ଏହାର ପ୍ରଭାବ ଚେତନାରେ ସଂଗୀତର ରୂପ ନିଏ । ଏହାର ପରିପ୍ରକାଶ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମର ରୂପ ନିଏ । ବ୍ରାଜିଲ୍‌ର ଶିକ୍ଷାବିତ୍ ପାଓଲୋ ଫ୍ରେୟରେ ଗୋଟାଏ ଯୁଗାନ୍ତକାରୀ ବହି ଲେଖିଛନ୍ତି 'Cultural Action for Freedom' । ଛୋଟ ବହିଟିଏ ଓ ପଢ଼ିବାକୁ ବେଶୀ ସମୟ ଲାଗେ ନାହିଁ । ଉପନିବେଶବାଦୀମାନେ ଯେଉଁ ବହିସଂସ୍କୃତି ସ୍ଥାନୀୟ ଲୋକଙ୍କ ଉପେର ଲଦି ଦେଇଥାଆନ୍ତି ତାହା କ୍ରମେ ଅନ୍ତିମଜ୍ଜାଗତ ହୋଇଯାଏ ଓ ସ୍ଥାନୀୟ ଲୋକସଂସ୍କୃତି ଓ ମୂଲ୍ୟବୋଧ ଲୋପ ପାଇଯାଏ । 'ନୀରବତାର ସଂସ୍କୃତି' ବା Culture of Silenceର ଉତ୍ପତ୍ତି ଏଇଠାରୁ । ଏ ନୀରବତାକୁ ଭାଙ୍ଗିବାକୁ ହେଲେ ସାଂସ୍କୃତିକ କାର୍ଯ୍ୟକ୍ରମର ଘୋର ଆବଶ୍ୟକତା ଅଛି ବୋଲି ପାଓଲୋ ଫ୍ରେୟରେ ସ୍ପଷ୍ଟ କରିଛନ୍ତି । ସାରା ପୃଥିବୀରେ ସାକ୍ଷରତା ଆନ୍ଦୋଳନରେ ଏଇ ରଣନୀତି ଅବଲମ୍ବନ କରାଯାଇଛି । କାଶୀପୁର ଆସିବା ପୂର୍ବରୁ ମୁଁ ଏ ବହିଟି କେତେଥର ପଢ଼ିଥିଲି ଓ ପ୍ରଭାବିତ ହୋଇଥିଲି । ରାତ୍ରି ସ୍କୁଲରେ ପିଲାମାନେ ଯେତେବେଳେ ଏକ ପ୍ରାକୃତିକ ପରିବେଶରେ ଗୀତ ଗାଇଲେ, ନାଚିଲେ ଓ ଆତ୍ମପ୍ରକାଶ କରିଲେ, ମୁଁ ସେତେବେଳେ 'Cultural Action for Freedom'ର ଝଲକ ସ୍ପଷ୍ଟ ଦେଖି ପାରିଲି । ଆମର ପିଲାମାନେ, ଗୁରୁଭାଇମାନେ ଓ ସହକର୍ମୀମାନେ ଗୀତ ଲେଖିଲେ ଓ ଗାଇଲେ । ଚେତନାର ସଂଗୀତ ସୃଷ୍ଟି କରିଲେ । ସ୍ଥାନୀୟ ବାଦ୍ୟଯନ୍ତ୍ର ସହ ଆଧୁନିକ ଯନ୍ତ୍ରମାନେ ସାମିଲ୍ ହେଲେ । ଆଦିବାସୀ ଭାଷା ସହ ଓଡ଼ିଆ ଭାଷାର ଏକ ମିଳନ ହେଲା । ଆମ ସମସ୍ତଙ୍କର ମିଳିତ ଉଦ୍ୟମରେ 'ଗୀତରେ ଗୀତରେ' ବୋଲି ଦୁଇ ଖଣ୍ଡ ବହି ପ୍ରକାଶିତ ହେଲା ।

ଏଇ ସମୟରେ ରାଜସ୍ଥାନର ତିଲୋନିଆରେ କଣ୍ଢେଇ ନାଚ ଜରିଆରେ ଖୁବ୍ ଚେତନା କାର୍ଯ୍ୟକ୍ରମ ଚାଲିଥାଏ । ଗାଁରେ କଣ୍ଢେଇ ସବୁ ହାତରେ ଚଳାଯାଏ- ସୂତାରେ ନୁହେଁ । ପର୍ଦ୍ଦା

ଆଢୁଆଳରେ ସ୍ୱର ଦିଆଯାଏ । ସିଧାସିଧା ଦର୍ଶକମାନଙ୍କ ସହ କଥାବାର୍ତ୍ତା ଓ ପ୍ରଶ୍ନୋତ୍ତର କରିହୁଏ । ଭାଷା ସହଜ । ହାସ୍ୟରସ୍ୟ ବହୁଳ ନାଟକ ଓ ସଂଗୀତ । ବାର୍ତ୍ତା ଦେଇହୁଏ ଓ ଗ୍ରହଣ କରିହୁଏ । ଏସବୁ କଣ୍ଢେଇ ତିଆରି କରିବା ସହଜ । ଆମର କେତେଜଣ ଗୁରୁଭାଇ ଟ୍ରେନିଂ ନେବା ପାଇଁ ରାଜସ୍ଥାନ ଗଲେ ଓ ଫେରିଲା ମାତ୍ରକେ ଶହ ଶହ କଣ୍ଢେଇ ତିଆରି ହେଲା । ଗାଁରେ ଗାଁରେ କଣ୍ଢେଇ ନାଚ ଆୟୋଜନ କରିବା ପାଇଁ ପ୍ରସ୍ତୁତି ଚାଲିଲା । ସାହୁକାର ଋଣ ବ୍ୟବସ୍ଥା ନିଶା ନିବାରଣ, ବୃକ୍ଷରୋପଣ, ସାକ୍ଷରତାର ଆବଶ୍ୟକତା, ଛୋଟ ଛୋଟ ଲୋକ କଥାକୁ ନେଇ ଆମର 'ସଞ୍ଚାର ଦଳ' ଗଢ଼ି ଉଠିଲା । ଗୋଟିଏ ଗାଁରେ କଣ୍ଢେଇ ନାଚ ହେଲେ ପାଖ ଗାଁରୁ ସବୁଲୋକ ଚାଲି ଆସୁଥିଲେ ଓ ରହିଁଥିଲେ ତାଙ୍କ ଗାଁକୁ ସଞ୍ଚାର ଦଳ ଆସୁ । ଗୀତ ନାଚ କିନ୍ତୁ ରାତି ସାରା ଚାଲୁ ବୋଲି ଅନୁରୋଧ ଆସେ । ଆମର ସାଂସ୍କୃତିକ ଦଳ କେବଳ ଦୁଇ ତିନିଘଣ୍ଟାର କାର୍ଯ୍ୟକ୍ରମ କରିବାକୁ ସକ୍ଷମ । ରାତ୍ରି ସାରା ଉଜାଗର ରହି କାର୍ଯ୍ୟକ୍ରମ ପ୍ରଦର୍ଶନ କରିବାକୁ ବି ଆଲୋକର ଆବଶ୍ୟକତା ଅଛି ।

ସେତେବେଳେ ନୂଆ ହୋଇ ପୋର୍ଟେବଲ୍ ହୋଣ୍ଡା ଜେନେରେଟର ବଜାରକୁ ଆସିଥାଏ ଓ ବଡ଼ ବଡ଼ ସହରରେ ମିଳୁଥାଏ । ମୋର ବନ୍ଧୁ ଦିଲ୍ଲୀରେ ଏଇ ଭଳି ପେଟ୍ରୋଲ ଚାଳିତ ଗୋଟାଏ ହୋଣ୍ଡା ଜେନେରେଟର କିଣିବାରେ ସହଯୋଗ କଲେ ଓ ମୁଁ ତାହା ଆମର 'ସଞ୍ଚାର ଦଳ'କୁ ଉପହାର ଦେଇଥିଲି । ଦୂର ଗାଁମାନଙ୍କରେ ଯେଉଁଠି ସନ୍ଧ୍ୟା ପରେ ସବୁ ଅନ୍ଧାରରେ ବୁଡ଼ିଯାଏ ଅଥବା ଜହ୍ନରାତିର ଅଧାଆଲୁଅ ଓ ଅଧା ଅନ୍ଧାରରେ ଏକ ନୀରବ ପୃଥିବୀ ହୋଇଯାଏ, ସେଠାରେ ଆମର ସଞ୍ଚାର ଦଳର ଦୃଢ଼ ପ୍ରଦର୍ଶନ ଏକ ଚମକ ସୃଷ୍ଟି କରିଥିଲା । ପିଲାମାନେ ମଧ୍ୟ ରାତିସ୍କୁଲରେ ଖୁସିରେ ଗୀତ ଗାଇଲେ, ନାଚିଲେ, କଣ୍ଢେଇ ଚଳାଇବା ଶିଖିଲେ । ସବୁଆଡେ ଏକ ଅଭିନବ ଉତ୍ତେଜନା ପ୍ରକାଶ ପାଇଲା । ସାହୁକାର, ଅଫିସର ଗୋଷ୍ଠୀ ଏଥିରେ ଖୁବ୍ ଆତଙ୍କିତ ହେଲେ । ଗାଁ ମାନଙ୍କୁ ଧମକ ଆସିଲା ଆମ 'ସଞ୍ଚାର ଦଳ'କୁ ନିମନ୍ତ୍ରଣ ନକରିବା ପାଇଁ । ଯେଉଁ ଯେଉଁ ଗାଁରେ 'ଦେଶିଆ ନାଚପାର୍ଟି' ଥିଲା ଓ 'କଳାହାଣ୍ଡିଆ ଉସ୍ତାଦ' ବା ନାଟଗୁରୁ ଥିଲେ, ସେମାନେ ଖୁବ୍ ଅସହାୟ ଅନୁଭବ କଲେ । ଅନେକ ନାଟ୍ୟଗୁରୁ ନିଜ ନିଜ ଗାଁକୁ ବାହୁଡି ଯାଇଥିଲେ ବାଧ ହୋଇ ।

ଜହ୍ନ ରାତିରେ ସାଙ୍ଗମେଳ ହୋଇ ରାତ୍ରିସ୍କୁଲ ପରିଦର୍ଶନରୁ ଫେରିବା ଏକ ଚମତ୍କାର ଅନୁଭୂତି । ରାସ୍ତା ଲମ୍ବା ହେଲେ ବି ବାଟ ଜଣାପଡେ ନାହିଁ । ମୁଁ କିନ୍ତୁ ସଂସ୍କୃତି ଓ ଅପସଂସ୍କୃତିର ଏକ ମିଶାମିଶି ଯୁକ୍ତିତର୍କରେ ନିଜକୁ ବୁଡାଇ ଦେଇଥାଏ । ଆଦିବାସୀମାନଙ୍କ ନିଜସ୍ୱ ସଂସ୍କୃତି କ'ଣ ? କାଶୀପୁରକୁ ଭିଡିଓ ଆସିଲେ, ସିନେମା ଆସିଲେ, ଉପକୂଳର ଅପେରା ସବୁ ଆସିଲେ ଆଦିବାସୀଙ୍କ ନିଜସ୍ୱ ଗୀତ ନାଚ ଓ ସାଂସ୍କୃତିକ ମୂଲ୍ୟବୋଧ ଅକ୍ଷୁର୍ଣ୍ଣ ରହିବ କି ? ରାୟଗଡ଼ା ସହରକୁ ଆଦିବାସୀ ଗଲେ ହିନ୍ଦୀ ଅଥବା ତେଲୁଗୁ ଚଳଚ୍ଚିତ୍ରଟିଏ ଦେଖିବାକୁ ଭୁଲେ ନାହିଁ । ସେଠାରୁ ବିଭିନ୍ନ ସିନେମା ସଂଗୀତ ଶୁଣି ସେ ବି ଆକୃଷ୍ଟ ହୁଏ । 'ରଙ୍ଗବତୀ, ରଙ୍ଗବତୀ' ଗୀତ ଗୁଣୁଗୁଣୁ କରେ । ଆଦିବାସୀଙ୍କ ସାଂସ୍କୃତିକ ପରମ୍ପରା ଓ ଗୀତନାଚର

ସୃଜନୀଶକ୍ତି କେମିତି ମରିହଜି ନଯାଉ ମୁଁ ଚିନ୍ତିତ ହୋଇପଡ଼େ । ବର୍ଷାଦିନର ମାଣ୍ଡିଆରାଣୀ ପର୍ବ, ପୌଷ ପରବ, ଚୈତ ପରବ ଆଦିର ଏକ ସ୍ୱତନ୍ତ୍ର ସ୍ଥାନ ଅଛି ଆଦିବାସୀ ଜୀବନରେ । ସେ ସବୁକୁ ବୁଝିବା ଓ ସେସବୁକୁ ଅକ୍ଷତ ରଖିବାକୁ ହେଲେ କେଉଁ ରଣନୀତି ଅବଲମ୍ବନ କରିବାକୁ ହେବ ମୁଁ ପ୍ରଶ୍ନ ପଚାରି ଉତ୍ତର ପାଏ ନାହିଁ । ବିକାଶ କେବଳ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପ୍ରଶ୍ନ ସହ ସଂଶ୍ଳିଷ୍ଟ ନୁହେଁ, ସଂସ୍କୃତିକ ବିକାଶ ସହ ଓତଃପ୍ରୋତ ଭାବେ ଜଡିତ । ଆଦିବାସୀ ବିକାଶର ମୂଳ ଲକ୍ଷ୍ୟ ଗୁଡ଼ିକ ଭିତରେ ସଂସ୍କୃତିକ ଅଭିବୃଦ୍ଧି ମଧ୍ୟ ସନ୍ନିହିତ । ଏଇଥିପାଇଁ ବେଳେବେଳେ କାଶୀପୁରରେ ଏକ ଲୋକନୃତ୍ୟ, ଗୀତ, ନାଟକ ଉତ୍ସବର ଆୟୋଜନ କରିବାକୁ ମନ ଡାକେ । ଆଦିବାସୀଙ୍କ ସହ ଏ ବିଷୟରେ ବିଶେଷ ଆଲୋଚନା କରିବାକୁ ମୁଁ ଯୋଜନା କରେ ।



# ୨୭

କୋଡିପାରି ପଞ୍ଚାୟତର ରତାଚୁଆଁ ଗାଁରେ ଏବଂ ଡଙ୍ଗାସିଲ୍ ପଞ୍ଚାୟତର ରେଙ୍ଗଣାସିଲ୍ ଗାଁରେ ମୁଣ୍ଡା ବା ଚେକ୍ ଡ୍ୟାମ୍ ତିଆରି କରିବାକୁ ଆମକୁ ଦୁଇ ବର୍ଷ ଲାଗିଗଲା । ସିମେଣ୍ଟ, ପଥର, ବାଲି ଆଦି ସଂଗ୍ରହ କରିବା ଖୁବ୍ ସମୟ ସାପେକ୍ଷ ଥିଲା । ରାୟଗଡ଼ାରୁ ସିମେଣ୍ଟ କାଶୀପୁର ଆସିଥିଲା ସତ, କାଶୀପୁରରୁ ଏ ଦୁଇ ଗାଁକୁ ସିମେଣ୍ଟ ପହଞ୍ଚେଇବା ଖୁବ୍ କଠିନ ବ୍ୟାପାର ହୋଇପଡିଥିଲା । ତଥାପି ଗାଁର ଆବାଳବୃଦ୍ଧବନିତା ସମସ୍ତେ କୋଡିଏ କିଲୋମିଟର ଚାଲି ଚାଲି ଆସୁଥିଲେ । ମୁଣ୍ଡରେ ବାଉଁଶ ଟୋକେଇ । ସିମେଣ୍ଟ ବସ୍ତାକୁ ଦୁଇଭାଗ କରାଯାଉଥିଲା ଓ ବାଉଁଶ ଟୋକେଇରେ ଭରି ଗାଁ ଲୋକ ବୋହି ନେଉଥିଲେ । ପଥର ସବୁ ଦୂର ପାହାଡରୁ ସଂଗ୍ରହ କରି ଗଦା କରାଯାଉଥିଲା । ମୁଣ୍ଡ ଉପରେ ଧରି ତାକୁ ଗାଁ ଲୋକେ ଧାଡି ବାନ୍ଧି ମୁଣ୍ଡା ତିଆରି ଜାଗାକୁ ବୋହି ଆଣୁଥିଲେ । ବାଲି ବି ସେମିତି ସଂଗ୍ରହ କରାଯାଉଥିଲା । ବାଲି ସବୁ ମାଟି ମିଶା ମାଟିଆ ରଙ୍ଗର । କାଶୀପୁରରେ ସବୁ ମିଳିବ କିନ୍ତୁ ବାଲି ଗଣ୍ଡେ ପାଇବା କଷ୍ଟକର । ଯେଉଁ ଦିନ ରତାଚୁଆଁ ଗାଁ ଓ ରେଙ୍ଗଣାସିଲ୍ ଗାଁରେ କେନାଲରେ ପାଣି ପହଞ୍ଚିଲା ଗ୍ରାମବାସୀଙ୍କ ଉଦ୍ୟମରେ ଓ ଆମର ସହାୟତାରେ, ସେଦିନର ଆନନ୍ଦ କହିଲେ ନସରେ । କେତେ ଦିନର ସ୍ୱପ୍ନ ସାର୍ଥକ ହେଲା । ଗାଁର ବୃଦ୍ଧ ଓ ଗୁରୁଜନମାନେ ଆମର ଅବଦାନ ପ୍ରତି ଅନେକ ବାଟରେ କୃତଜ୍ଞତା ଜଣାଇଲେ । ଗାଁରେ ସଭା ହେଲା । ଗୀତ, ନାଚ ଓ ଭୋଜି ଭାତ ହେଲା । ଗାଁରେ ଗୋଟିଏ ଫସଲ ବଦଳରେ ଦୁଇଟି ଫସଲ ହେବ, ଏହା କଳ୍ପନାତୀତ ଥିଲା । କିଏ କହିଲା ଖରାଦିନେ ମକା କରିବ । କିଏ କହିଲା ଶୀତ ଦିନେ ଆଳୁ, କୋବି, ପିଆଜ, ରସୁଣ ଆଦି ପନିପରିବା ଲଗାଇବ । ବିଭିନ୍ନ ପରିକଳ୍ପନା ଓ ବିଭିନ୍ନ ହିସାବ । ଆମେ ସବୁ ଆଦିବାସୀଙ୍କୁ ପେଟର ଭୋକ ବିଷୟରେ କହିଥିଲୁ ଓ ହାଟ ବଜାରର ସୂଚନା ଦେଇଥିଲୁ । କେତେଜଣ କହିଲେ ଯେ ତାଙ୍କର ସାପ୍ତାହିକ ହାଟକୁ କେତେ କ୍ୱିଣ୍ଟାଲ୍ କଞ୍ଚାଲଙ୍କା ବାହାରୁ ଆସିଛି, ସେମାନେ ଲଙ୍କା ଚାଷ କରିବେ । ଆଉ କେତେଜଣ କହିଲେ ଯେ ତାଙ୍କ ମାଟିରେ ଆଳୁ ପିଆଜ ଆଦି ଭଲ ହେବ । ଆଉ କେତେଜଣ କହିଲେ ଯେ ଗୋରଖପୁରର ସାହୁ ଟମାଟୋ କରି ଖୁବ୍ ପଇସା ଆଦାୟ କରୁଛି । ଏ ଦୁଇଟି ଗାଁର ଉତ୍ସାହ କାଶୀପୁରର ବିଭିନ୍ନ ଅଞ୍ଚଳକୁ ବ୍ୟାପୀ ଯାଇଥିଲା । ଅନ୍ୟ ଗାଁରେ ସନ୍ଧ୍ୟାବେଳେ ଗ୍ରାମସଭାର ଆଲୋଚନାରେ ଆମେ ରତାଚୁଆଁ ଓ ରେଙ୍ଗଣାସିଲ୍‌ର ସଫଳ ଉଦାହରଣ ଦେଉଥାଉ । କେତେ ଗାଁର ବାପା ମାଆମାନଙ୍କୁ ଏ ଦୁଇଟି ଗାଁକୁ ବୁଲି ଆସିବାର ବ୍ୟବସ୍ଥା କରିଥାଉ । କାଶୀପୁରର ବିଭିନ୍ନ ଗାଁରୁ ମୁଣ୍ଡା(ଚେକ୍‌ଡ୍ୟାମ୍) ଓ ବାଟିଆ (କେନାଲ୍) ଆଦି କରିବାକୁ ପ୍ରସ୍ତାବ ଆସୁଥିଲା । ସେ ଭିତରେ ମାଣ୍ଡିବିଶି ପଞ୍ଚାୟତର ରସ୍ଥୁଗୁଡ଼ା, ତଳପଙ୍ଗା,

ବାହାରପଦାମାଝୀ, ଭିତରପଦାମାଝୀ, ସୁଙ୍ଗେର ପଞ୍ଚାୟତର ସିନ୍ଦୁର ଘାଟି, ଖାଲିଗୁଣା, ବୁଡନଲ ଚନ୍ଦ୍ରଗିରି ପଞ୍ଚାୟତର ଦୂରଖାଲ, କାଶୀପୁରର ପରଜାଶୀଳା, ରାଣିଝିରି ଆଦି ଅନ୍ୟତମ ।

ଯେତେବେଳେ ମୁଣ୍ଡା ତିଆରି ପାଇଁ ଅନୁରୋଧ କରୁଥିବା ଗାଁମାନଙ୍କର ସଂଖ୍ୟା ପଚାଶ ଟପିଗଲା, ଆମ ଭିତରେ ଭାଳେଣି ପଡିଲା । ଏସବୁ କରିବାକୁ ଡିଜାଇନ୍ ଓ ଏଷ୍ଟିମେଟ୍ ଦରକାର । ଇଞ୍ଜିନିୟର ଆବଶ୍ୟକ । ସମ୍ବଳ ମଧ ଖୁବ୍ ଲୋଡ଼ା । ଗାଁମାନେ ସବୁ କେଉଁ ଦୂର ଅପହଞ୍ଚ ଜାଗାରେ । କୋଡିପାରି ଓ ଟଙ୍ଗାସିଲ ପଞ୍ଚାୟତରୁ ବେଶୀ ଅନୁରୋଧ ଆସିଥିଲା । ଥରଲି, ଅଣଗାର, ମାଳାମ୍ବ, ପଣ୍ଡକାପଦରର ଗାଁ ଲୋକେ ରେଙ୍ଗଣାସିଲ ଗାଁକୁ ଦେଖି ପ୍ରେରଣା ପାଇଥିଲେ । ରତାଚୁଆଁ ଗାଁର ମୁଣ୍ଡାକୁ ଦେଖି ପାଖରେ ଥିବା ନାରଙ୍ଗଯୋଡ଼ି, କୋଡ଼ିପାରି, ଗଢଡଗୁଡ଼ା ଆଦିର ଗାଁମାନଙ୍କରୁ ମଧ ମୁଣ୍ଡା ତିଆରି କରିବାକୁ ପ୍ରସ୍ତାବସବୁ ଆସିଥିଲା । ଆମେ ସବୁକଥା ବିଚାର କରି ରାୟଗଡ଼ା ଆଇ.ଟି.ଡି.ଏ. ଅଧିକାରୀ ଓ କୋରାପୁଟ ଜିଲ୍ଲାପାଳଙ୍କ ଦୃଷ୍ଟି ଆକର୍ଷଣ କରିଥିଲୁ । ସେମାନଙ୍କର ଆଦେଶ ମୁତାବକ ଗୋଟାଏ ଇଞ୍ଜିନିୟରିଂ ଟିମ୍ ମଧ ଆସି ଆମର ସ୍ୱଳ୍ପ ବ୍ୟୟରେ ନିର୍ମିତ ଚେକ୍ ଡ୍ୟାମ୍‌ମାନଙ୍କୁ ଦେଖି ବିଶ୍ୱାସ କରିପାରୁନଥିଲେ ଯେ, ମାତ୍ର କେଇ ହଜାର ଟଙ୍କା ବିନିଯୋଗ କରି କେତେ ଲକ୍ଷ ଟଙ୍କାର କାମ ସମ୍ଭବ ହୋଇପାରୁଛି । ସେମାନେ ସରକାରୀ କାମ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନଙ୍କ କାମ ଭିତରେ ଫରକ ଦେଖି ପାରିଥିଲେ । ଆମକୁ ପ୍ରଶଂସା କରିଥିଲେ ସତ, କିନ୍ତୁ ଗାଁ କମିଟିରେ ଓ ଜନସହଭାଗିତାରେ ଚେକ୍ ଡ୍ୟାମ୍ କାମ କରିବାକୁ କେହି ପ୍ରସ୍ତୁତ ନଥିଲେ । 'ଠିକାଦାର' ଛଡ଼ା ଏତେବଡ଼ କାମ କେହି କରିପାରିବେ ନାହିଁ ବୋଲି ସେମାନଙ୍କର ମାନସିକତା ଦୃଢ଼ ହୋଇ ସାରିଥିଲା ।

ସିମେଣ୍ଟ, ପଥର, ବାଲି, ଲୁହାଛଡ଼ ଆଦିକୁ ବୋହିବା ସହଜ ଓ ଶୀଘ୍ର ହେବ ବୋଲି ଆମେ ଗୋଟାଏ ଟ୍ରାକ୍ଟର କିଣିବାକୁ ନିଷ୍ପତ୍ତି ନେଇଥିଲୁ । ସେତେବେଳେ କାଶୀପୁରରେ ମୋହନ ରାଓର ଗୋଟାଏ ମାତ୍ର ସେକେଣ୍ଡ ହ୍ୟାଣ୍ଡ ଟ୍ରାକ୍ଟର ଥାଏ । ଭଡା ମାତ୍ରାଧିକ । ସେ ବି ଏତେ କାମ ପାଉଥାଏ ଯେ, ଅପହଞ୍ଚ ଗାଁମାନଙ୍କୁ ଯିବାକୁ ପସନ୍ଦ କରିନଥାଏ । ସୁଲଭ ଚାଉଳ ବୋହିବା କାମରେ ଲାଗିଥାଏ । କେବେ କେମିତି ଠିକାଦାରମାନଙ୍କ ପାଇଁ ବାଲି ପ୍ରାୟ ତିରିଶ କିଲୋମିଟର ଦୂର କଟିଙ୍ଗଗୁଡ଼ା ନଦୀରୁ ବୋହିଥାଏ । ଗାଁ ଲୋକଙ୍କ ସହାୟତା ପାଇଁ ଟ୍ରାକ୍‌ଟରଟିଏ କିଣିବାକୁ ଆମର ନିଷ୍ପତ୍ତିକୁ ଅନୁଦାନକାରୀ ସଂସ୍ଥାମାନେ ସମର୍ଥନ କରିଥିଲେ ।

ସେତେବେଳେ ବଜାରରେ ଫୋର୍ଡ, ଏସ୍‌କର୍ଟ, ମାସିଫର୍ଗୁସନ୍, ମହିନ୍ଦ୍ରା ଆଦି ଖୁବ୍ ଉଚ୍ଚ ଦରର ଟ୍ରାକ୍‌ଟର ମିଳୁଥାଏ । ଆଇସର୍ ଟ୍ରାକ୍ଟର ବଜାରକୁ ନୂଆ ହୋଇ ଆସି ପଞ୍ଜାବ, ହରିୟାନା ଓ ରାଜସ୍ଥାନରେ ଖୁବ୍ ଲୋକପ୍ରିୟ ହୋଇଥାଏ । ଏ ଟ୍ରାକ୍ଟରର ଏକ ଇତିହାସ ଅଛି । ଜର୍ମାନୀରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧବେଳେ ଏ ଟ୍ରାକ୍ଟରକୁ ଡିଜାଇନ୍ କରାଯାଇଥିଲା । ଏହାର ଇଞ୍ଜିନ୍ ଥଣ୍ଡା ହେବା ପାଇଁ ପାଣି ଦରକାର କରେ ନାହିଁ । ଘଣ୍ଟାକୁ ଗୋଟାଏ ଲିଟର ଡିଜେଲ ଦରକାର କରେ । ୨୪ଅଶ୍ୱଚାଳିତ ଶକ୍ତି ବିଶିଷ୍ଟ ସିଙ୍ଗଲ୍ ଇଞ୍ଜିନ୍ । ଚଲାଇବାକୁ

ସହଜ । ଖୁବ୍ ଶସ୍ତା, ସୁନ୍ଦର ଓ ଛୋଟ । ଏମିତି ଗୋଟାଏ ଟ୍ରାକ୍ଟର କାଶୀପୁରରେ ଚାଲିବ କି ନାହିଁ ମୁଁ ବିଚାର ନକରି ମଧ୍ୟ କିଣିବାକୁ ନିଷ୍ପତ୍ତି ନେଇଥିଲି । ଓଡ଼ିଶାରେ ଆଇସର୍ ଟ୍ରାକ୍ଟରର ବଜାର ନଥାଏ । ଆମର ବିଦେଶୀ ଅନୁଦାନକାରୀ ସଂସ୍ଥା ଆଇସର୍ କମ୍ପାନୀକୁ ଡଲାରରେ ଅର୍ଥ ଦେଇଥିଲେ । ତେଣୁ ଟିକିଏ ଶସ୍ତା ପଡିଥିଲା । ପୂରା ପେମେଣ୍ଟ ଦେବା ପରେ ମଧ୍ୟ ଟ୍ରାକ୍ଟର ଆମକୁ ମିଳିବା ପାଇଁ ଅନେକ ବିଳମ୍ବ ଲାଗିଲା । ମୁଁ ଆଇସର୍ କମ୍ପାନୀକୁ ଭୀଷଣ ଗାଳି ଦେଇ ଚିଠି ଲେଖିଥିଲି । ତାଙ୍କର ବିକ୍ରୟ ଦାୟିତ୍ୱରେ ଥିବା ଅଫିସରଙ୍କୁ ଭେଟି ମୋର ଅସନ୍ତୁଷ୍ଟ ମନୋଭାବ ଜଣାଇଥିଲି । ମୋର କଠୋର ଭାଷା ଓ କ୍ରୋଧକୁ ସହିଥିଲେ ଆଇସର୍‌ର ତରୁଣ ମ୍ୟାନେଜର୍ ଶ୍ରୀ ବିପିନ୍ ସାକ୍‌ସେନା । କିଛି ମାସପରେ ବିପନ୍ ସାକ୍‌ସେନା ଆଇ.ଏ.ଏସ୍ ପରୀକ୍ଷାରେ ସାଫଲ୍ୟ ଅର୍ଜନ କରି ଓଡ଼ିଶାରେ ତାଙ୍କର ଚାକିରି ଆରମ୍ଭ କରିଥିଲେ । ମୋ ସହ ପ୍ରଥମ ଦେଖାରେ ମୁଁ ତାଙ୍କୁ କେମିତି ଟ୍ରାକ୍ଟର କିଣିବାକୁ ନେଇ ଗାଳି କରିଥିଲି, ମୋତେ ମନେ ପକାଇ ଦେଇଥିଲେ । କିନ୍ତୁ ବିପିନ୍ ସବୁଦିନ ପାଇଁ ଅଗ୍ରଗାମୀର ବନ୍ଧୁ ହୋଇ ଯାଇଥିଲେ ଓ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ । ଟ୍ରାକ୍ଟର ଚଲାଇବା ପାଇଁ ଡ୍ରାଇଭରଟିଏ ଲୋଡା ହେଉଥିଲା । ଆଇସର୍ ଟ୍ରାକ୍‌ଟର ଓ ଘାଟି ରାସ୍ତା ପାଇଁ ଜଣେ ଅଭିଜ୍ଞ ଡ୍ରାଇଭର ଆବଶ୍ୟକ ।

ତିଲୋନିଆରୁ ରାଜସ୍ଥାନୀ ଡ୍ରାଇଭର ବାବୁଲାଲ୍ କାଶୀପୁର ଆସିବା ପାଇଁ ରାଜି ହୋଇଗଲା ଓ ଜଣେ ଆଦିବାସୀ ପିଲାକୁ କିଛି ଦିନ ଭିତରେ ଡ୍ରାଇଭିଂ ଶିଖାଇଦେବାକୁ ସେ ପ୍ରସ୍ତାବ ଦେଇଥିଲା । ଆଇସର୍ ଟ୍ରାକ୍ଟର ଭୀଷଣ ଶବ୍ଦ କରେ ସତ, କିନ୍ତୁ ବେଶୀ ମରାମତି ଆବଶ୍ୟକ କରେ ନାହିଁ । ପରଜାଶୀଳା ଗାଁର ନୀଳାମ୍ବର ଝୋଡିଆକୁ ଧରି ତାର ଭାଇ ଗୁରିଆ ଆସି ଦିନେ ପହଞ୍ଚିଲା । ଗୁରିଆ କଥା ଆଗରୁ ଲେଖିଥିଲି । କାଶୀପୁରର ଗୋଡି ମୁକ୍ତିଆନ୍ଦୋଳନର ସେ ନେତୃତ୍ୱ ନେଇଥିବା ହେତୁ ମୁଁ ତାକୁ ସବୁକଥାରେ ପରାମର୍ଶ କରୁଥିଲି । ନୀଳମ୍ବରକୁ ବାବୁଲାଲ୍‌ର ହେଲ୍‌ପର ହିସାବରେ କାମ କରିବାକୁ ଅନୁମତି ଦେଲି । ସେ ପାଠ ପଢ଼ି ନଥିଲା । ଉଚ୍ଚା ବେଶୀ ନୁହେଁ । କିନ୍ତୁ ଡ୍ରାଇଭିଂ ଓ ଟ୍ରାକ୍ଟର ମରାମତି ଶିଖିବା ପାଇଁ ସେ ଜଣେ ଆଗ୍ରହୀ ଛାତ୍ର ଥିଲା । ବଡ଼ ବଡ଼ ଘାଟିରେ ଏପରିକି ରାସ୍ତା ନଥିବା ଜାଗାରେ ମଧ୍ୟ ବାବୁଲାଲ୍ ସହ ସେ ଟ୍ରାକ୍ଟର ଚଲାଇଲା । ଶୀତଦିନେ ରାତିରେ ଯେତେବେଳେ ଟ୍ରାକ୍ଟର ଚଳାଇ ସେମାନେ ଫେରୁଥିଲେ ଦୁର୍ଗମ ଗାଁମାନଙ୍କରୁ, ନିସ୍ତବ୍ଧତାକୁ ଭଙ୍ଗକରି ଟ୍ରାକ୍ଟର ଶବ୍ଦ କେତେ ମାଇଲ ଦୂରରୁ ଆମେ ଶୁଣି ପାରୁଥିଲୁ । ଛୋଟ ଟ୍ରାକ୍ଟରଟିଏ, କିନ୍ତୁ ପଥର, ବାଲି, ସିମେଣ୍ଟ, ପିଡିଏସ୍(PDS) ଚାଉଳ ଆଦି ବୋହିବାରେ ଖୁବ୍ ସାହାଯ୍ୟ କରୁଥିଲା । ଏପରିକି ରାୟଗଡ଼ାରୁ ଆମର ସମସ୍ତ ଆବଶ୍ୟକୀୟ ଦ୍ରବ୍ୟ ଆଦି ନେବା ଆଣିବାରେ ବେଶ୍ ସାହାଯ୍ୟ କରିଥିଲା ।

ବାବୁଲାଲ୍ କଥା ମୋର ମନେ ରହିବ ସବୁଦିନ ପାଇଁ । ସେ ରାଜସ୍ଥାନର ଯୁବକ । ଆମ ମେସ୍‌ର ଖାଇବା ତାକୁ ରୁଚିକର ହେଉନଥିଲା । ଭାତ ଖାଇବା ତା'ର ଅଭ୍ୟାସ ନଥିଲା । ସେଥିପାଇଁ ଆମକୁ ତା'ପାଇଁ ସ୍ୱତନ୍ତ୍ର ଓ ମସଲାଯୁକ୍ତ ଖାଦ୍ୟ ପ୍ରସ୍ତୁତ କରିବାକୁ ପଡୁଥିଲା ।

ବାବୁଲାଲ୍ କିନ୍ତୁ ଘର କଥା ଖୁବ୍ ମନେ ପକାଉଥିଲା । ଯେଉଁଦିନ ନୀଳାମ୍ବର ଖୋଦ୍ ଡ୍ରାଇଭର ସିଟ୍‌ରେ ବସି ଘାଟି ରାସ୍ତାରେ ଟ୍ରାକ୍ଟର ନିର୍ଭୟରେ ଚଳାଇ ପାରିଲା, ବାବୁଲାଲ୍ କହିଲା ଯେ ସେ ତାର ଗାଁକୁ ଫେରିବ । ନୀଳାମ୍ବରର ଲାଇସେନ୍‌ସ ନାହିଁ । ତା'ର ବାଳକ ସୁଲଭ ଚେହେରା ଓ ଆଦିବାସୀର ସ୍ୱାଭାବିକ ଢ଼ଙ୍ଗ ରଙ୍ଗକୁ ଦେଖି ଆର.ଟି.ଓ(RTO) ଲାଇସେନ୍‌ସ ଦେବକି ନାହିଁ, ଏକଥା ବାରମ୍ବାର ପ୍ରଶ୍ନ ଉଠୁଥିଲା । ଦିନେ ଚାଉଳ ନେଇ ଟ୍ରାକ୍ଟର ମାଇକଞ୍ଚ ନଦୀପାର ହେଉଥିଲା ବେଳେ ଟାଣି ପାରିଲା ନାହିଁ । ବାବୁଲାଲ୍ ନୀଳାମ୍ବରକୁ ଡ୍ରାଇଭର ସିଟ୍‌ରେ ବସାଇଥିଲା । ଟ୍ରାକ୍ଟର ଘାଟି ନଉଠିପାରି ତଳକୁ ଖସି ଆସିଥିଲା । ଭାଗ୍ୟକୁ ବାବୁଲାଲ୍ ଓ ନୀଳାମ୍ବର ବଞ୍ଚିଗଲେ । କିନ୍ତୁ ଏ ଦୁର୍ଘଟଣାରୁ ନୀଳାମ୍ବର ଯେଉଁ ଶିକ୍ଷା ପାଇଲା, ତାହା ସେ କେବେ ଭୁଲି ନଥିଲା । ନୀଳାମ୍ବର ମୋ ଦୃଷ୍ଟିରେ କୋରାପୁଟ ଜିଲ୍ଲାର ସର୍ବଶ୍ରେଷ୍ଠ ଡ୍ରାଇଭର ଓ ଗାଡି ମେକାନିକ ହୋଇପାରିଥିଲା । ଯେଉଁଦିନ କୋରାପୁଟ ଆର.ଟି.ଓ ଅଫିସରେ ଡ୍ରାଇଭିଂ ଲାଇସେନ୍‌ସ ପାଇଁ ସେ ଦରଖାସ୍ତ ଦେଲା, ତାକୁ ଦେଖି ସମସ୍ତେ ହସିଥିଲେ । ସେ ମନଦୁଃଖରେ ଫେରି ଆସିଥିଲା । କିନ୍ତୁ ମୋର ବନ୍ଧୁ ଅରବିନ୍ଦ ବେହେରା କୋରାପୁଟକୁ ଏ.ଡି.ଏମ୍ ହୋଇ ବଦଳି ହୋଇ ଆସିଥାଆନ୍ତି । ଜଣେ ଆଦିବାସୀ ପିଲା ଡ୍ରାଇଭର ହେବ ଜାଣି ସେ ଖୁସି ହୋଇଥିଲେ ଓ ଆର.ଟି.ଓ.କୁ ନୀଳାମ୍ବରର ଡ୍ରାଇଭିଂ ଟେଷ୍ଟ ନେବା ପାଇଁ ତାଗିଦ୍ କରିଥିଲେ । ନୀଳାମ୍ବରକୁ ଲାଇସେନ୍‌ସ ମିଳିବାରେ ଆଉ ବିଳମ୍ବ ହୋଇନଥିଲା । ଏହା ପରେ ପରେ ଜଣେ ଦକ୍ଷ ଗାଡିଚାଳକ ହିସାବରେ ସେ ଖୁବ୍ ଖ୍ୟାତିଲାଭ କରିଥିଲେ । ନୀଳାମ୍ବର ସହ ଦୀର୍ଘଦିନ ପାଇଁ ବନ୍ଧୁତ୍ୱର ଏକ ଦୃଢ଼ ମୂଳଦୁଆ ପଡିସାରିଥିଲା । ସେ ଡ୍ରାଇଭିଂ ସିଟ୍‌ରେ ବସିଥିଲେ ମୁଁ ସବୁଠାରୁ ସୁରକ୍ଷିତ ମନେ କରୁଥିଲି । ଯେତେ ଦୁର୍ଗମବାଟ ହେଉ ଏବଂ ଯେଉଁଭଳି ସମୟ ହୋଇଥାଉ, ସେ ମୋତେ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ପାରୁଥିଲା ।



# ୨୮

ମାଣ୍ଡିବିଶି, ସୁଙ୍ଗେର, ଚନ୍ଦ୍ରଗିରି ଓ ଗୋରଖପୁର ପଞ୍ଚାୟତରେ ଆମର ସାମାଜିକ, ଆର୍ଥିକ ଓ ଶିକ୍ଷାକାର୍ଯ୍ୟକ୍ରମ ଜୋରସୋରରେ ଚାଲିଥାଏ । ଆମେ ସବୁ ସକାଳୁ ବାହାରି ଯାଉ ଓ ସନ୍ଧ୍ୟାକୁ ଫେରିଆସୁ । ଯେଉଁଠାରେ ଚେକ୍ ଡ୍ୟାମ୍ ବା କେନାଲ୍ କାମ ହେଉଥାଏ ଆମେ ଲୋକଙ୍କ ସହ ପଥର ବୋହୁ ବା ମାଟି ତାଡୁ । ଆମ ତରଫରୁ ଶ୍ରମଦାନ ବାଧ୍ୟତାମୂଳକ ଥାଏ । ଆଦିବାସୀଙ୍କ ସହ ସମ୍ପର୍କ ସ୍ଥାପନ କରିବାର ଏହା ଏକ ରଣନୀତି ହୋଇଯାଇଥାଏ । ଜନସହଭାଗିତା କିପରି ସୁଦୃଢ଼ ହେବ ସେଥିପାଇଁ ଆମକୁ ସବୁବେଳେ ଚିନ୍ତା କରିବାକୁ ପଡେ । ବେଳେବେଳେ ଗାଁରେ ରାତ୍ରି ଯାପନ କରିବାକୁ ହୁଏ । କାହା ବାରଣ୍ଡାରେ ବା ଗାଁ ଗଡୁଘରେ ଶୀତଦିନେ ଶୋଇବା ବହୁତ କଷ୍ଟ ହୁଏ । କିନ୍ତୁ ଖରାଦିନେ ଗାଁ ଦାଣ୍ଡରେ ଖଟ ପକାଇ ଶୋଇଲେ ଆକାଶର ତାରାମାନଙ୍କୁ ଚିହ୍ନିହୁଏ । ଆମେ ଯେଉଁଦିନ ଗାଁରେ ରାତି କଟାଇବୁ, ସେଦିନ ଗାଁଟିର ଚଳଚଞ୍ଚଳତା ବଢ଼ିଯାଏ । କେହି ପୁରୁଷ ଲୋକ ମଦ ପିଇବେ ନାହିଁ । ସନ୍ଧ୍ୟାବେଳେ ସମସ୍ତେ ଏକାଠି ହୋଇ ଆମ କଥା ଶୁଣିବେ ଓ ତାଙ୍କୁ ସୁଖଦୁଃଖ କଥା କହିବେ । ବେଶ୍ ଭଲ ଲାଗେ । କିନ୍ତୁ ଗାଁମାନଙ୍କରେ ସବୁରାତି ଶୋଇ ହୁଏ ନାହିଁ । କାଶୀପୁରରେ ମ୍ୟାଲେରିଆ ଜ୍ୱର ନୂଆହୋଇ ପୁଣି ଦେଖାଦେଇ ଥାଏ । ସନ୍ଧ୍ୟାବେଳେ କାଶୀପୁର ବାଟଦେଇ ମୁଁ ଅଫିସକୁ ଫେରିଲା ବେଳେ ସବୁଦିନେ ଲକ୍ଷ୍ୟ କରେ ଦୁଇଜଣ ମଦ୍ୟପଙ୍କୁ । କେତେବେଳେ ଢ଼ଳି ଢ଼ଳି ରାସ୍ତାରେ ଅସଂଯତ ଅବସ୍ଥାରେ ଚାଲୁଥିବେ ଓ ନାନା କଥା ଉଚ୍ଚସ୍ୱରରେ ହେଉଥିବେ । କେତେବେଳେ ଚାଲି ନପାରି ରାସ୍ତା କଡରେ ପଡିଯାଉଥିବେ ନିଶା ଭୋଳରେ । ମୁଁ ତାଙ୍କୁ ଅନେକ ଦିନ ଦେଖିଥାଏ କାଠଭାରଟିଏ କାନ୍ଧରେ ପକାଇ କାଶୀପୁର ଦିଗରେ ଯିବାବେଳେ । ଜଣେ ଡେଙ୍ଗା ମଜ୍‌ଭୁତ । ଉଚ୍ଚତା ପ୍ରାୟ ଛଅଫୁଟ । ଆଉଜଣେ ବୟସ୍କ ଓ ମଧ୍ୟମ ଉଚ୍ଚତାର । ଖଣ୍ଡେ ଖଣ୍ଡେ ଛିଡା ହାପ୍‌ପ୍ୟାଣ୍ଟ ପିନ୍ଧି ଥାଆନ୍ତି । ଦେହ ଫୁଙ୍ଗୁଳା । ମୁଁ ସବୁବେଳେ ମଟରସାଇକଲ ଅଟକାଇ ସେମାନଙ୍କ ସହ ଦି'ପଦ କଥା ହୁଏ । ମଦୁଆ ଦୁହେଁ ତଥାପି କଥାବାର୍ତ୍ତା କରିବାକୁ ବିଶେଷ କଷ୍ଟ ହୁଏ ନାହିଁ । ଜଣକ ନାମ ଟଙ୍କ, ଅନ୍ୟ ଜଣକ ନାମ ସାଧବ । ଦୁହେଁ ପରଜାଶୀଳା ଗାଁର ଝୋଡିଆ ପରଜା । ସକାଳୁ କାଠ ଭାର ଧରି ଯାଆନ୍ତି କାଶୀପୁର । କାଶୀପୁରରେ ଦିନସାରା ଛୋଟ ବଡ଼ କାମ କରନ୍ତି ସେମାନେ । ସାଧବ ଏତେ ବଳଶାଳୀ ଥିଲା ଯେ, ଗୋଟାଏ କ୍ୱିଣ୍ଟାଲ୍ ଚାଉଳ ବସ୍ତାକୁ ଧଡ଼ଜରେ ପିଠିରେ ପକାଇ ସେ ଟ୍ରକ୍‌ରୁ ଗୋଦାମ ଘରକୁ ନେଇପାରୁଥିଲା । ତେଣୁ ତାକୁ ସମସ୍ତେ ଚାହୁଁଥିଲେ । ଟଙ୍କ ସାହୁକାରଙ୍କ ପାଇଁ କିଛି କିଛି କାମ କରିସାରି ଘରକୁ ଫେରୁଥିଲା । କାଶୀପୁର ମଦଭାଟିରେ ଟିକିଏ ପିଇଦେଇ ଫେରିବା ସ୍ୱାଭାବିକ ଥିଲା ଟଙ୍କ ଓ ସାଧବଙ୍କ

ପାଇଁ । ମୁଁ ଭେଟିଲା ମାତ୍ରକେ ପଚାରୁଥିଲି - ଆଜି କେତେ ପିଇଛ । ଉତ୍ତର ଆସୁଥିଲା-ଟିକେ ବାବୁ ପିଇଛୁ । ହେଇ ଦେଖ, ଚାଉଳ ବି କିଣିଛୁ । ମୁଁ ସେମାନଙ୍କୁ କିଛି କାମ ଦେଇ ପାରିବି ବୋଲି କହିବାରୁ ସେମାନେ ଆଗ୍ରହ ଦେଖାଇଥିଲେ । ମୁଁ କିନ୍ତୁ ମଦ ଛାଡିବାକୁ ସର୍ତ୍ତ ରଖିଥିଲି । ଟଙ୍କ ମୂଷାଗାତକୁ ଖୋଳି ମୂଷା ମାରିବାରେ ପାରଙ୍ଗମ ଥିଲା । ସେଥିପାଇଁ ମୁଁ ତାକୁ ଆମ ପନିପରିବା ବଗିଚାର ଦାୟିତ୍ୱ ନେବାକୁ କହିଥିଲି । ସାଧବ ନୀଳାମ୍ବରଙ୍କୁ ଦେଖି ଟ୍ରାକ୍ଟର ଡ୍ରାଇଭିଂ ଶିଖିବାକୁ ଆଗ୍ରହ ଦେଖାଇଥିଲା । କିଛିଦିନ ପରେ ଟ୍ୟୁବ୍ ଖୋଳିବା ପାଇଁ ରିଗ୍‌ମେସିନ୍ ଆସିବାର ଥିଲା । ଦୁଇଟି ଟ୍ରାକ୍ଟର ଦରକାର ହେବ ଏଥିପାଇଁ । ସାଧବ ପାଇଁ ଏହା ଉପଯୁକ୍ତ ନିଯୁକ୍ତି ଥିଲା । ସାଧବ ଟ୍ରାକ୍ଟର ଡ୍ରାଇଭିଂ କରୁଥିଲା ସତ, କିନ୍ତୁ ଦକ୍ଷ ଚାଳକ ନଥିଲା । ଥରେ ଦୁଇଥର ଦୁର୍ଘଟଣା ବି ଘଟାଇଥିଲା । ଶେଷରେ ତା'ର ପର୍ବ ପାଳିବାକୁ ଯାଇ ଅନ୍ୟ ଗାଁରେ ମାଣ୍ଡିଆ ମଦ ପିଇଥିଲା ଓ ଟ୍ରାକ୍ଟର ଦୁର୍ଘଟଣାରେ ମୃତ୍ୟୁବରଣ କରିଥିଲା । ଟଙ୍କ ପନିପରିବା ଚାଷ କରିବାରେ ଧୁରନ୍ଧର ହୋଇଥିଲା ଓ ଅଗ୍ରଗାମୀ ପ୍ରତି ତାହାର ସ୍ନେହ ଓ ଆନ୍ତରିକତା ଅତୁଳନୀୟ ଥିଲା । ତା'ର ପରିବାରକୁ ସେ ଖୁସିରେ ଚଳାଇ ପାରିଲା ।

ଟଙ୍କ ଓ ସାଧବଙ୍କୁ ନେଇ ମୁଁ ପ୍ରମାଣ କରିବାକୁ ଚାହୁଁଥିଲି ଯେ ଆଦିବାସୀମାନେ ମଦପିଇ ସର୍ବସ୍ୱାନ୍ତ ହୁଅନ୍ତି ନାହିଁ । ସୁଯୋଗ ଆସିଲେ ସେମାନେ ନିଜର ବିକାଶ ଓ ଭବିଷ୍ୟତ ପ୍ରତି ଖୁବ୍ ଯତ୍ନଶୀଳ ହୁଅନ୍ତି । ଆଦିବାସୀ ଅଞ୍ଚଳରେ ମଦ ଅସଲ ଶତ୍ରୁ ବୋଲି ବିବେଚନା କରି ଗାନ୍ଧୀବାଦୀମାନେ ଅନେକ ବର୍ଷଧରି ନିଶାନିବାରଣ ଆନ୍ଦୋଳନ ଜାରି ରଖିଛନ୍ତି । ମୁଁ ଭାବୁଛି ମଦ୍ୟପାନ ଆଦିବାସୀର ଏକ ସ୍ୱାଭାବିକ ଦୃଷ୍ଟିଭଙ୍ଗୀ । ପରବ ପାଳିବାକୁ ହେଲେ ବା ବିବାହ ଭୋଜି ହେଲେ ମଦ ଆବଶ୍ୟକ । ବିବାହ ବେଳେ ପୁଅଘର ଝିଅ ବାପାକୁ କେତେ ଟିଣ ମଦ ଦେବାକୁ ହେବ । ସେ ମଦ ମହୁଲି ମଦ । ଆଦିବାସୀ ନିଜ ପାଇଁ ମାଣ୍ଡିଆ ମଦ ବାଲନ୍ଦା ତିଆରି କରେ । କିନ୍ତୁ ବିବାହ ବା ପର୍ବ ସମୟରେ ସେ ମହୁଲି ମଦ ପିଇବାକୁ ବେଶୀ ପସନ୍ଦ କରେ । ମହୁଲି ମଦ ବିକ୍ରୟ ପାଇଁ କାଶୀପୁରର ବିଭିନ୍ନ ପଞ୍ଚାୟତରେ ବିହାରୀ ସାହୁକାର ଠିକା ନେଇଥାଏ । ଅବକାରୀ ବିଭାଗର ସହାୟତାରେ ମଦ ଦୋକାନରୁ ବେଶ୍ ମଦ ବିକ୍ରୟ ହେଉଥିଲା ଓ ଆଦିବାସୀମାନେ ସର୍ବସ୍ୱାନ୍ତ ହେଉଥିଲେ । କାଶୀପୁରର ଗୋଟାଏ ଅଞ୍ଚଳରେ କେବଳ ମହୁଲ ଗଛ ଦେଖିବାକୁ ମିଳେ । ଏଥିପାଇଁ ମହୁଲ କାଶୀପୁରକୁ ଆମଦାନି କରାଯାଏ କଣ୍ଟାବାଞ୍ଜି ଟିଟିଲାଗଡ଼ ଅଞ୍ଚଳରୁ । ଆଦିବାସୀ ମହୁଲ ରଖିପାରେ ନାହିଁ । ଅବକାରୀ ନୀତି ଅନୁସାରେ କିଛି ମହୁଲ ସେ ଘରେ ରଖିପାରିବ ଓ କିଛି ପରିମାଣର ମହୁଲି ମଦ ତିଆରି କରିପାରିବ । କିନ୍ତୁ ଏହା ସବୁବେଳେ ସମ୍ଭବ ହୁଏ ନାହିଁ । ମହୁଲି ମଦରେ ୟୁରିଆ ଆଦି ମିଶିଥାଏ ଓ ବିଷାକ୍ତ ହୋଇଯାଏ । କିନ୍ତୁ ଆଦିବାସୀ ତାହାକୁ ନିର୍ବିଚାରରେ ପଉଥାଏ । ନିଶାସକ୍ତ ହେଲେ ଆଦିବାସୀ ବିଚାର ଶୂନ୍ୟ ହୋଇଯାଏ । ଅନେକ ଦୁର୍ଘଟଣା ଓ ଅପରାଧ ମଧ୍ୟ ଘଟିଯାଏ । କେସ୍ ମଧ୍ୟ ପୁଲିସ୍ କରେ । ଆଦିବାସୀ ମଦ ପିଇ ପିଇ କେମିତି ସର୍ବସ୍ୱାନ୍ତ ହୋଇଯାଏ ବୋଲି ଅନେକ କାହାଣୀ ଆମକୁ ପ୍ରତି ଗାଁରେ ଶୁଣିବାକୁ ମିଳେ । ମୁଁ ଅବାକ ହୋଇଯାଏ ଯେ ଡବାଏ ମଦ ପାଇଁ ଆଦିବାସୀ କେତେ ଯେ ଜମି ସାହୁକାରକୁ ଦେଇ ଦେଇଛି ତାହାର ହିସାବ ନାହିଁ ।

ଅନ୍ୟ ପକ୍ଷରେ ଆଦିବାସୀ ମାଆମାନେ ଗୁଡାଖୁ ସେବନ କରନ୍ତି ସବୁବେଳେ । ଟିକିଏ ପରିଶ୍ରମ କରିଲା ପରେ ଟେଳାଏ ଗୁଡାଖୁ ଧରି ପାଟିରେ ଘଷୁ ଥାଆନ୍ତି । ଆମେ ହିସାବ କରି ଦେଖିଲୁ ଯେ ପ୍ରତି ମାସରେ ଦଶ ଟ୍ରକ୍ ଗୁଡାଖୁ କାଶୀପୁର ହାଟରେ ବିକ୍ରୟ ହୋଇଯାଏ । ଗୁଡାଖୁ ଟ୍ରକ ଟିଟିଲାଗଡ଼ରୁ ଆସେ । ଥରେ ଜଣେ ଆଦିବାସୀ ମହିଳା ଗୁଡାଖୁ ଘଷିବା ଆରମ୍ଭ କଲେ ମରିବା ପର୍ଯ୍ୟନ୍ତ ଛାଡ଼ିପାରେ ନାହିଁ । କିନ୍ତୁ ଗୁଡାଖୁ ଘଷିବାର ପଛରେ କ'ଣ କାରଣ ଅଛି ? ଆଦିବାସୀ ପୁରୁଷ ମଦ ପିଇ ଯଦି ସବୁକିଛି ଭୁଲିଯିବାକୁ ଚାହୁଁଥାଏ, ଆଦିବାସୀ ମହିଳା ପେଟର ଭୋକକୁ ସହିବା ପାଇଁ ସମ୍ଭବତଃ ଗୁଡାଖୁ ଘଷିଥାଏ । ଏପରିକି ଆଦିବାସୀ ମାଆ ପିଲା କାନ୍ଦିଲେ ମୁହଁରେ ଗୁଡାଖୁ ଟେଳାଏ ଦେବାର ଦୃଶ୍ୟ ମୁଁ କେତେଥର ଦେଖିଛି ।

ମଦ ଓ ଗୁଡାଖୁ ଆଦିବାସୀର ପ୍ରଥମ ଶତ୍ରୁ ବୋଲି ଆମେ ସବୁ ଗାଁରେ ଗାଁରେ ମିଟିଂ କରିଲୁ । ଯେଉଁ ଗାଁରେ ଆମର ରାତ୍ରିସ୍କୁଲ ଚାଲିଥାଏ ଅଥବା ଜଳସେଚନ ପ୍ରକଳ୍ପ ଆରମ୍ଭ ହୋଇଥାଏ, ତେବେ ସେ ଗାଁରେ ମଦ ଦୋକାନ ରହିପାରିବ ନାହିଁ ବୋଲି ସ୍ପଷ୍ଟ କହିଥାଉ । ଆମେ କେବଳ ପର୍ବପର୍ବାଣିରେ ମଦ ପିଇବାର ପରମ୍ପରାକୁ ସମ୍ମାନ ଦେଇଥାଉ । ଗାଁମାନଙ୍କରୁ ବିଭିନ୍ନ ପ୍ରକାରର ସଫେଇ ମିଳିଥାଏ । କେହି କେହି କହନ୍ତି ଯେ, ସେମାନଙ୍କର ଗାଁରୁ ମଦଭାଟି ଉଠାଇ ଦିଆଯାଇଛି । କିନ୍ତୁ କିଏ ଚାହିଁଲେ ଅନ୍ୟ ଗାଁକୁ ଯାଇ ମଦ ପିଇବାରେ ମନା ନାହିଁ । ଗୋଟିଏ ଗୋଟିଏ ଗାଁରେ ସ୍ଥିର ହୋଇଥାଏ ଯେ, ଜଣେ ଦୁଇଜଣ ଗାଁରେ ମଦ ପିଇବାକୁ ଅନୁମତି ପାଇବେ । କୁଣିଆଁ ଆସିଲେ ସେମାନଙ୍କ ଅଭ୍ୟର୍ଥନା ପାଇଁ ମଦ ଦେବାକୁ ହେବ । ଗାଁରୁ ଜଣେ ଦି'ଜଣ ସାଥୀରେ ନରହିଲେ ଅପମାନ ହେବ । କିନ୍ତୁ ଯେଉଁମାନେ ଭୀଷଣ ମଦ୍ୟପ ସେମାନଙ୍କୁ ମଦ ଛାଡିବାକୁ ହେଲେ ରାୟଗଡ଼ାସ୍ଥିତ ବିଖ୍ୟାତ ମାଝୀଗରିଆଣୀ ମନ୍ଦିରକୁ ଯାଇ ଶପଥ କରିବାକୁ ହେବ । ରାୟଗଡ଼ା ଯିବା ଓ ମଦ ନଖାଇବାକୁ ଶପଥ ନେବାକୁ ହେଲେ ବହୁତ ଖର୍ଚ୍ଚାନ୍ତ ହେବାକୁ ପଡେ । ଆମେ ଲକ୍ଷ୍ୟ କରିଛୁ ଯେ ଯେଉଁ ଗାଁରେ ଟିକିଏ ପାଠଶାଠ ପହଞ୍ଚିଛି, ସେଠାରେ ମଦ୍ୟପଙ୍କ ସଂଖ୍ୟା କମ୍ ।

ଯେଉଁ ଗାଁରେ ମହିଳା ସଂଗଠନ ସକ୍ରିୟ, ସେଠାରେ ମଦ ବିରୋଧି ଆନ୍ଦୋଳନ ସଶକ୍ତ । ଏଇଥିପାଇଁ ଆମେ ମଦ ବିରୋଧରେ ଆନ୍ଦୋଳନ ତେଜୀୟାନ କରିବାକୁ ପ୍ରୟାସ କରିଥିଲୁ । ଆମର କଣ୍ଢେଇ ନାଚ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଜରିଆରେ ମଦ୍ୟପାନର ଅପକାରିତା ବିଷୟରେ ଅନେକ ଚେତନାମୂଳକ ଶିକ୍ଷା ଗାଁ ଗାଁରେ ଦିଆଯାଇଥିଲା । ମହିଳାମଣ୍ଡଳ ଗଢ଼ି ସଚେତନତା ବୃଦ୍ଧି ପାଇଁ ମଧ୍ୟ ପଦକ୍ଷେପ ନିଆଯାଇଥିଲା । ସାମୟିକ ଭାବେ ମଦ ବ୍ୟବସାୟ କାଶୀପୁରରେ ପ୍ରଭାବିତ ହୋଇଥିଲା ବୋଲି ଶୁଣିବାକୁ ମିଳିଥିଲା । ଅବକାରୀ ବିଭାଗ ଏଥିରେ କିନ୍ତୁ ଖୁସି ନଥିଲେ । ଆଦିବାସୀ ଅଞ୍ଚଳରେ ମଦ ବେପାର ଖୁବ୍ ଅର୍ଥକାରୀ ଥିଲା । ରାଜନୈତିକ ନେତାମାନେ ଭୋଟ୍ ସମୟରେ ପ୍ରତି ଗାଁକୁ କେତେ ଟିଣ ମଦ ଦେଇ ଭୋଟ୍ କିଣୁଥିଲେ । ରାଜନୈତିକ ଦଳମାନେ ଏଥିପାଇଁ ପ୍ରତିଯୋଗିତା କରୁଥିଲେ । ମଦ ଦେଇ ଆଦିବାସୀ ଠାରୁ

ଅନେକ କିଛି ଲାଭ ମିଳୁଥିଲା । ମଦ ବ୍ୟବସାୟ କେମିତି ଚାଲୁ ରହିବ ଆମ ଅଜାଣତରେ ଚକ୍ରାନ୍ତ ହୋଇଥିଲା । ଗାଁରେ ମିଟିଂ ହେଲେ ଜଣେ ଦି'ଜଣ ଠିଆ ହୋଇ କହୁଥିଲେ- ଆଜ୍ଞା ତୁ ମଦ ବନ୍ଦ କରିବା କଥା କହନାହିଁ । ତୋର ସବୁକଥା ମାନିବା ସହଜ, କିନ୍ତୁ ମଦ ଛାଡି ପାରିବୁ ନାହିଁ । ମୁଁ ବେଳେବେଳେ ହାରି ଯାଉଥିଲି ଓ ଯୁକ୍ତିରେ ପରାସ୍ତ ହେଉଥିଲି । ମଦ ପିଇବା ଆଦିବାସୀଙ୍କ ଏକ ସାଂସ୍କୃତିକ ପରମ୍ପରା । ମୁଁ କିଏ ବନ୍ଦ କରିବାକୁ ? ଦେଶୀମଦ ବନ୍ଦ କରିବାକୁ ଚେଷ୍ଟା କରୁଥିଲା ବେଳେ ବିଦେଶୀ ମଦର ଲୁଚଛପା କାରବାର କାଶୀପୁରରେ ଆରମ୍ଭ ହୋଇଯାଇଥିଲା । କିନ୍ତୁ କାଶୀପୁରରେ ମଦର ବନ୍ୟାକୁ ଅଟକାଇବା ପାଇଁ ଆଦିବାସୀ ମାଆମାନେ ଅଣ୍ଟା ଭିଡିବାକୁ ଆରମ୍ଭ କରିଥିଲେ । ଆମେ ସମସ୍ତେ ସାମୟିକ ଭାବେ ଆଶାର କିରଣ ଦେଖିଥିଲୁ ।

□□□

# ୨୯

ମାଳାମ୍ବ ଗାଁରେ ଆମର ଦୁଇଜଣ ଗୁରୁ ଭାଇଥିଲେ । ଅତି ଆଗ୍ରହର ସହ ଖଗ ଝୋଡିଆ ଓ ତ୍ରିନାଥ ଝୋଡିଆ ଆମ ସହିତ ଯୋଗ ଦେଲେ, ଟ୍ରେନିଂ ନେବାକୁ । ଗାଁରେ ଟ୍ରେନିଂ ସ୍କୁଲ ଚଳାଇବେ ଓ ଆଖପାଖ ଗାଁର ବିକାଶ କାର୍ଯ୍ୟକ୍ରମ ମଧ୍ୟ ଆରମ୍ଭ କରିବେ । ଆମ ଟ୍ରେନିଂ କାର୍ଯ୍ୟକ୍ରମରେ ଯୋଗଦେବା ପୂର୍ବରୁ ଦୁହେଁ ପାଲା ଗାୟକ ଥିଲେ । ମାଳାମ୍ବଗାଁଟି ଘାଟି ଉପରେ ଏବଂ ଆମ ଅଫିସ ଠାରୁ ବହୁ ଦୂରରେ । ସେଗାଁକୁ ଯିବାକୁ ହେଲେ ଡଙ୍ଗାସିଲ୍‌ରେ ରାତ୍ରି ଯାପନ କରିବାକୁ ହେବ । ସକାଳୁ ଉଠି ଚାଲିବାକୁ ହେବ । ରେଙ୍ଗଣାସିଲ ଗାଁ ଅତିକ୍ରମ କରିଲା ପରେ ଅଣଙ୍ଗାର ଗାଁ ପଡିବ । ସେଠାରୁ ଦୁର୍ଗମ ଘାଟି ଚଢ଼ିବା ଆରମ୍ଭ ହେବ । ବହୁତ କଷ୍ଟ ଲାଗେ ଏ ଘାଟି ଚଢ଼ିବାକୁ ଓ ଗାଁରେ ପହଞ୍ଚିଲା ବେଳକୁ ଆମେ ସମସ୍ତେ ଥକିଯାଉ । ମାଳାମ୍ବ କୁଚେଇପଦର ପଞ୍ଚାୟତର ସୀମାବର୍ତ୍ତୀ ଗାଁ । ଦଶମନ୍ତପୁରର ଡୁମାଗୁଡା ହାଟ ସେମାନଙ୍କର ଅତି ପାଖରେ । ଯିବାଆସିବା ସେ ଆଡକୁ ବେଶି । ଦରକାର ପଡିଲେ କାଶୀପୁର ଆସିବାକୁ ହୁଏ । ନଚେତ୍ କାଶୀପୁର ସହ ପ୍ରାୟ ସମ୍ପର୍କ ନାହିଁ । ସେଠାରେ ପି.ଡି.ଏସ୍ ଚାଉଳ ପହଞ୍ଚେ ନାହିଁ । ଶିକ୍ଷକଙ୍କୁ କେହି ଦେଖିନାହାନ୍ତି । ଏ.ଏନ୍.ଏମ୍ ଦିଦି ସେ ଗାଁକୁ ଯାଏ ନାହିଁ । କେୟାର ଖାଦ୍ୟ ପହଞ୍ଚେ କି ନାହିଁ ଦେଖିବାକୁ କେହି ନାହିଁ । ମାଳାମ୍ବ ଓ ଜବାପଦର ଆଦି ଗାଁମାନେ କାଶୀପୁର ପଞ୍ଚାୟତ ସମିତିରେ ଅଛି ବୋଲି ମନେହୁଏ ନାହିଁ । ଖଗ ଓ ତ୍ରିନାଥ ବାରମ୍ବାର ଅନୁରୋଧ କରୁଥିଲେ ତାଙ୍କର ଗାଁ ପରିଦର୍ଶନରେ ଆସିବା ପାଇଁ । ଗାଁ ଲୋକଙ୍କ ବହୁତ ଆଗ୍ରହ । ମୁଁ ଅନୁରୋଧ ଏଡାଇ ପାରିନଥିଲି । ରାଇସିଂ ଆଦି ଆଉ ଜଣେ ଦୁଇଜଣ ଗୁରୁଭାଇଙ୍କୁ ଧରି ମୁଁ ମାଳାମ୍ବ ଗାଁ ଅଭିମୁଖେ ଏକ ଶୀତସକାଳରେ ଯାତ୍ରା ଆରମ୍ଭ କରିଥିଲି । ଗାଁରେ ପହଞ୍ଚିଲା ବେଳକୁ ଅପରାହ୍ଣ ହୋଇ ଯାଇଥିଲା । ଗାଁ ଲୋକେ ସେମାନଙ୍କର ସ୍ନେହ ଢାଳିଦେଲେ ମୋ ଉପରେ । ସେମାନେ ଗତ ଶହେ ବର୍ଷର ନିରବତାର ଇତିହାସରେ ଭାଗନେବାକୁ ଚାହୁଁଥିଲେ ଯେମିତି । ମାଳାମ୍ବ ଘାଟି ଚଢ଼ିଲାବେଳକୁ ମୁଁ ଲକ୍ଷ୍ୟ କରୁଥିଲି ଯେ ଜଙ୍ଗଲ ପୂରା କଟାହୋଇଛି ଯାଇଛି । ଏକଥା ସତଯେ ଜଙ୍ଗଲ ଦିନେ ସେଠାରେ ସମସ୍ତ ସାଜସଜ୍ଜା ସହ ବିରାଜମାନ କରୁଥିଲା । ଝୋଡିଆ ପରଜାମାନେ ଜଙ୍ଗଲ ଥିବା ଜାଗାରେ ହିଁ ବସବାସ କରନ୍ତି । ପୋଡୁ ଚାଷ ତାଙ୍କର ମୁଖ୍ୟ ଜୀବିକା । ଦଶମନ୍ତପୁର ଆଡୁ ଆସିବା ସହଜ ହୋଇଥିବା ହେତୁ ଜଙ୍ଗଲ କାଟିବା କାଠଚୋରଙ୍କ ପାଇଁ ସହଜ ହୋଇଥିବ ନିଶ୍ଚିତ । ଗାଁ ଲୋକମାନେ ବିଶେଷକରି ବୟସ୍କମାନେ ସେମାନଙ୍କର ଜଙ୍ଗଲ କଥା ମନେ ପକାଇଲେ ଓ ତାଙ୍କ ସମୟର ଫସଲ ପାଚି କେମିତି ଏବେକାର ଅମଳଠାରୁ ଭିନ୍ନ ଥିଲା ବର୍ଣ୍ଣନା କରୁଥିଲେ ।

ଗାଁର ଲୋକମାନେ ଚାହିଁଥିଲେ ଯେ ମୁଁ କେମିତି ମାଳାମ୍ବଗାଁରେ ଜଳସେଚନର ବ୍ୟବସ୍ଥା କରେ । ଗାଁରେ ଜମି ପ୍ରାୟ ସମସ୍ତଙ୍କର ଅଳ୍ପ ଅଳ୍ପ ଅଛି । କିନ୍ତୁ ବର୍ଷା ଖୁବ୍ ଅନିୟମିତ । ତେଣୁ ଖୁବ୍ ଫସଲ ହାନି ହେଉଛି । ଥରେ ଫସଲ ନଷ୍ଟ ହେଲେ, ସେମାନଙ୍କୁ ଅନାହାରରେ ରହିବାକୁ ପଡୁଛି । କାଶୀପୁରରୁ କୌଣସି ସାହାଯ୍ୟ ପହଞ୍ଚୁନାହିଁ । ଆମେ ବିଭିନ୍ନ ଗାଁରେ ମୁଣ୍ଡା (ଚେକ୍‌ଡ୍ୟାମ୍) ଓ ବାଟିଆ (କେନାଲ) କରିବା କଥା ଗ୍ରାମବାସୀ ଶୁଣିଛନ୍ତି ଓ ଆଶା କରିଛନ୍ତି ଯେ ଆମେ ତାଙ୍କ ଗାଁରେ ଏଇଭଳି କିଛି ଯୋଜନା ହାତକୁ ନେବୁ । ଅପରାହ୍ନରେ ଟିକିଏ ଥକ୍‌କା ମାରିବା ପରେ ଗାଁର ସମସ୍ତ ଲୋକେ ମୋତେ ବିଭିନ୍ନ ସ୍ଥାନକୁ ଦେଖାଇବାକୁ ନେଲେ ଯେଉଁଠାରେ ମୁଣ୍ଡା ଓ ବାଟିଆ ତିଆରି କରିବାର ସମ୍ଭାବନା ଅଛି । ମୁଁ ମଧ୍ୟ ଆଗ୍ରହର ସହ ନିଜର କଷ୍ଟ ଓ ଯନ୍ତ୍ରଣାକୁ ଭୁଲିଯାଇ ସେ ସବୁ ସ୍ଥାନକୁ ଦେଖିଲି । ଗାଁର ଅବସ୍ଥିତି ବେଶ୍ ଉଚ୍ଚରେ । ଝରଣା ପାଣି ଖୁବ୍ ତଳେ । ସେଠାରେ ଚେକ୍‌ଡ୍ୟାମ୍ କରିବା ସହଜ ନୁହେଁ । କୌଣସି ମତେ ଗାଁକୁ ପାଣି ଆସିପାରିବ ନାହିଁ । କେବଳ ଗୋଟିଏ ଛୋଟ ସ୍ରୋତ ପାଖ ପାହାଡରୁ ବହୁଛି । ତାହା ପୁଣି ଖରାଦିନେ ଶୁଖି ଯାଉଛି । ସେଠାରେ ବହୁତ ଆମ୍ବ ଗଛ ମଧ୍ୟ ଭରିରହିଛି । ଆମ୍ବ ଗଛ କାଟି ଚେକ୍‌ଡ୍ୟାମ୍ କରିବା ସପକ୍ଷରେ ମୁଁ ନଥିଲି । କିନ୍ତୁ ଗ୍ରାମବାସୀ ବାଧ୍ୟ କରିଲେ ଆମକୁ । ମୁଁ କହିଲି ଜଣେ ଇଞ୍ଜିନିୟର ପଠାଇ ପ୍ରଥମେ ସର୍ଭେ କରିବା ସେଠାରେ ଚେକ୍‌ଡ୍ୟାମ୍ କରି ହେବକି ନାହିଁ ଓ କେତେ ଖର୍ଚ୍ଚ ହେବ । କାରଣ ବାଲି, ସିମେଣ୍ଟ, ଲୁହାରଡ ସବୁ ମୁଣ୍ଡରେ ଲଦି ଡଙ୍ଗାସିଲ୍ ଠାରୁ ବୋହିବାକୁ ପଡିବ । ସନ୍ଧ୍ୟାରେ ସେଦିନ ରାତ୍ରି ସ୍କୁଲରେ ମୁଁ ପ୍ରାୟ ୭୦ପିଲା ପାଠପଢୁଥିବା ଲକ୍ଷ୍ୟ କରିଲି । ଖଗ ଓ ତ୍ରିନାଥ ମଧ୍ୟ ପିଲାଙ୍କୁ ପାଠ ପଢ଼ିବା ପାଇଁ ଆଗ୍ରହୀ କରାଇଥାଆନ୍ତି । ଲଣ୍ଠନ ଆଲୁଅରେ ଏତେ ପିଲା ପାଠ ପଢ଼ିବା ମୁଁ କେବେ ଦେଖିନଥିଲି । ଅବାକ୍ ଲାଗିଲା ମୋତେ । ରାତ୍ରି ସ୍କୁଲର ଉପାଦେୟତା ବିଷୟରେ ଯଦି କାହାର କେବେ ସନ୍ଦେହ ଥାଏ, ତେବେ ମାଳାମ୍ବଗାଁର ସ୍କୁଲ ଦେଖିବା କଥା । ଯେଉଁଠି ସରକାରୀ ସ୍କୁଲ ଚାଲେନାହିଁ, ଯେଉଁଠି ଆଦିବାସୀ ପିଲା ଦିନସାରା ବିଭିନ୍ନ କାମରେ ପରିବାରକୁ ସାହାଯ୍ୟ କରିଥାଏ, ସେଠାରେ ରାତ୍ରି ସ୍କୁଲ ଛଡା ଆଉ କ'ଣ ବିକଳ୍ପ ଅଛି ? ଯିଏ ଯେତେ ସମାଲୋଚନା କରୁ ପଛକେ, ଆମେ ରାତ୍ରିସ୍କୁଲମାନଙ୍କୁ ଆହୁରି ବିଶେଷ ଧ୍ୟାନ ଦେବାକୁ ମୁଁ ପ୍ରେରଣା ପାଇଥିଲି ମାଳାମ୍ବ ଗାଁରେ । ଖଗ ଓ ତ୍ରିନାଥ ଖୁବ୍ ଗୀତ ଗାଇ ପାରୁଥିଲେ । ପାଲା ଗାୟକ ହେବାର ଯୋଗ୍ୟତା ତାଙ୍କର ଥିଲା । ଏଣୁ ପିଲାମାନଙ୍କୁ ଖୁବ୍ ଗୀତ ଶିଖା ଯାଉଥିଲା । ରାତିର ଅନେକ ସମୟ ପର୍ଯ୍ୟନ୍ତ ଗୀତ ନାଚ ଚାଲିଲା । ଗାଁ ଭିତରେ ଅନେକ ଆଶା ଓ ଉନ୍ମାଦନାର ଲହରୀ । ମୋତେ ମଧ୍ୟ ନିଦ ହେଲା ନାହିଁ ଯଦିଓ ଦିନସାରା ଚାଲି ଚାଲି ମୁଁ ଥକି ଯାଇଥିଲି ।

ଆଦିବାସୀ ଗାଁମାନଙ୍କରେ ବିକାଶର ଅସଲ ମର୍ମ କ'ଣ ? ଆମେ ଟ୍ରେନିଂ ଦେଉଛୁ ଚେତନା ବଢ଼ିବା ପାଇଁ । ଶିକ୍ଷାର ପ୍ରସାର ପାଇଁ ରାତ୍ରି ସ୍କୁଲ ଖୋଲୁଛୁ । କୃଷି ଉତ୍ପାଦନ ବଢ଼ିବା ପାଇଁ ଜଳସେଚନ ଯୋଜନା କରୁଛୁ । ସବୁ କିଛି ଠିକ ଅଛି ତ ? ଏହା ବାସ୍ତବ ରଣନୀତି କି ନାହିଁ ମୁଁ ଜାଣିବାକୁ ଆଗ୍ରହୀ ଥିଲି । କାଶୀପୁର ଆସିବାର ପାଞ୍ଚବର୍ଷ ପରେ ଆମକୁ ଅପସାରଣ କରିବାକୁ ହେବ ଆମର ମୂଳଯୋଜନା ଅନୁସାରେ । ଆମର କାର୍ଯ୍ୟକ୍ରମ ସଫଳ ହେଲାକି ବିଫଳ ହେଲା, ଆଦିବାସୀଙ୍କ ଭିତରେ ବିକାଶ ପାଇଁ ଏକ ରାସ୍ତା ଉନ୍ମୋଚିତ ହେଲା କି ନାହିଁ ସବୁ ପ୍ରଶ୍ନବାଚକରେ ରହିଗଲା । ମୋର ବାରମ୍ବାର ମନେ ପଡୁଥିଲା ଯେ,

ଆମକୁ କାଶୀପୁରରେ ପାଞ୍ଚବର୍ଷରୁ ଅଧିକ ସମୟ ରହିବା ଯୁକ୍ତିଯୁକ୍ତ ନୁହେଁ ବୋଲି ଆମେ ସବୁଆଡେ କହିସାରିଛୁ । ଯେଉଁମାନେ ବର୍ଷବର୍ଷ ଧରି ଆଦିବାସୀ ଅଞ୍ଚଳରେ କର୍ମରତ ଅଛନ୍ତି, ସେମାନଙ୍କୁ ଉପହାସ କରିବାକୁ ଇଚ୍ଛା ହୁଏ । କିନ୍ତୁ ଆମେ ପାଞ୍ଚ ବର୍ଷଭିତରେ କରିଲୁ କ'ଣ ? କିଛି କିଛି କାମ ନିଶ୍ଚିତ ଆରମ୍ଭ ହୋଇଛି ସତ କିନ୍ତୁ ଏହାର ସ୍ଥାୟିତ୍ କ'ଣ ? କିଛି ଗାଁରେ କୂଟୁମ୍ବ ପାଣ୍ଠି ଗାଁ ଲୋକ ଆରମ୍ଭ କରିଛନ୍ତି । କିଛି ଗାଁରେ ରାତ୍ରି ସ୍କୁଲ ଆରମ୍ଭ ହୋଇଛି ଓ କିଛି ଗାଁରେ ଜଳସେଚନ କାର୍ଯ୍ୟକ୍ରମ ଚାଲିଛି । ଏହାଛଡ଼ା ଅନ୍ୟ କିଛି ସାମାଜିକ, ଆର୍ଥିକ ଓ ରାଜନୈତିକ ପ୍ରଶ୍ନ ଆମେ ଆଦିବାସୀଙ୍କ ସମ୍ମୁଖରେ ଉପସ୍ଥାପିତ କରିଛୁ । ଶୋଷଣ ଓ ଦାରିଦ୍ର୍ୟର ମୂଳମଞ୍ଜି ଖୋଜିବାକୁ ଆମେ ଏକ ସୁଯୋଗ ସୃଷ୍ଟି କରିଛୁ । କିନ୍ତୁ ପ୍ରକ୍ରିୟା କେବଳ ଆରମ୍ଭ ହୋଇଛି ମାତ୍ର ।

ମାଳାମ୍ବଗାଁରେ ସେଦିନ ରାତ୍ରି ସାରା ମୁଁ ଉଜାଗର ରହି ଏ ବିଷୟ ଭାବୁଥିଲି । ଯଦି ପାଞ୍ଚବର୍ଷ ପୂର୍ବେ ମାଳାମ ଗାଁରେ ଆମେ କାର୍ଯ୍ୟକ୍ରମ ଆରମ୍ଭ କରିଥାଆନ୍ତୁ ଏବେ କିଛି ନା କିଛି ଫଳ ମିଳିଥାଆନ୍ତି । ଏବେ ତ କେବଳ ଆରମ୍ଭ ହୋଇଛି ମାତ୍ର । ମୁଁ ଭାବୁଥିଲି ଯେ ମୋର ସହକର୍ମୀ, ଅନ୍ୟାନ୍ୟ ଶୁଭଚିନ୍ତକମାନେ ଏବଂ ଆମକୁ ଅନୁଦାନ ଦେଉଥିବା ସଂସ୍ଥାମାନେ ନିଶ୍ଚୟ ଠିକ୍ ପରାମର୍ଶ ଦେବେ । ଆମେ ପାଞ୍ଚବର୍ଷ ପରେ କାଶୀପୁରରେ କାର୍ଯ୍ୟକ୍ରମ ଚାଲୁ ରଖିବୁ କି ନାହିଁ ସଠିକ୍ ବାଟ ବତାଇବେ ।

ଦେଖୁ ଦେଖୁ ପାଞ୍ଚବର୍ଷ ବିତିଗଲା କାଶୀପୁରରେ । କେତେ ଘଟଣା, ଦୁର୍ଘଟଣା ଘଟିଗଲା ଏ ଭିତରେ । ସାହୁକାର ଗୋଷ୍ଠୀଙ୍କୁ ଚିହ୍ନିହେଲା । ସରକାରୀ କାର୍ଯ୍ୟକ୍ରମ ଗୁଡିକର ଯଥାର୍ଥତା ବୁଝି ହେଲା । ଆମ ମାନଙ୍କର ସଫଳତା ଓ ଦୁର୍ବଳତାର ଏକ ତାଲିକା ମଧ୍ୟ କରିହେଲା । ଆମର ବନ୍ଧୁ କିଏ ଓ ଶତ୍ରୁ କିଏ ତାହା ବି ଜାଣି ହେଲା । ଆମେ ପ୍ରୟୋଗ କରିଥିବା ରଣନୀତିକୁ ଆଉଥରେ ବିଶ୍ଳେଷଣ କରିବାକୁ ସୁଯୋଗ ମିଳିଲା । ମୋର ମୁଣ୍ଡ ଫାଟିଲା । ଆମକୁ ବଦ୍‌ନାମ କରିବା ପାଇଁ ଏକ ଗୋଷ୍ଠୀ ସମ୍ବାଦପତ୍ରମାନଙ୍କୁ ବ୍ୟବହାର କଲେ । କୋର୍ଟ କଚେରି ପର୍ଯ୍ୟନ୍ତ କଥାଗଲା । 'ଦାରିଦ୍ର୍ୟ ଦୂରୀକରଣ' ପ୍ରକ୍ରିୟାରେ ସରକାରଙ୍କ ସହ ହାତ ମିଳାଇଲୁ ଆମେ । କେତେକ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଆକ୍ରମଣର ଶରବ୍ୟ ହେଲୁ । କୌଣସି ଗୋଟିଏ ଦିନ ଏପରି କଟିନାହିଁ ଯେଉଁଦିନ କିଛି ଘଟଣା ଘଟି ନାହିଁ । ସେ ସବୁ ଲେଖିହେଲା ନାହିଁ । କେବେ କେମିତି ସ୍ମୃତିର ଗଭୀରତା ଭିତରେ ସେ ସବୁ ଉଙ୍କି ମାରିଲେ । ସାରାପୃଥିବୀରେ ଗରିବମାନଙ୍କ ପଛରେ ଛିଡା ହେବା ଏକ ନୈତିକ ଧର୍ମ ବୋଲି ଯାହା କୁହାଯାଇଛି, ତାହା କେବଳ ଆଗକୁ ଯିବାକୁ ପ୍ରେରଣା ଦେଲା । ପାଞ୍ଚବର୍ଷର ଅନୁଭୂତିକୁ ପୁଞ୍ଜିକରି ପୁଣି ଆଗକୁ ଯେ ଯାଇ ହେବ ସେ କଥା ଆମ ସମସ୍ତଙ୍କୁ ପ୍ରଭାବିତ କରିଲା । ଗୋଟାଏ ଦୃଷ୍ଟିରୁ ମାଳାମ୍ବ ଯିବାଟା ସାର୍ଥକ ହେଲା । ନଯାଇଥିଲେ ବୋଧହୁଏ, ଆମର କାଶୀପୁରର ସମସ୍ତ କାର୍ଯ୍ୟକ୍ରମ ଅନ୍ୟ କିଛି ରୂପ ନେଇ ଥାଆନ୍ତା । ଆମର ଜୀବନର ଗତିପଥ ଭିନ୍ନ ହୋଇଥାଆନ୍ତା ନିଶ୍ଚିତ ।



# ୩୦

ପୌଷ ମାସର ଦିନରେ ଉଜ୍ଜ୍ୱଳ ସୂର୍ଯ୍ୟ କିରଣର ଉଷ୍ଣତା ଯେତିକି ଭଲ ଲାଗେ, ରାତ୍ରିର ଜ୍ୟୋତ୍ସ୍ନାସ୍ନାତ ପ୍ରବଳ ଶୀତ ସେତିକି ଉତ୍ତାପ ଆଣିଦିଏ ମାନସିକ ସ୍ତରରେ । ପୁଷପରବ ଆଉ ବେଶୀ ଦିନ ନାହିଁ । 'ଟୋକୀ ମରା' ପର୍ବ ପାଖେଇ ଆସୁଚି । ଘରିଆଡେ ଗୀତ ନାଚର ଆସର । ରାତିର ଉତ୍ତାପ ଶୂନ ଡିଗ୍ରୀ ପାଖାପାଖି ପହଞ୍ଚଯାଏ । ବେଳେବେଳେ ବରଫ ପଡିବା ଭଳି ଶିଶିର ବିନ୍ଦୁମାନ ଦେଖାଯାଏ । ଶୀତ ଦିନେ ଫସଲ ଅମଳ ଚାଲିଥାଏ । କାହା ପେଟରେ ଭୋକ ନଥାଏ । ସେଇଥି ପାଇଁ ହାଡଭଙ୍ଗା ଶୀତ ସହି ହୁଏ ସହଜରେ । ମୁଁ କିନ୍ତୁ ଏ ସମୟରେ ସବୁଠାରୁ ଦୁର୍ଗମ ପର୍ବତ ପାହାଡ଼ ଚଢ଼ିବାକୁ ଚାହିଁଥାଏ । ଭୋର ସକାଳୁ କୁକୁଡା ଡାକରୁ ଉଠି ପଡିବାକୁ ହୁଏ ଲମ୍ୱା ବାଟ ଚାଲିବାକୁ ଥିଲେ । କାଶୀପୁରର ଉଚ୍ଚତା ପ୍ରାୟ ତିନି ହଜାର ଫୁଟ । ସେଥିରେ ଥିବା ଉଚ୍ଚ ପର୍ବତମାନ ଆଉ ହଜାରେ ଦେଢ଼ ହଜାର ଫୁଟ ଅଧିକ ଉଚ୍ଚତାରେ ଅବସ୍ଥିତ ଥାଏ । ଟୋପୋ ମାନଚିତ୍ରରେ ପ୍ରତ୍ୟେକ ପର୍ବତର ଉଚ୍ଚତା ଉଲ୍ଲେଖ କରାଯାଇଥାଏ । ପ୍ରତି ପର୍ବତ ବା ମାଳି ଉପରକୁ ଚଢ଼ିବା ମୋ ପାଇଁ ଏକ ଆହ୍ୱାନ ହୋଇ ପଡେ । ମଣିଷମାନଙ୍କ ସହ ବନ୍ଧୁତା ବାନ୍ଧିବାକୁ ହେଲେ ବଣ ଜଙ୍ଗଲ, ନଦୀନାଳ, ପାହାଡ ପର୍ବତ, ପାଣି ପବନକୁ ମଧ୍ୟ ଭଲ ପାଇବାକୁ ହୁଏ । ବନ୍ଧୁତା ଓ ଭଲ ପାଇବା କିନ୍ତୁ କ'ଣ ? ଏହା ମନ ଓ ଆବେଗର ସାମଗ୍ରୀ ? ଏହା ବୌଦ୍ଧିକତା ଓ ଜୈବିକତାର ଊର୍ଦ୍ଧ୍ୱରେ ? ମୋର ଅତୀତ କଥା ମନେ । ହାଇସ୍କୁଲରେ ପଡିବା ବେଳେ ପ୍ରଫୁଲ୍ଲ, ସୁଧାକର, ଲକ୍ଷ୍ମୀନିବାସ ମୋର ବନ୍ଧୁତା ଓ ଭଲ ପାଇବାର ସଂଜ୍ଞା ନିରୂପଣ କରୁଥିଲେ । ସାହାଯ୍ୟ କରୁଥିଲେ ମୋର ସମ୍ମାନୀୟ ଶିକ୍ଷକ ଶ୍ରୀ ସତ୍ୟବ୍ରତ ମହାନ୍ତି ଯିଏ ଏକାଧାରରେ ଲେଖକ, କବି ଓ ରୋମାଣ୍ଟିକ ମଣିଷ ଥିଲେ ।

ରେଭେନ୍‌ସା କଲେଜରେ ବନ୍ଧୁତା ଓ ଭଲ ପାଇବାର ପରିସରଭୁକ୍ତ ହୋଇଥିଲେ ଅରବିନ୍ଦ, ଲଳିତ, ଆଶୁତୋଷ, ଗୋପବନ୍ଧୁ, ପ୍ରଦୀପ, ଭଞ୍ଜ, ଦୁର୍ଗା, ଅଶୋକ ଆଦି ଅନେକ । କେତେଜଣ ମୋର ରୁମ୍‌ମେଟ୍ ଥିଲେ । କେତେଜଣ ସମଭାବାପନ୍ନ ଥିଲେ । ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କ ବହି ଓ ଭାଷଣ, ପ୍ରଫେସର ମୂର୍ତ୍ତିଙ୍କ ସାରଗର୍ଭକ ଭାଷଣ ଆମର ବନ୍ଧୁତା ଓ ଭଲ ପାଇବାକୁ ଖୁବ୍ ଊର୍ଦ୍ଧ୍ୱମୁଖୀ କରିଥିଲା । ଏହାଛଡା ଆମେ ସମସ୍ତେ ଖୋଜୁଥିଲୁ ଏସବୁର ରହସ୍ୟ ଉନ୍ମୋଚିତ କରିବାର ଚମତ୍କାର ରାସ୍ତା । ମୁଁ ପ୍ରଭାବିତ ହୋଇଥିଲି ଦସ୍ତୋଭସ୍କିଙ୍କ ଚରିତ୍ରମାନଙ୍କ ଦ୍ୱାରା । ଆମେ ଆପଣା ରାସ୍ତାରେ ନିଜକୁ ପରିବର୍ତ୍ତିତ କରୁଥିଲୁ ଆଲ୍ୟୋଶା କାରାମାଜୋଭ୍ ବା ଆଇଭାନ୍ କାରାମାଜୋଭ୍ ରୂପେ । ଭଲ ପାଇବା ଓ ବନ୍ଧୁତାରେ କିଛି ପ୍ରଶ୍ନବାଚକ ଚିହ୍ନ ରହିବ ନାହିଁ ଆମେ ଯୁକ୍ତି କରୁଥିଲୁ । ନିଃସର୍ତ୍ତ ଭଲ ପାଇବା କେତେ

ଦୂର ସମ୍ଭବ ? ନଚେତ୍ ଭଲପାଇବାରେ ସବୁ ବୌଦ୍ଧିକତାର ପ୍ରଶ୍ନ ରହିବା ଉଚିତ ବୋଲି ଅକାଟ୍ୟ ଯୁକ୍ତି ଦେଇଥିଲା ଆଇଭାନ୍ କାରାମାଜୋଭ୍ । ଆମ ସମସ୍ତଙ୍କର ଚରିତ୍ର ଖଣ୍ଡିତ ହୋଇ ଯାଉଥିଲା ଆଲେଓ୍ୟାଶା କାରାମାଜୋଭ୍ ଏବଂ ଆଇଭାନ୍ କାରାମାଜୋଭ୍ଙ୍କ ଅସ୍ତିତ୍ୱ ଭିତରେ । ଆମେ ମଧ୍ୟ ଖୋଜୁଥିଲୁ ସୋନ୍ୟାମାନଙ୍କୁ । ସୋନ୍ୟା ହେଉଛି ଦସ୍ତୋଭସ୍କିଙ୍କ ଦ୍ୱାରା ସୃଷ୍ଟ ଓ 'କ୍ରାଇମ୍ ଆଣ୍ଡ ପନିସ୍‌ମେଣ୍ଟ' (Crime and Punishment)ରେ ଭୟାନକ ଚରିତ୍ର ରାସ୍କଲ୍‌ନିକୋଭ (Rasklonikov)ଙ୍କୁ ସାନ୍ତ୍ୱନା ଦେଇଥିବା ଝିଅଟିଏ । ଆମେ ମଧ୍ୟ ବିଭିନ୍ନ ଦେଶର ଚଳଚ୍ଚିତ୍ର ଉତ୍ସବ ଦେଖିବାକୁ ଭଲ ପାଉଥିଲୁ । ଏକ ସ୍ମରଣୀୟ ଚଳଚ୍ଚିତ୍ର ଥିଲା ଚେକସ୍ଲୋଭାକିଆରୁ । ନାମ ଥିଲା ଦି କପର୍ ଟାଓ୍ୱାର (The Copper Tower) । ଯିଏ ଭଲ ପାଇବା ଓ ବନ୍ଧୁତାର ଗଭୀରତା ବୁଝିବାକୁ ଚାହିଁବ, ମୁଁ ଏ ଫିଲ୍ମଟି ଦେଖିବାକୁ ସୁପାରିସ୍ କରିବି । ଆମେ ସମସ୍ତେ ବନ୍ଧୁମାନେ ଜୀବନ ଓ ଯୌବନର ଉଦ୍ଦାମତାରେ ଆନ୍ଦୋଳିତ ହୋଇଥିଲୁ । ଆମେ ସେମାନଙ୍କ ପାଇଁ ଏହା ଗୋଟାଏ 'ଟର୍ଣ୍ଣିଂ ପଏଣ୍ଟ' (Turning Point) ଥିଲା । ତେଣୁ କାଶୀପୁରର ପର୍ବତ ଚଢ଼ିଲାବେଳେ ଏସବୁ ଭାବନା ମୋ ମନକୁ ସ୍ୱତଃ ଆସିଯାଏ । 'ଶିଳାତୀର୍ଥ'ରେ ଚିତ୍ତଭାଇ ଲେଖିଛନ୍ତି ଯେ, ହିମାଳୟକୁ ଭଲ ପାଇବାକୁ ହେବ ତାହାର ବିଶାଳତା ଓ ମହାନତାକୁ ନେଇ । ଆଦିବାସୀ ଏଠାକାର ପାହାଡ ପର୍ବତକୁ ନେଇ ବଞ୍ଚି ରହିଛି । ଏହାବି ତାହାର ମରିବାର କାରଣ ହୋଇଯାଏ । ପାହାଡମାନେ ତାହାର ପିଲାଦିନର ଖେଳଘର ଓ ମୃତ୍ୟୁପରର ଶ୍ମଶାନ । ପୌଷମାସର ଶୀତ ସକାଳରେ ପାହାଡଗୁଡିକୁ ଚଢ଼ିଲାବେଳେ ଶ୍ୱାସ ପ୍ରଶ୍ୱାସ ବଢ଼ିଯାଏ । ଦେହ ସାରା ଝାଳରେ ବୁଡିଯାଏ । ଇଚ୍ଛାହୁଏ ଫେରିଯିବାକୁ । କିନ୍ତୁ ପାହାଡ ସେପାଖର ଗାଁ ଗୁଡିକୁ ଦେଖିବାକୁ ହେବ ଓ ସେଠାରେ ରହୁଥିବା ମଣିଷମାନଙ୍କ ସହ ସମ୍ବନ୍ଧ ରଖିବାକୁ ହେବ । ମୁଁ ଚାହିଁଥାଏ ଯେ ବନ୍ଧୁତା ଓ ଭଲ ପାଇବାର ପରିସର ସବୁଦିନେ ବଢ଼ିବାରେ ଲାଗିଥାଉ ।

କାଶୀପୁରରେ ମୁଁ ପହଞ୍ଚିବା ପୂର୍ବରୁ ରାଜସ୍ଥାନର ତିଲୋନିଆରେ କାର୍ଯ୍ୟରତ ଥିବାବେଳେ ଅରୁଣା ରାୟଙ୍କ ସହ ଏକ ସାମୂହିକ କର୍ମଚିନ୍ତନରେ ମୁଁ ସାମିଲ୍ ହୋଇଥିଲି । ଆମେ ଯେତେପ୍ରକାର ଶବ୍ଦ ବିକାଶକ୍ଷେତ୍ରରେ ବ୍ୟବହାର କରୁ ତାହାର ଅସଲ ସଂଜ୍ଞା କ'ଣ ? ସମାଜ କ'ଣ ? ପରିବର୍ତ୍ତନ କ'ଣ ? ସାମାଜିକ ଓ ଆର୍ଥିକ ଢାଞ୍ଚା କ'ଣ ? ବିକାଶକ୍ଷେତ୍ରରେ ବ୍ୟବହୃତ ଶବ୍ଦମାନଙ୍କର ସଂଖ୍ୟା ପ୍ରତିଦିନ ବଢୁଥାଏ । ଅସଲକ୍ଷେତ୍ରରେ ଏ ଶବ୍ଦଗୁଡିକୁ କେହି ନବୁଝି ଆମେ ସବୁ ବ୍ୟବହାର କରିବାରେ ଲାଗିଥାଉ । ସେ ସମୟରେ ବନ୍ଧୁତା ଓ ଭଲ ପାଇବାର ସଂଜ୍ଞା ମଧ୍ୟ ଆମେ ନିରୂପଣ କରିବାକୁ ଚେଷ୍ଟା କରିଥିଲୁ । ଜନ୍ ବର୍ଜର (John Berger) ବୋଲି ଜଣେ ବାମପନ୍ଥୀ ସମାଲୋଚକଙ୍କ ଗୋଟିଏ ବହି ଆମକୁ ପ୍ରଭାବିତ କରିଥିଲା ଯାହର ନାମ ଥିଲା 'The Art of Seeing' । କୌଣସି ବିଷୟବସ୍ତୁ ବୁଝିବା ପ୍ରକ୍ରିୟାଟି ନିର୍ଦ୍ଦିଷ୍ଟ ମଣିଷ ଉପରେ ନିର୍ଭର କରେ । କାଶୀପୁରରେ ଆମଭଳି ଜଟିଳ ମଣିଷଙ୍କର ବୌଦ୍ଧିକତାର କିଛି ଆବଶ୍ୟକତା ଅଛି କି ନାହିଁ, ସେକଥା ହୃଦୟଙ୍ଗମ କରିବାକୁ କେତେବର୍ଷ ଲାଗିଗଲା । ଆଦିବାସୀ ମଣିଷଟି ଦସ୍ତୋଭସ୍କି ପଢି ନାହିଁ ବା 'ଦି ବ୍ରଦରର୍ସ୍ କାରାମାଜୋଭ' (The Brothers

Karamazov)ଙ୍କ ଚରିତ୍ରଗୁଡ଼ିକର ଜଟିଳତା ଭିତରକୁ ପଶିନାହିଁ । ବଞ୍ଚିବାର ଅର୍ଥ ହେଉଛି ତା'ପାଇଁ ବନ୍ଧୁତା ଓ ଭଲ ପାଇବାକୁ ଆପଣାର କରିବା । ତା'ର ପରିବାର, ତାହାର ଦେବଦେବୀ, ତାହାର ଡଙ୍ଗରପାହାଡ, ତାହାର କ୍ଷେତବାଡି ସବୁ ତା'ର ଆପଣାର । ତା'ଭିତରେ ସେ ହଜି ଯିବାକୁ ଚାହେଁ । 'ଅମୃତର ସନ୍ତାନ' ସିଏ, ଯାହାର କଥା ଗୋପୀନାଥ ମହାନ୍ତି ଜୀବନ୍ତ ଭାବେ ବର୍ଣ୍ଣନା କରିଛନ୍ତି । କାଶୀପୁରରେ ପହଞ୍ଚିଲା ବେଳକୁ ମୋ ପାଖରେ କେବଳ ପାଓଲୋ ଫ୍ରେୟରେ(Paulo Freier) ଙ୍କ ଗୋଟିଏ ଦୁଇଟି ବହି ଛଡା ଅନ୍ୟ କିଛି ନଥିଲା । କଲେଜ ଜୀବନରେ ମୋ ଭଳି ବହି କିଣି ପଢ଼ିବା ଓ ଅନ୍ୟବନ୍ଧୁମାନଙ୍କୁ ପଢିବାକୁ ସୁଯୋଗ ଦେବା ବହୁତ କମ୍ ମଣିଷ ଥିବେ । ବଞ୍ଚିବାର ଥିଓରୀ ଓ ପ୍ରାକ୍‌ଟିସ୍‌କୁ ନେଇ ମୁଁ ଏକଦା କେତେକ ଜ୍ୟାମିତିକ ସତ୍ୟ ଭଳି ଯୁକ୍ତି ବାଢୁଥିଲି । 'ଅସ୍ତିତ୍ୱବାଦୀ'ଙ୍କ ଭଳି ମୁଁ ଏକ ଉଦ୍‌ଭଟ ମଣିଷ ହେବାକୁ ଚାହିଁଥିଲି । ଆଦିବାସୀ ଅଞ୍ଚଳରେ ଏଭଳି ଅସ୍ତିତ୍ୱବାଦୀ ଚିନ୍ତା ଦ୍ୱାରା ପରିଚାଳିତ ହେବାକୁ ମୁଁ ଚାହିଁନଥିଲି । ମୋର ଆଜି ମନେ ପଡୁଛି, ଏକ ବିସ୍ମରଣୀୟ ସକାଳରେ ମୋର ଯାହା ନିଜସ୍ୱ ବହିଥିଲା, ତାହା ବନ୍ଧୁମାନଙ୍କ ଭିତରେ ବାଣ୍ଟି ଦେଇଥିଲି । 'ଡନ୍‌କୁଇ୍ସ୍ତି' (Don Quixote)ଙ୍କ ଚରିତ୍ରଙ୍କ ଭଳି ମୁଁ ଅନୁଭବ କରିଥିଲି ଯେ ବହିପଢ଼ି ଜଣେ ଯୁଦ୍ଧର ନାୟକ ହୋଇ ପାରିବ ନାହିଁ । ପୁସ୍ତକକୀଟ ହୋଇ ଜଣେ ନିଜ ଜୀବନ ନୌକାକୁ ନେଇ ବିଭିନ୍ନ ଝଡ ଝଞ୍ଜା ଦେଇ ଅତିକ୍ରମ କରିପାରିବ ନାହିଁ । କାଶୀପୁରରେ ଜଣେ ପୁସ୍ତକକୀଟ ହୋଇ ଦିନଟିଏ ବଞ୍ଚି ପାରିବ ନାହିଁ । ବାହାରର ପୃଥିବୀରେ ଏତେ କଥା ଘଟିଯାଉଛି, ଅଥଚ ଆଦିବାସୀ ସେ ସବୁର ଜଟିଳତାରୁ ମୁକ୍ତ ଏବଂ ଆସକ୍ତିରୁ ମଧ୍ୟ । ଏଠାରେ ଡଙ୍ଗର ପାହାଡ ସହ ମିଶାଇ ଦେବାର ଅଛି ।

ଚିତ୍ତଭାଇ ବାରମ୍ବାର ତାଗିଦ୍ କରୁଥିଲେ ଯେ ଯଦି ଆଦିବାସୀ ଗୁରୁ ଭାଇମାନେ ଆଗକୁ ଯିବାକୁ ଚାହାଁନ୍ତି, ତେବେ ସେମାନଙ୍କୁ ପଢ଼ିବାକୁ ହେବ । ଆମର କର୍ମୀ ଭାଇମାନେ ଯଦି ସ୍ୱଚ୍ଛତା ଚାହାଁନ୍ତି, ତେବେ ସେମାନଙ୍କୁ ବିଭିନ୍ନ ବିଷୟରେ ଅଧ୍ୟୟନ କରିବାକୁ ହେବ । ବିକାଶର ଅନେକ ଦିଗ ଅଛି । ଅନେକ ଗବେଷଣା ଚାଲିଛି । ସ୍ୱାଧୀନୋତ୍ତର ଭାରତର ସଫଳତା ଓ ବିଫଳତାକୁ ଜାଣିବାକୁ ହେବ ଆମକୁ । ଚୀନ ଦେଶରେ ବିପ୍ଳବ ପରେ ଗ୍ରାମୀଣ ବିକାଶକୁ ପ୍ରାଥମିକତା ଦିଆଯାଇଛି । ତୃତୀୟ ବିଶ୍ୱରେ ବିକାଶର ଇତିହାସ ଜଣେ ଯଦି ନଜାଣିବ, ତେବେ ସେ ନିଜର କର୍ମଚିନ୍ତନକୁ ଦୃଢ଼ କରିବାକୁ ସକ୍ଷମ ହେବ ନାହିଁ । କାଶୀପୁରକୁ କିଛି କିଛି ମାଗଣା ବହି ଓ ପତ୍ର ପତ୍ରିକା ଆସୁଥିଲା । ମୁଁ ନିଷ୍ପତ୍ତି ନେଲି ଯେ ଏଠାରେ ଆମର ଲାଇବ୍ରେରୀଟିଏ ଆରମ୍ଭ ହେବ । ବହିସବୁ ସଂଗ୍ରହ କରିବା ଆରମ୍ଭ ହେଲା । ବିଭିନ୍ନ ପତ୍ରପତ୍ରିକା ପାଇଁ ବାର୍ଷିକ ଚାନ୍ଦା ପଠାଗଲା । ଛୋଟ କୋଠରିଟିଏ ପୁସ୍ତକାଳୟ ହିସାବରେ ନାମିତ ହେଲା । ରୋଷେଇ ଘରକୁ ଲାଗି ଏହାଥିଲା । ତେଣୁ ଧୂଆଁ ସବୁବେଳେ ଆସୁଥିଲା । ବିଦ୍ୟା ଓ ମୁଁ ମଧ୍ୟ ବହି କିଛି କିଛି କିଣିବାକୁ ଆରମ୍ଭ କରିଲୁ । ଦିଲ୍ଲୀ ବା ମାଡ୍ରାସ ଗଲେ ବହିଦୋକାନରେ ଘଣ୍ଟା ଘଣ୍ଟା ସମୟ କାଟିବାକୁ ପଡୁଥିଲା । ଆମର ଲଗେଜ୍‌ରେ ବହୁଗୁଡ଼ିକ ବେଶି ଓଜନଦାର୍ ହେଉଥିଲେ । ଇ.ପି.ଡବ୍ଲୁ, ସେମିନାର ଆଦିରେ ଯେଉଁ ବହି ସବୁ ଆଲୋଚିତ ହେଉଥିଲା

ତାକୁ ଆମେ କିଣୁଥିଲୁ । 'ହିଭସ୍'ର ଜଣେ ବନ୍ଧୁ ଗୋଟାଏ ଅନୁଦାନ ଦେଲେ ଯେ ବାହାରୁ ବିଦେଶରୁ ଆମେ ବହି ମଗାଇ ପାରିବୁ । ପୁସ୍ତକାଳୟ ଆମର ସମୃଦ୍ଧ ହେବାରେ ଲାଗିଲା ।

ପୌଷ ମାସର ଶୀତରେ ଖରା ପୁଇଁଲା ବେଳେ ବା ରାତ୍ରିରେ ଘୋଡିଘାଡି ହୋଇ ଲଣ୍ଠନ ଆଲୁଅରେ ଜାଗ୍ରତ ରହିବାକୁ ଚେଷ୍ଟା କରିଲାବେଳେ ବହି ପଢ଼ିବାକୁ ମୁଁ ସମୟ ପାଉଥିଲି । କାଶୀପୁରରେ ଦୁଇ ତିନିବର୍ଷ କିଛି ନପଢିଥିବା ଜନିତ ଗ୍ଲାନି କ୍ରମଶ ଦୂର ହୋଇଗଲା । ମୁଁ ସ୍ପଷ୍ଟ ଦେଖିପାରୁଥିଲି ଯେ ଆମର ସବୁଠାରୁ ଦାମୀ ସମ୍ପତ୍ତି ହିସାବରେ ଲାଇବ୍ରେରୀଟି ଗଢ଼ି ଉଠୁଛି । ତାକୁ ବିଧିବଦ୍ଧ ଭାବେ ପରିଚାଳନା କରିବାକୁ ଆହ୍ୱାନ ଆସୁଛି । କାଶୀପୁରକୁ ଆସୁଥିବା ଅତିଥିମାନେ ଆମର ଲାଇବ୍ରେରୀ ଦେଖିଲେ ବହିନେବାକୁ ହାତ ବଢାନ୍ତି । ମୁଁ ମଧ୍ୟ ଜଣେ ଆଗ୍ରହୀ ପାଠକକୁ ବହି ଦେଇଦିଏ । କିନ୍ତୁ ସେ ବହି ଆଉ ଫେରାନ୍ତି ନାହିଁ । ଏଇଭଳି ଅନେକ ଦାମିକା ଓ ମିଳୁନଥିବା ବହି ଆମେ ହରାଇ ସାରିଛୁ । ଏକଥା ଭାବିଲେ ବହୁତ ଦୁଃଖ ଲାଗେ । ବନ୍ଧୁତା ଓ ଭଲ ପାଇବା ସହ ବହି ପଢିବାର ସମ୍ପର୍କ ତିକ୍ତ ହୋଇଯାଏ ।



## ୩୧

ଲୋକା ମାଝୀ ପଣ୍ଡକାପଦର ଗାଁର ସବୁଠାରୁ ମାନ୍ୟଗଣ୍ୟ ବ୍ୟକ୍ତି ଥିଲେ । କିଛି ଜମି ଥିଲା ତାଙ୍କର । ପ୍ରଚଣ୍ଡ ପରିଶ୍ରମ କରି ସେ ଫସଲ କରୁଥିଲେ । ତାଙ୍କର ଭଉଣୀଙ୍କୁ କୁଚେଇପଦର ଗାଁରେ ପ୍ରତିଷ୍ଠିତ ପରିବାରର ଶ୍ରୀ ଅନନ୍ତରାମ ମାଝୀଙ୍କ ସହ ବିବାହ କରାଇଥିଲେ । ଶ୍ରୀ ଅନନ୍ତରାମ ମାଝୀ ଆଦିବାସୀମାନଙ୍କର ନେତା ହିସାବରେ ନିର୍ବାଚନ ଲଢ଼ିଥିଲେ ଓ ସରପଞ୍ଚରୁ ଧୀରେ ଧୀରେ ଏମ୍.ଏଲ୍.ଏ. ହେଲେ । କିନ୍ତୁ ଲୋକା ମାଝୀ ଅନନ୍ତରାମ ବାବୁଙ୍କ କଠୋର ସମାଲୋଚକ ଥିଲେ । ଆଦିବାସୀ ହୋଇ ମଧ୍ୟ ଏମ୍.ଏଲ୍.ଏ. ହେବାପରେ ଅନନ୍ତରାମ ବାବୁ ଅଣଆଦିବାସୀ ଭଳି ବ୍ୟବହାର କରୁଥିବାରୁ ଲୋକା ମାଝୀ ତାଙ୍କ ସହ ପ୍ରାୟ ସମ୍ପର୍କ ରଖୁନଥିଲେ । ପଣ୍ଡକାପଦର ଗାଁ ଡ଼ଙ୍ଗାସିଲ ପଞ୍ଚାୟତରେ ଅବସ୍ଥିତ ଏକ ଆଦିବାସୀ ଗାଁ । ଗାଁର ପଛପଟେ ବିଶାଳକାୟ ପର୍ବତ । ସୀମାରେ ଡ଼ଙ୍ଗାସିଲ ନଦୀ ବା ବଡ଼ନଦୀ ବର୍ଷସାରା ବୋହୁଛି । ବର୍ଷରୁ ପ୍ରାୟ ଛମାସ ବାହାର ଦୁନିଆରୁ ବିଚ୍ଛିନ୍ନ ହୋଇପଡ଼େ । ଗାଁକୁ ପହଞ୍ଚିବାକୁ ହେଲେ ଗାଇମୁଣ୍ଡତୁଣ୍ଡା ଆଡୁ ଘାଟି ଚଢ଼ି ଆସିବାକୁ ହୁଏ । ଡ଼ଙ୍ଗାସିଲ ହାଟରେ ଲୋକା ମାଝୀଙ୍କ ସହ ପରିଚୟ ଓ ବନ୍ଧୁତା । ସେ ତାଙ୍କ ଗାଁକୁ ନିମନ୍ତ୍ରଣ କରିଥିଲେ ଓ ମୁଁ ଗାଇମୁଣ୍ଡତୁଣ୍ଡା ଗାଁରୁ ସେଠାରେ ପହଞ୍ଚିଥିଲି । ଗାଁର ପ୍ରତ୍ୟେକ ପରିବାର ନିଜର ବାଡ଼ି ବଗିଚା କାମରେ ବ୍ୟସ୍ତ । ବର୍ଷା ପାଣିରେ ଯାହା ଚାଷ । ତା'ପରେ ସବୁ ଶୁଖିଲା ଓ ଫାଙ୍କା ।

ଗାଁରେ ମିଟିଂ ହେଲା । କେଉଁଠାରେ ମୁଣ୍ଡା ବା ଚେକ୍‌ଡ୍ୟାମ କରିଲେ ଗାଁକୁ ପାଣି ଆସିବ ଲୋକା ମାଝୀଙ୍କୁ ଜଣାଥିଲା । ଗୁଲୁମୀଝୋଲା ଗାଁ ତଳେ ନାଳ ବାହାରିଛି । ହରିଜନ ବସ୍ତି ହିସାବରେ ସେ ଗାଁର ଖ୍ୟାତି ଯଶ ଠିକ୍ ନାହିଁ । ଗୁଲୁମୀଝୋଲା ଗାଁରେ ମଦଭାଟି ମଧ୍ୟ ଖୋଲିଛି ଓ ସଂଧ୍ୟାରେ ବେଶ୍ ଭିଡ଼ ହେଉଛି । ମୁଁ ସେଦିନ ଲୋକା ମାଝୀଙ୍କଠାରୁ ଗାଁର ଇତିହାସ ଜାଣିବାକୁ ଚାହିଁଥିଲି ଓ ଗତ ପଚାଶ ବର୍ଷର ଦୁଃଖ ଦୁର୍ଦ୍ଦଶାକୁ ବୁଝିବାକୁ ଚାହିଁଥିଲି । ଗାଁରେ ସନ୍ଧ୍ୟାରେ ମିଟିଂ ହେଲା ଏବଂ ଚେକ୍‌ଡ୍ୟାମ୍ ଓ କେନାଲ ଖୋଳିବା ବିଷୟରେ ନିଷ୍ପତ୍ତି ନିଆଗଲା । ଗାଁ ଲୋକେ କହୁଥିଲେ ଯେ ଜଳସେଚନ ବ୍ୟବସ୍ଥା କରିବାକୁ ଦରଖାସ୍ତ ଦେଇ ଦେଇ ସେମାନେ ଥକି ଗଲେଣି । ହାତରେ ପୁଞ୍ଜି ନାହିଁ ଯେ ସେମାନେ ପମ୍ପ କିଣି ନଦୀରୁ ପାଣି ଉଠାଇବେ । ଏମ୍.ଏଲ୍.ଏ. ବନ୍ଧୁହୋଇ ମଧ୍ୟ ତାଙ୍କ ଗାଁର ସମସ୍ୟା ଦୂରକରି ପାରୁନାହିଁ ।

ଆମେ ଯେକୌଣସି ଗାଁରେ କାମ କରିବା ପୂର୍ବରୁ ଦୁଇଟି ନିଷ୍ପତ୍ତି ନେଇଥିଲୁ । ଗୋଟିଏ ହେଲା ରାତ୍ରିସ୍କୁଲ, ଅନ୍ୟଟି ହେଲା କୁଟୁମ୍ବ ପାଣ୍ଠି ବା ଶସ୍ୟ ପାଣ୍ଠି । ପଣ୍ଡକାପଦର ଗ୍ରାମବାସୀଙ୍କୁ ଲୋକା ମାଝୀ ବୁଝାଇଥିଲେ ଯେ ଗାଁରେ ଯଦି ମୁଣ୍ଡା ଓ କେନାଲ୍ ଲୋକେ ଚାହୁଁଛନ୍ତି ତେବେ ରାତ୍ରି ସ୍କୁଲ ଏବଂ କୁଟୁମ୍ବ ପାଣ୍ଠି ଆରମ୍ଭ କରିବାକୁ ହେବ । ଗାଁ ଲୋକମାନେ ପାଖ ଗାଁ

ରେଙ୍ଗଣାସିଲ୍‌ରେ ରାତ୍ରି ସ୍କୁଲ ଓ କୁଟୁମ୍ବ ପାଣ୍ଠି ଯାଇ ଦେଖିଆସିଲେ । ଆମର ଗୁରୁ ଭାଇ ରାଇ ସିଂ ମାଝୀ କନ୍ଧ ଭାଷାରେ ବି ସବୁ କଥା ବୁଝାଇଦେଲେ । ଅଗ୍ରଗାମୀର ପ୍ରତ୍ୟେକ କାର୍ଯ୍ୟକ୍ରମ, ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଗ୍ରାମବାସୀ ଜାଣିବା ନିତାନ୍ତ ଦରକାର । କାଶୀପୁରର ଆଦିବାସୀ ଓ ଦଳିତମାନଙ୍କ ଭିତରେ ଯେଉଁମାନେ ମୁରବି ଭଳି ଅଛନ୍ତି ସେମାନଙ୍କ ସହ ସମ୍ପର୍କ ରଖିବା ଆମ ପାଇଁ ଜରୁରୀ ହୋଇ ପଡିଥିଲା । ଆମକୁ ସାହୁକାର ଗୋଷ୍ଠୀ ତୀବ୍ର ବିରୋଧ କରୁଥିଲେ । ସ୍ଥାନୀୟ ସରକାରୀ କର୍ମଚାରୀମାନେ ଆମ ଉପରେ କ୍ଷୁବ୍ଧ ହୋଇଥିଲେ । ରାଜନୈତିକ ନେତାମାନେ ଆମର ଦୋଷ ଦୁର୍ବଳତା ଖୋଜୁ ଥିଲେ । ଅବିଭକ୍ତ କୋରାପୁଟର ଏମ୍.ଏଲ୍.ଏ ଓ ମନ୍ତ୍ରୀମାନଙ୍କ ପାଖରେ ସ୍ଥାନୀୟ ନେତାମାନେ କୁଆଡେ ଅନେକ ଅଭିଯୋଗ ଆଣୁଥିଲେ । ବିଧାନ ସଭାରେ ପ୍ରଶ୍ନ ଉଠିବାଯାଏ କଥାଗଲା । କୋରାପୁଟର ଜିଲ୍ଲାପାଳ ଡି.ଆର.ଡି.ଏରୁ ଆମକୁ କିଛି ସାହାଯ୍ୟ ଦେବାକୁ ଚାହିଁଥିଲେ ସାମାଜିକ ବନୀକରଣ ପାଇଁ । ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ସାହାଯ୍ୟ କରିବା ପାଇଁ ସରକାର ତତ୍‌ପର ଅଛନ୍ତି । ସେଥିପାଇଁ ଆବଶ୍ୟକୀୟ ନିୟମାବଳୀ ପ୍ରସ୍ତୁତ ହୋଇସାରିଛି । ଜିଲ୍ଲାପାଳ ସେଇଥିପାଇଁ ଆମକୁ ସଂପୃକ୍ତ କରିଛନ୍ତି । ବିଧାନସଭାରେ ପ୍ରଶ୍ନ ଉଠିଲେ କ'ଣ ହେଲା ? ସରକାର ଏହାର ଜବାବ ଦେବେ ନିଶ୍ଚିତ । କିନ୍ତୁ କାଶୀପୁରର ଶକ୍ତିଶାଳୀ ରାଜନୈତିକ ଗୋଷ୍ଠୀଙ୍କର ମୁକାବିଲା କରିବାକୁ ଆମକୁ ପାରମ୍ପରିକ ଆଦିବାସୀ ନେତୃତ୍ୱର ସାହାଯ୍ୟ ନେବାକୁ ପଡିବ ବୋଲି ମୁଁ ଅନୁଭବ କରିଥିଲି । ସେଇଥିପାଇଁ ଶ୍ରୀ ଲୋକା ମାଝୀଙ୍କ ସହ ଯୋଗାଯୋଗ ରହିବା ନିତାନ୍ତ ଜରୁରୀ ହୋଇ ପଡିଥିଲା । କାଶୀପୁରରେ ଆଦିବାସୀ ଓ ଦଳିତମାନଙ୍କର ସ୍ୱତନ୍ତ୍ର ନେତୃତ୍ୱ ରହିଛି । ପ୍ରତ୍ୟେକ ନତୃତ୍ୱ ପଛରେ ଗୋଟାଏ ବୁନିଆଦି ଅଛି, ଇତିହାସ ଅଛି, ମୋର ବେଳେବେଳେ ଇଛା ହୁଏ ସେମାନଙ୍କ ପାଖରେ ବସି ଅନେକ କିଛି ଇତିହାସ ଶୁଣିବା ପାଇଁ । ସମୟ ଓ ସୁଯୋଗ ମିଳେ ନାହିଁ ସବୁବେଳେ ।

ଶ୍ରୀ ଲୋକା ମାଝୀ କହୁଥିଲେ ଯେ ପ୍ରତ୍ୟେକ ଗାଁରେ ଜଳସେଚନର ସୁବିଧା ହେଲେ ଆଦିବାସୀମାନେ ବର୍ଷରେ ଦୁଇଥର ଫସଲ କରିବେ ଓ ଭୋକରେ ରହିବେ ନାହିଁ କି ସାହୁକାରର ଦ୍ୱାର ମାଡିବେ ନାହିଁ । ଗାଁରେ ଅସଲ ବିକାଶର ବିଭିନ୍ନ ଦିଗ ଶ୍ରୀ ଲୋକା ମାଝୀ କହୁଥିଲେ । ଡଙ୍ଗାସିଲ୍‌ରେ ପନିପରିବାର ଚାଷ ବ୍ୟାପକ କରିବାକୁ ସେ ପରାମର୍ଶ ଦେଉଥିଲେ । ତାଙ୍କଠାରୁ ଯେଉଁ ପ୍ରେରଣା ମିଳିଲା ତାହା ଆମକୁ କାଶୀପୁର ପନିପରିବା ଉତ୍ପାଦନକାରୀଙ୍କ ପାଇଁ ସମବାୟ ସମିତିଟିଏ ଗଢ଼ା ହେଲା । ଅଳସୀର ବିକାକିଣା ପାଇଁ ଗୋଦାମଘର ତିଆରି ହେଲା । ଆଞ୍ଚଳିକ ବିକାଶ ପାଇଁ ପରାମର୍ଶଦାତାଙ୍କ ଏକ କମିଟି ତିଆରି କରାଗଲା । ଯୁବକମାନଙ୍କୁ ଉତ୍ସାହିତ କରିବା ପାଇଁ ଯୁବକସଂଘ ଗଢ଼ିବାକୁ ଓ ମହିଳାମାନଙ୍କୁ ବିକାଶ ପ୍ରକ୍ରିୟାରେ ସାମିଲ୍ କରିବା ପାଇଁ ମହିଳା ମଣ୍ଡଳ ଗଢ଼ା ହେଲା । ଅସଲରେ ଡଙ୍ଗାସିଲ୍ ଉପକେନ୍ଦ୍ର ବା ଫିଲ୍‌ଡ ସେଣ୍ଟର ଆମର ସବୁ ପରୀକ୍ଷାର ମୂଳକେନ୍ଦ୍ର ଥିଲା । ଏବଂ ଶ୍ରୀ ଲୋକା ମାଝୀ ସ୍ଥାନୀୟ ନେତୃତ୍ୱର ଝଲକ ଥିଲେ ଆମ ପାଇଁ ।

ପଣ୍ଡକୋପଦର ଗାଁରେ ଚେକ୍‌ଡ୍ୟାମ୍ ଓ କେନାଲ ତିଆରି କରିବାକୁ ଆମେ ଯେତେବେଳେ ନିଷ୍ପତ୍ତି ନେଲୁ, ସେତେବେଳେ ଆମ ପାଖରେ କିଛି ସମ୍ବଳ ନଥିଲା ।

ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଭିତରେ ଏକ ରାଜନୀତି ସବୁବେଳେ ଥାଏ, ଗୋଷ୍ଠୀବିବାଦ ଲାଗି ରହିଥାଏ । ଜଣେ ଯଦି ଗୋଟିଏ ଗୋଷ୍ଠୀରେ ରହିଲା ଅନ୍ୟ ଗୋଷ୍ଠୀର ସବୁ ଆକ୍ରୋଶର ମୁକାବିଲା କରିବାକୁ ପଡେ । ଏଇଭଳି ଏକ ଦୁଃଖଦ ପରିସ୍ଥିତିର ମୁକାବିଲା ଆମକୁ କରିବାକୁ ପଡିଥିଲା । ଓଡ଼ିଶାର ଗୋଟିଏ ପ୍ରତିଷ୍ଠିତ ସ୍ୱେଚ୍ଛାସେବୀ ସଂସ୍ଥା ଆମର ଦୃଢ଼ ଉପସ୍ଥିତିକୁ ବରଦାସ୍ତ କରି ପାରିନଥିଲେ । ଅନୁଦାନକାରୀ ସଂସ୍ଥାମାନଙ୍କୁ ପ୍ରଭାବିତ କରି ଆମର ଗ୍ରାଣ୍ଟ ସବୁ ବନ୍ଦ କରିବାକୁ ଚେଷ୍ଟା କରିଥିଲେ । ଗୋଟାଏ ବର୍ଷ ଆମକୁ ଧାର ଉଧାର କରି ଚଳିବାକୁ ପଡିଥିଲା । ଏଇ ସମୟରେ ସରକାରୀ ସାହାଯ୍ୟ ଉପରେ ଆମକୁ ନିର୍ଭର କରିବାକୁ ପଡିଥିଲା । କିନ୍ତୁ ସରକାରୀ ସାହାଯ୍ୟ ମିଳିବା ସହଜ ନଥିଲା । ପ୍ରକ୍ରିୟା ଖୁବ୍ ଜଟିଳ ଥିଲା । ରାଜନୈତିକ ବିରୋଧାଭାସ ମଧ୍ୟ ହେଉଥିଲା । ଏସବୁର ମୁକାବିଲା କରିବା ପାଇଁ ମୁଁ ଶ୍ରୀ ଲୋକା ମାଝୀଙ୍କୁ ଦାୟିତ୍ୱ ଦେଇଥିଲି ଓ ସେ ତତ୍କାଳୀନ ବିଧାୟକ ଶ୍ରୀ ଅନନ୍ତରାମ ମାଝୀଙ୍କ ସହ କଥାବାର୍ତ୍ତା କରି ଆମ ସପକ୍ଷରେ ଅନୁକୂଳ ମତ ସୃଷ୍ଟି କରିଥିଲେ । ପଣ୍ଡକାପଦର ଗାଁକୁ ଆଦର୍ଶ ଗ୍ରାମ ରୂପେ ଗଢ଼ି ତୋଳିବାକୁ ଆମେ ଦୁହେଁ ସବୁବେଳେ ଯୋଜନା କରୁଥିଲୁ । ଗୋଟାଏ ପରିକଳ୍ପନା ଆମ ମନଭିତରେ ଥିଲେ ତାହାକୁ କାର୍ଯ୍ୟକାରୀ କରିବା ବିଶେଷ କଷ୍ଟ ନଥିଲା ।

ଶ୍ରୀ ଲୋକା ମାଝୀଙ୍କ ସହ ସର୍ଗୀଗୁଡା ଗାଁର ଶ୍ରୀ ରାଜୀବ ମାଝୀ, ରେଙ୍ଗଣାସିଲ୍‌ର ଶ୍ରୀ ଚିନ୍ନାଡୁ ସାଉଁତା ଆଦି ନେତୃ ସ୍ଥାନୀୟ ଲୋକଙ୍କ ସହ ମୁଁ ପରାମର୍ଶ କରୁଥିଲି । ସେମାନଙ୍କର ଦୀର୍ଘ ଦିନର ଅଭିଜ୍ଞତା ଓ ରାଜନୈତିକ ବୁଝାମଣା ଆମକୁ ଖୁବ୍ ସାହସ ଦେଇଥିଲା । କ୍ଷମତାସୀନ ରାଜନୈତିକ ଦଳ ସବୁବେଳେ ଚାହିଁଥିଲା ଯେ, ଆମର ସ୍ଥିତି ଡଙ୍ଗାସିଲରେ ଦୁର୍ବଳ ହୋଇଯାଉ ଓ ଆମେ ସେ ଅଞ୍ଚଳରୁ ଓହରି ଯାଉ । କିନ୍ତୁ ଶ୍ରୀ ଲୋକା ମାଝୀଙ୍କ ପ୍ରେରଣା ଓ ଆର୍ଶୀବାଦ ଆମକୁ ଆଗକୁ ଯିବାକୁ ସମସ୍ତ ସାହସ ଯୋଗାଇଥିଲା । ଡଙ୍ଗାସିଲ ଅଞ୍ଚଳକୁ ସାଧାରଣ ବଣ୍ଟନ ବ୍ୟବସ୍ଥାର ଚାଉଳ ଆସୁନଥିଲା । ସରକାରୀ କର୍ମଚାରୀମାନେ ବହୁତ ସମୟରେ ସେ ଅଞ୍ଚଳକୁ ଆସୁନଥିଲେ । କାଶୀପୁରର ଯେଉଁ କେତୋଟି ବିଚ୍ଛିନ୍ନାଞ୍ଚଳ ଥିଲା, ସେ ଭିତରେ ଏହା ଥିଲା ଅନ୍ୟତମ । ସବୁ ସମସ୍ୟାର ସମାଧାନ ପାଇଁ ସାମୂହିକ ଉଦ୍ୟମ କରିବାକୁ ଆମର ବୈଠକ ଅନେକବାର ବସୁଥିଲା ଡଙ୍ଗାସିଲ ହାଟର ଗଛ ଛାଇ ତଳେ । ପ୍ରତ୍ୟେକ ଗାଁର ସୁବିଧା ଅସୁବିଧା ବି ସହଜରେ ଜାଣି ହେଉଥିଲା ।

ଡଙ୍ଗାସିଲ୍ ହାଟରେ ଓଜନରେ ବହୁତ ଠକାମୀ ଚାଲିଥାଏ । କେ.ଜି. ବଟକରା ବ୍ୟବହାର ହେଉନଥାଏ । ସାନମାଣ ଓ ବଡ ମାଣ ବ୍ୟବହାର ହେଉଥାଏ । ବଟକରା ବଦଳରେ ପଥର ସବୁ ବ୍ୟବହାର କରାଯାଉଥାଏ । ଶ୍ରୀ ଲୋକା ମାଝୀ ପ୍ରସ୍ତାବ ଦେଲେ ଯେ ଡଙ୍ଗାସିଲ ହାଟରେ ଗୋଟାଏ ଧର୍ମକଣ୍ଟା ବସାଇବା ପାଇଁ । ଅର୍ଥାତ୍ ଗୋଟିଏ ଭଲ ଓଜନ ମେସିନ୍ ଲଗାଇବା ପାଇଁ ଏକଥା ସେ ଅଞ୍ଚଳରେ ବଡ ଚହଳ ସୃଷ୍ଟି କରିଥିଲା ଓ ଆମକୁ ପ୍ରକାଶ୍ୟରେ ବିରୋଧ କରାଗଲା । ଧର୍ମକଣ୍ଟା ଲଗାଇବା ପାଇଁ । ଆମକୁ ବାରଣ କରାଗଲା । ଏଇଭଳି ଏକ ବିଭ୍ରାଟ ଚାଲିଥାଏ । ଶ୍ରୀ ଲୋକା ମାଝୀ ଜିଲ୍ଲାପାଳ ଓ ଆଇ.ଟି.ଡି.ଏ କର୍ତ୍ତୃପକ୍ଷଙ୍କ

ଦୃଷ୍ଟି ଆକର୍ଷଣ କରିବାକୁ ଅନୁରୋଧ କରିଥିଲେ । କନ୍ୟାଶ୍ରମର ସୁବିଧା ଅସୁବିଧା ମୁଁ ଉଚ୍ଚ କର୍ତ୍ତୃପକ୍ଷଙ୍କୁ କହି କିଛି ମାତ୍ରାରେ ଅବସ୍ଥା ସୁଧାରି ଥିଲି । ସବୁ ଭଲ ମଣିଷମାନଙ୍କୁ ଏକାଠି କରି ଗୋଟାଏ କିଛି ମୌଳିକ ପରିବର୍ତ୍ତନ କରିବାର ସ୍ୱପ୍ନରେ ଶ୍ରୀ ଲୋକା ମାଝୀ ମୋ ସହ ସାମିଲ ହୋଇଥିଲେ । ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଏହା ଅବାରିତ ଥିଲା । ତାଙ୍କର ମୃତ୍ୟୁ ଆମ ପାଇଁ ଏକ ଅଭାବନୀୟ ପରିସ୍ଥିତି ସୃଷ୍ଟି କରିଥିଲା ।

ଆମ ସମର୍ଥକମାନଙ୍କର ତାଲିକାରେ ଶ୍ରୀ ଲୋକା ମାଝୀ ଆଗରେ ରହୁଥିଲେ । ଆମକୁ ମଧ୍ୟ ଆଗେଇବାରେ ଯେତିକି ପ୍ରେରଣା ଓ ସାହସ ଦରକାର ତାହା ମଧ୍ୟ ଅନାୟାସରେ ମିଳୁଥିଲା ଆମକୁ । ଏ ସମ୍ପର୍କର ଡୋରି ଖୁବ୍ ମଜଭୂତ ହୋଇଥିଲା ସମୟକ୍ରମେ ।

□□□

## ୩୨

ନେହେରୁ ଯୁବକେନ୍ଦ୍ର ସହ ଅଗ୍ରଗାମୀର ସମ୍ବନ୍ଧ କ୍ରମାଗତ ଦୃଢ଼ ହେବାରେ ଲାଗିଥିଲା ଅଁଶୀ ଦଶକର ପ୍ରଥମ ଭାଗରେ । ଅବିଭକ୍ତ କୋରାପୁଟ ଜିଲ୍ଲାର ନେହେରୁ ଯୁବକେନ୍ଦ୍ର ଏକ ଲୋକପ୍ରିୟ ସଂଗଠନ ଭାବେ ମୁଣ୍ଡ ଟେକିଥିଲା ଅଶୀଦଶକର ପ୍ରଥମ ଭାଗରେ । ଏହାର ଜିଲ୍ଲା ଯୁବ ସଂଯୋଜକ ଥିଲେ ଶ୍ରୀ ଦିଗମ୍ବର ଶତପଥୀ । ଯୁବଗୋଷ୍ଠୀ ସହ ତାଙ୍କର କିଭଳି ସମ୍ପର୍କ ଥିଲା ମୁଁ ରେଭେନ୍‌ସା କଲେଜରେ ଦେଖିଥିଲି । ସେ ମୋର କେମେଷ୍ଟ୍ରି ଅଧ୍ୟାପକ ଥିଲେ । ଅବଶ୍ୟ ମୁଁ ପଦାର୍ଥ ବିଜ୍ଞାନର ଛାତ୍ର ଥିଲି ଓ ରସାୟନ ବିଭାଗର ପରୀକ୍ଷାଗାରରେ ସେ ଆମର କେତେକ କ୍ଲାସ ନେଇଥିଲେ । କୋରାପୁଟର ଅଜଣା ପରିସରରେ ସେ ଖୁବ୍ ପରିଚିତ ଜଣା ପଡିଥିଲେ । ଯେଉଁଦିନ ମୁଁ ପ୍ରଥମଥର ପାଇଁ କୋରାପୁଟ ଆସିଥିଲି କାଶୀପୁରରୁ ତାଙ୍କ ସହ ସାକ୍ଷାତ କରି ମୁଁ ତାଙ୍କର ଛାତ୍ର ବୋଲି ପରିଚୟ ଦେଇଥିଲି । ସେ ଖୁବ୍ ଖୁସି ହୋଇଥିଲେ ଓ ସବୁଦିନପାଇଁ ମୋର ଏବଂ ଆମ ସଂସ୍ଥାର ଜଣେ ଶୁଭେଚ୍ଛୁ ବୋଲି ଦୃଢ଼ ଭାବରେ ପ୍ରକାଶ କରିଥିଲେ । ସେ ଓ ଶ୍ରୀମତୀ ଶତପଥୀ ମୋର ସମ୍ପର୍କୀୟଙ୍କ ଠାରୁ ଅନ୍ତରଙ୍ଗ ଜଣାପଡିଥିଲେ । କୋରାପୁଟର ଅମଲାତନ୍ତ୍ର ଓ ତାହାର ପାହାଚ ପାହାଚ ଅବସ୍ଥିତି ମୁଁ ତାଙ୍କଠାରୁ ଜାଣି ପାରିଥିଲି । କୋରାପୁଟର ଏକ ସାମଗ୍ରିକ ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ମାନଚିତ୍ର ମୋତେ ସେ ଦେଇଥିଲେ । ସେ ଅଧ୍ୟାପନାରୁ ଆସିଥିଲେ ଓ ଖୁବ୍ ଅସହଜ ଅନୁଭବ କରୁଥିଲେ କୋରାପୁଟର ବ୍ୟୁରୋକ୍ରାଟିକ ପରିବେଶ ଭିତରେ । ସେ ଜଣେ କିନ୍ତୁ ଅଦ୍ୱିତୀୟ ବ୍ୟକ୍ତିତ୍ୱ ଥିଲେ । ଗୋଟାଏ ପକ୍ଷରେ ସରକାରୀ କଳ ଓ ଅନ୍ୟପକ୍ଷରେ ସ୍ୱେଚ୍ଛାସେବୀ ସଂଗଠନ, ଏମାନଙ୍କ ଭିତରେ ସମନ୍ୱୟ ରକ୍ଷା କରିବା ଏକ ଦୁଃସାଧ୍ୟ ବ୍ୟାପାର ସବୁବେଳେ ଥିଲା । କିନ୍ତୁ ସେ ତାକୁ ସୁରୁଖୁରୁ ରୂପେ ପରିଚାଳନା କରୁଥିଲେ । ନେହେରୁ ଯୁବକେନ୍ଦ୍ର ଥିଲା କେନ୍ଦ୍ର ସରକାରଙ୍କ ଯୁବ ଓ କ୍ରୀଡା ମନ୍ତ୍ରଣାଳୟର ଏକ ଅଂଶ ବିଶେଷ । ଯୁବ ନେତୃତ୍ୱ ସୃଷ୍ଟି କରିବା, ଯୁବକ ସଂଘ ଓ ମହିଳା ସଂଘ ତିଆରି କରିବା ଏ ସଂଗଠନର ମୂଳ ଉଦ୍ଦେଶ୍ୟ ଥିଲା । ଶ୍ରୀ ଶତପଥୀ ଯେଉଁ ଯୁବ ନେତୃତ୍ୱ ସୃଷ୍ଟି କରିଛନ୍ତି ଓ ଯେଉଁ ଯୁବ ଅନୁଷ୍ଠାନମାନଙ୍କୁ ଗଢ଼ି ତୋଳିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି ତାହା କୋରାପୁଟର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ କାର୍ଯ୍ୟକ୍ରମରେ ସବୁଦିନ ପାଇଁ ମନେ ରହିବ । କୋରାପୁଟର ଏପରି କୌଣସି ରଚନାତ୍ମକ କାର୍ଯ୍ୟ ସମ୍ଭବ ହୋଇନାହିଁ ଯେଉଁଥିରେ କି ଶ୍ରୀ ଶତପଥୀଙ୍କର ଭୂମିକା ନାହିଁ । ଖେଳ ପ୍ରତିଯୋଗିତା ହେଉ ଅଥବା ସାଂସ୍କୃତିକ କାର୍ଯ୍ୟକ୍ରମ ହେଉ, ସେମିନାର, କର୍ମଶାଳା ହେଉ ଅଥବା ଲେଖକ ସମ୍ମିଳନୀ ହେଉ ସେ ସବୁକ୍ଷେତ୍ରରେ ନିଜର କାର୍ଯ୍ୟକ୍ଷମତା ଓ ସୃଜନଶୀଳତା ପ୍ରଦର୍ଶନ କରିଛନ୍ତି । ମୋ ଦୃଷ୍ଟିରେ ସେ କୋରାପୁଟରେ ସବୁଠାରୁ ଲୋକପ୍ରିୟ ବ୍ୟକ୍ତିତ୍ୱ ଥିଲେ ।

ଜିଲ୍ଲା ସ୍ୱେଚ୍ଛାସେବୀ ସଂଗଠନ ସମନ୍ୱୟ କମିଟି ବା ଡି.ଏଲ୍.ସି.ସି.ର ଆବାହକ ଭାବେ ମୋତେ ନିଯୁକ୍ତି ଦିଆଯିବାରୁ ସେ ସବୁଠାରୁ ବେଶୀ ଖୁସି ହୋଇଥିଲେ । ଏହା ଫଳରେ ସ୍ୱେଚ୍ଛାସେବୀ ସଂଗଠନ ଓ ନେହେରୁ ଯୁବକେନ୍ଦ୍ର ଭିତରେ ସମ୍ପର୍କ ଆହୁରି ମଜଭୁତ ହୋଇପାରିଲା । ସବୁକ୍ଷେତ୍ରରେ ସେ ଅନୌପଚାରିକ ଭାବେ ଉପଦେଶ ଦେଉଥିଲେ ଓ ମାର୍ଗଦର୍ଶକ ଭାବେ ଦାୟିତ୍ୱ ବହନ କରିଥିଲେ । କାରଣ ମୁଁ ଡି.ଏଲ୍.ସି.ସି.ର ଆବାହକ ହେବା ଦ୍ୱାରା କେତେକ ପୁରୁଣା ସ୍ୱେଚ୍ଛାସେବୀ ସଂଗଠନଙ୍କ ଗାତ୍ରଦାହ ହୋଇଥିଲା । ଅନ୍ୟ ପକ୍ଷରେ ଶ୍ରୀ ଦିଗମ୍ବର ଶତପଥୀ ଆମର ମଧ୍ୟ ସମାଲୋଚକ ଥିଲେ । ଆମେ ଯେଉଁ ଢଙ୍ଗରେ କାମ କରିବା ଆରମ୍ଭ କରିଥିଲୁ ଓ ଯେଉଁଭଳି ସମ୍ବେଦନଶୀଳ ପ୍ରଶ୍ନ ଉଠାଉଥିଲୁ, ସେ ପସନ୍ଦ କରୁନଥିଲେ । ସରକାର ଅଥବା ସରକାରୀ କର୍ମଚାରୀଙ୍କୁ ସମାଲୋଚନା କରିବାକୁ ସେ ବିରୋଧ କରୁଥିଲେ । ଆମେ ତୃଣମୂଳରେ ରହିବାକୁ ସେ ଯେତିକି ପ୍ରଶଂସା କରୁଥିଲେ, ଆମେ ପେଶାଦାର ନହୋଇପାରିବାକୁ ସେତିକି ନାପସନ୍ଦ କରୁଥିଲେ । ମୋଟାମୋଟି ବ୍ୟକ୍ତିଗତ ଭାବେ ସେ ମୋର ବଡ ଭାଇନା ଓ ଶ୍ରୀମତୀ ଶତପଥୀ ମୋର ଭାଉଜ ଭାବେ ସ୍ୱୀକୃତି ପାଇଥିଲେ ।

ଆଦିବାସୀ ଯୁବକଙ୍କୁ ସଂଗଠିତ କରିବା ଓ ସଂଘ ଗଢିବା ଆମର ଏକ ଆନ୍ତରିକ ଓ ଆଦର୍ଶବାଦୀ ଇଚ୍ଛା ସବୁବେଳେ ରହିଥାଏ । ରାଜସ୍ଥାନର ତିଲୋନିଆର ନେହେରୁ ଯୁବ ସଂଗଠନ ତରଫରୁ ସବୁବେଳେ ବାର୍ଷିକ ଟ୍ରେନିଂ ଶିବିର ଲାଗିଥିବାର ଏକ ଇତିହାସ ଥିଲା । ସ୍ୱେଚ୍ଛାସେବୀମାନେ ପ୍ରାଦେଶିକ ଓ ଜାତୀୟ ସ୍ତରରୁ ଆସୁଥିଲେ । ବିଶେଷଜ୍ଞ ଓ ରିସୋର୍ସ ପର୍ସନ୍ (Resource Person) ମଧ୍ୟ ଆମନ୍ତ୍ରିତ ହୋଇ ବିଭିନ୍ନ ବିଷୟ ଆଲୋଚନା କରୁଥିଲେ । ସେ ସମୟ ଭିତରେ ମୋର ମହାରାଷ୍ଟ୍ରରେ କାସ୍ତକାରୀ ସଂଗଠନ ଦ୍ୱାରା ପ୍ରସ୍ତୁତ ଏକ ବହି ମୁଁ ଦେଖିଥିଲି ଯେଉଁଥିରେ ଏକ ଯୁବ ଶିବିର କିପରି ପରିଚାଳନା କରାଯାଇ ପାରିବ ତାହାର ସବିଶେଷ ବର୍ଣ୍ଣନା ଥିଲା । କାସ୍ତକାରୀ ସଂଗଠନ ଅଶୀଦଶକରେ ଗୋଟାଏ ବୈପ୍ଲବିକ ଚିନ୍ତାଧାରା ସମାହିତ ସଂଗଠନ ଥିଲା । ଏହାର ମୁଖ୍ୟ ଶ୍ରୀଯୁକ୍ତ ପ୍ରଦୀପ ପ୍ରଭୁ ନାସିକ୍ ଜିଲ୍ଲାରେ ଆଦିବାସୀ ଯୁବକ ଯୁବତୀମାନଙ୍କୁ ଏଇ ୟୁଥ୍ କ୍ୟାମ୍ପ (Youth Camp) ଜରିଆରେ ସଂଗଠିତ କରିଥିଲେ । ଶ୍ରୀ ପ୍ରଦୀପ ପ୍ରଭୁ ଆମର ପ୍ରେରଣାର ଏକ ଉତ୍ସ ଥିଲେ ଓ ୟୁଥ୍ ଫେଷ୍ଟିଭାଲ୍ (Youth Festival) ବହିଟି ଆମ ଲାଇବ୍ରେରୀର ପ୍ରଥମ କେତୋଟି ବହି ଭିତରୁ ଅନ୍ୟତମ ଥିଲା । ଶ୍ରମ ଭିତ୍ତିକ ଶିବିର ସହ ବିଭିନ୍ନ ଆଲୋଚନା ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଏହାର ଅନ୍ତର୍ଗତ ଥିଲା । କାଶୀପୁରରେ ଏଇଭଳି ଯୁବ ଶିବିର ମଧ୍ୟ ଆୟୋଜନ କରିବା ଆମର ଉଦ୍ଦେଶ୍ୟ ଥିଲା । କୋରାପୁଟର ନେହେରୁ ଯୁବକେନ୍ଦ୍ରର ଯେଉଁ କାର୍ଯ୍ୟକ୍ରମ ରହିଛି ସେଥିରେ ଶ୍ରମଶିବିର ମଧ୍ୟ ଅନ୍ତର୍ଭୁକ୍ତ ହୋଇଛି ବୋଲି ଶ୍ରୀ ଶତପଥୀ ସୂଚନା ଦେଇଥିଲେ ।

ପ୍ରଥମ ଶିବିରଟି ଅଗ୍ରଗାମୀ ମୁଖ୍ୟ କାର୍ଯ୍ୟାଳୟକରେ କରିବାକୁ ମୁଁ ପ୍ରସ୍ତାବ ଦେଇଥିଲି । ୫୦ଜଣ ଯୁବକଙ୍କୁ ଆମେ ଆଖପାଖ ଗାଁରୁ ଠିକ୍ କରିଲୁ । ସକାଳେ ଚାରିପାଞ୍ଚ ଘଣ୍ଟା ଶ୍ରମଦାନ କରିବାକୁ ହେବ । ଉପରବେଳା ବିଭିନ୍ନ ବିଶିଷ୍ଟ ବ୍ୟକ୍ତି ବିଭିନ୍ନ ଉପାଦେୟ ବିଷୟରେ

ଆଲୋଚନା କରିବେ । ସନ୍ଧ୍ୟାରେ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜିତ ହେବ । ଏଇଭଳି କାର୍ଯ୍ୟ ନିର୍ଘଣ୍ଟ ଆମ ପାଇଁ ବେଶ୍ ଗ୍ରହଣ ଯୋଗ୍ୟ ଥିଲା । ଶ୍ରୀ ଶତପଥୀ କୋରାପୁଟର ଲୋକ ସମ୍ପର୍କ ବିଭାଗରୁ ମଧ୍ୟ ଚଳଚିତ୍ର ପ୍ରଦର୍ଶନର ଆୟୋଜନ କରିଥିଲେ । କୋରାପୁଟରୁ କାଶୀପୁର ପ୍ରାୟ ୧୨୦କି.ମି. । କେହି ଜଣେ ଇଚ୍ଛୁକ ବ୍ୟକ୍ତି ଏ ଅଞ୍ଚଳକୁ ଆସିବାକୁ ହେଲେ ଯାନବାହନର ବ୍ୟବସ୍ଥା କରିବାକୁ ହେବ । ଆମର ନିଜର କିଛି ସାଧନ ନଥାଏ । ଶ୍ରୀ ଶତପଥୀ ମଧ୍ୟ ଅନେକଙ୍କୁ ପ୍ରବର୍ତ୍ତାଇ କାଶୀପୁରକୁ ଆଣିଥିଲେ ଏ ଶିବିରକୁ । ଆମର କାର୍ଯ୍ୟକ୍ରମ ଏହାଦ୍ୱାରା କୋରାପୁଟର ଅନେକ ବ୍ୟକ୍ତି ଜାଣିପାରି ଥିଲେ । ଆମ ଅଫିସ ପାଖ ପରଜାଶୀଳା ଗାଁରେ ଶିବିର ମାଧ୍ୟମରେ କେନାଲ ଖୋଳିବା କାର୍ଯ୍ୟ ଆରମ୍ଭ କରି ସମାପ୍ତ କରିବାର ନିଷ୍ପତ୍ତି ହୋଇଥିଲା । ୫୦ଜଣ ବାହାରର ଯୁବକ, ଆମର କର୍ମୀଭାଇ, ଗାଁର ଯୁବକ ଯୁବତୀ ଏକାଠି କୋଡି, କୋଦାଳ, ଶାବଳ ଧରି ପରଜାଶୀଳାର ଶୀତ ସକାଳରେ ମାଟି ତାଡିବା ଦୃଶ୍ୟ ଏ ଅଞ୍ଚଳରେ ଅଭିନବ ଥିଲା । ପରଜାଶୀଳା ଗାଁକୁ ଅନ୍ୟ ଗାଁର ଯୁବକମାନେ ମଧ୍ୟ ଆସି ଉତ୍ସାହିତ ହୋଇଥିଲେ । ପରଜାଶୀଳା ହେଉଛି ସାହୁକାରଙ୍କ ଅଧୀନ ଗାଁ । ଜମିର ମାଲିକ କାଶୀପୁର ସାହୁକାରମାନେ । କେନାଲ ପାଣିରେ କାହାର ଜମିଜଳସେଚିତ ହେବ ମୁଁ ଅନେକ ପ୍ରଶ୍ନ କରିଥିଲି । ନାଳଟିରେ ବେଶି ପାଣି ବହୁ ନାହିଁ । ପରଜାଶୀଳାର ଝୋଡିଆ ସାହିର ଅନେକଙ୍କ ଘରବାଡି ଦେଇ କେନାଲ ପାଣି ପ୍ରବାହିତ ହେବ । ହରିଜନ ସାହିକୁ ପାଣି ପହଞ୍ଚିବ କି ନାହିଁ ସନ୍ଦେହ ସୃଷ୍ଟି ହୋଇଥିଲା । କେନାଲର ଚେକ୍ ଡ୍ୟାମ୍ ମଧ୍ୟ ଆବଶ୍ୟକ । ରାୟଗଡ଼ାରୁ ସବ୍‌କଲେକ୍ଟର ଆସିଥିଲେ ଓ ଚେକ୍‌ଡ୍ୟାମ୍ ବ୍ଲକ୍ ଜରିଆରେ କରିବାକୁ ପ୍ରତିଶ୍ରୁତି ମିଳିଲା । ମୁଁ ଓ ମୋର ସ୍ତ୍ରୀ ବିଦ୍ୟା ଆମେ ମନ ପ୍ରାଣ ଦେଇ ଏ ଶିବିରକୁ ସଫଳ କରିବାକୁ ଉଦ୍ୟମ କରିଥିଲୁ । ଶ୍ରୀ ଶତପଥୀ ମଧ୍ୟ ପ୍ରାଣପଣେ ଚେଷ୍ଟା କରିଥିଲେ । ସବୁଦିନେ କିଛି କିଛି ବିଶିଷ୍ଟ ବ୍ୟକ୍ତିଙ୍କୁ ଆଣି କାମ ଦେଖାଇବାରେ ସଫଳ ହୋଇନଥିଲେ । ଆମକୁ ମଧ୍ୟ କ୍ଲାସ୍ ନେବାକୁ ପଡିଥିଲା । ଖାଇବା ଆୟୋଜନ ମଧ୍ୟ ଖୁବ୍ ଭଲ ହୋଇଥିଲା । ୧୯୮୩ ମସିହାରେ ଆମର ଘରଦ୍ୱାର ଓ ଆସବାବ ପତ୍ର ବିଶେଷ ନଥାଏ । ଆର୍ଥିକ ସମ୍ବଳ ମଧ୍ୟ ସ୍ୱଚ୍ଛଳ ନଥିଲା ।

ତଥାପି ଶ୍ରୀ ଶତପଥୀ ସ୍ପଷ୍ଟ କହିଥିଲେ ଯେ ଏ ୟୁଥ୍ କ୍ୟାମ୍ପ ତାଙ୍କ ଜୀବନର ଶ୍ରେଷ୍ଠ ଓ ସଫଳତମ କ୍ୟାମ୍ପ । ଏଇ କ୍ୟାମ୍ପର ଅନୁଭୂତିକୁ ପୁଞ୍ଜିକରି ଆମେ ଆଉ କେତୋଟି ଶ୍ରମ ଶିବିର କାଶୀପୁରରେ ଆୟୋଜନ କରିଥିଲୁ ନେହେରୁ ଯୁବକେନ୍ଦ୍ର ଆନୁକୂଲ୍ୟରେ । ସବୁଠାରେ କେନାଲ ବା ଚେକ୍ ଡ୍ୟାମ୍ କରିବାକୁ ଆମର ଉଦ୍ୟମ ହୋଇଥିଲା । ୧୯୮୫ ମସିହାରେ ଆମେ ପଣ୍ଡକାପଦର ଗାଁରେ ଶ୍ରମ ଶିବିର ଆୟୋଜନ କରିଥିଲୁ । ତତ୍‌କାଳୀନ ଜିଲ୍ଲାପାଳ ଶ୍ରୀ ଅରୁଣ ସାମନ୍ତରାୟ ସମ୍ମତି ଦେଇଥିଲେ ଏ ଶିବିରକୁ ଉଦ୍‌ଘାଟନ କରିବା ପାଇଁ । କିନ୍ତୁ ସେ ନଆସି ମୋର ବନ୍ଧୁ ଶ୍ରୀ ଅରବିନ୍ଦ ବେହେରା(ଯିଏ ଏ.ଡି.ଏମ୍.ଭାବେ କୋରାପୁଟରେ ଦିନେ ଦୁଇଦିନ ପୂର୍ବରୁ ଜଏନ କରିଥିଲେ)ଙ୍କୁ ପଠାଇଥିଲେ । ଶ୍ରୀ ଅରବିନ୍ଦ ବେହେରା ଓ ଶ୍ରୀ ଦିଗମ୍ବର ଶତପଥୀ ପଣ୍ଡକାପଦର ଗାଁକୁ ଅପହଞ୍ଚ ଡଙ୍ଗାସିଲ୍ ଦେଇ ପହଞ୍ଚିଥିଲେ । କାଶୀପୁର ଭଳି ଆଭ୍ୟନ୍ତରୀଣ ଇଲାକାକୁ ଜିଲ୍ଲାପାଳ ବା ଏ.ଡି.ଏମ୍.ଆସିବା ଖବର ନିଆଁ ଭଳି ବ୍ୟାପି

ଯାଇଥାଏ । ଆମେମାନେ  ଜିଲ୍ଲାପାଳ ବା ସେଇସ୍ତରର ଅଫିସରଙ୍କୁ ଆମର କାର୍ଯ୍ୟକ୍ରମରେ ସାମିଲ୍ କରିପାରୁଛୁ । ସାଧାରଣ ଲୋକେ ଜାଣି ଆଶ୍ଚର୍ଯ୍ୟ ହେଉଥିଲେ । ଶିବିରାର୍ଥୀମାନଙ୍କ ରହିବା ପାଇଁ ରେଙ୍ଗଣାସିଲ ପାଖ ଏକ ଗୋଦାମ ଘରେ ବ୍ୟବସ୍ଥା କରାଯାଇଥିଲା । ପଣ୍ଡକାପଦର ଗାଁଠାରୁ କେନାଲ ଖୋଳିବା ସ୍ଥାନ ପ୍ରାୟ ୨କି.ମି. ଦୂର ଗୁଲୁମୀଝୋଲା ଗାଁରେ ଚିହ୍ନଟ କରାଯାଇଥିଲା । ସେଦିନ ଉଦ୍‌ଘାଟନ ସମାରୋହରେ ଏ.ଡି.ଏମ୍ ଆସିଛନ୍ତି ବୋଲି ଆଖପାଖ ୨୪ଟି ଗାଁର ଲୋକେ ବିଭିନ୍ନ ଦରଖାସ୍ତ ନେଇ ପହଞ୍ଚିଥିଲେ । ଶ୍ରୀ ଅରବିନ୍ଦ ବେହେରା ଏ.ଡି.ଏମ୍ ହିସାବରେ ସେ ସବୁ ଦରଖାସ୍ତ ଆପତ୍ତି ଅଭିଯୋଗ ଧୈର୍ଯ୍ୟର ସହ ଶୁଣିଥିଲେ । ଜିଲ୍ଲା ପ୍ରଶାସନ ପ୍ରତି ସାଧାରଣ ଗରିବ ଆଦିବାସୀଙ୍କ କେତେ ଆସ୍ଥା ଅଛି ତାହାର ସ୍ପଷ୍ଟ ସୂଚନା ମିଳିଥିଲା । ଭାଷଣରେ ଅରବିନ୍ଦ ଓ ଶ୍ରୀ ଶତପଥୀ ଆମକୁ ବହୁ ପ୍ରଶଂସା କରିଥିଲେ ଓ ପ୍ରସିଦ୍ଧ ଲେଖକ ଶ୍ରୀ ଗୋପୀ ମହାନ୍ତିଙ୍କ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ଉପନ୍ୟାସ ମାଟି ମଟାଳର ନାୟକ ନାୟିକା ରବି ଓ ଛବିଙ୍କ ସହ ମୋତେ ଓ ବିଦ୍ୟାକୁ ତୁଳନା କରିଥିଲେ । ଆଦିବାସୀ ଅଞ୍ଚଳରେ ଗୋଟିଏ କଥା ସ୍ପଷ୍ଟ ହୋଇଯାଇଥିଲା ଏ ଶ୍ରମଶିବିର ବା ଯୁବନେତୃତ୍ୱ ଶିବିର ଆୟୋଜନ କରି । ଏହାଥିଲା ଯେ, ଏ ଅଞ୍ଚଳରେ ଯେଉଁ ଲୁକ୍‌କାୟିତ ଯୁବଶକ୍ତି ଅଛି ତାହର ବିକାଶ ଓ ବିନିଯୋଗ ହୋଇପାରିଲେ ଦାରିଦ୍ର୍ୟ ଓ ଶୋଷଣ ଦୂର ହୋଇପାରିବ । ଯୁବଶକ୍ତିର ଯେଉଁ ସାମର୍ଥ୍ୟ ଓ ସମ୍ଭାବ୍ୟ ସହଭାଗିତା ରହିଛି, ତାହାକୁ ଶ୍ରୀ ଦିଗମ୍ବର ଶତପଥୀ ଚିହ୍ନଟ କରି ପାରିଥିଲେ । ଏଥିପାଇଁ କୋରାପୁଟର ଇତିହାସରେ ତାଙ୍କର ନାମ ନିଶ୍ଚୟ ଉଲ୍ଲେଖ କରାଯିବ ।



# ୩୩

ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଭୂମିକାକୁ ସ୍ପଷ୍ଟ କରିବାକୁ ଯାଇ ଅନେକ ପ୍ରସ୍ତାବ ଦିଆଯାଇଥିଲା । ଗ୍ରାମ୍ୟ ଗରିବଙ୍କ ସଂଗଠନ ଓ ଜନ ସହଭାଗିତାକୁ ପ୍ରାଧାନ୍ୟ ଦିଆଯାଇ ତୃଣମୂଳସ୍ତରରେ କାର୍ଯ୍ୟରତ ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ଆହ୍ୱାନ ଦିଆଯାଇଥିଲା ଯେ ସରକାର ଓ ସେମାନେ ସମନ୍ୱୟ ରକ୍ଷା କରିବେ । ଏହାଦ୍ୱାରା ବିଭିନ୍ନ ଯୋଜନା ଏବଂ ଦାରିଦ୍ର୍ୟ ଦୂରୀକରଣ ସମ୍ପର୍କିତ କାର୍ଯ୍ୟକ୍ରମ ଗୁଡିକର ସଫଳ ରୂପାୟନ ହୋଇପାରିବ । ସରକାର ଓ ସ୍ୱେଚ୍ଛାସେବୀ ସଂଗଠନମାନେ ହାତ ମିଳାଇଲେ ଅନେକ ସରକାରୀ କାର୍ଯ୍ୟକ୍ରମ ଲୋକଙ୍କ ପାଖରେ ପହଞ୍ଚି ପାରିବ ଓ ଅସଲ ଗରିବମାନେ ଲାଭାନ୍ୱିତ ହୋଇପାରିବେ । ସରକାର ଓ ସ୍ୱେଚ୍ଛାସେବୀ ସଂଗଠନମାନେ ପରସ୍ପର ପ୍ରତି ସମ୍ବେଦନଶୀଳ ହେବେ ଏବଂ ସଂଘର୍ଷ ବଦଳରେ ସହଯୋଗର ବାତାବରଣ ସୃଷ୍ଟି କରିବେ । ଗ୍ରାମ୍ୟ ଗରିବଙ୍କୁ ସଂଗଠନ କରିବାର ଦାୟିତ୍ୱ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଉପରେ ନ୍ୟସ୍ତ କରାଯିବ । କୋଡିଏ ଦଫା କାର୍ଯ୍ୟକ୍ରମର ଅନେକ ଗୁଡିଏ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ସରକାର ଏକାକୀ କରିପାରିବେ ନାହିଁ । ସର୍ବନିମ୍ନ ମଜୁରି ଦେବା ବା ଗୋଡି ଥଇଥାନ କରିବା ଆଦି କାର୍ଯ୍ୟକ୍ରମ ସରକାରୀ କଳ ଏକାକି କରିପାରିବ ନାହିଁ । ସେଇଥିପାଇଁ ସରକାର ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ସହ ସମନ୍ୱୟ ରଖିବାକୁ ହାତ ବଢ଼ାଇଥିଲେ ଅଶୀଦଶକର ପ୍ରଥମ ଭାଗରେ । ସପ୍ତମ ପଞ୍ଚବାର୍ଷିକ ଯୋଜନାରେ ଗତିଶୀଳତା ଆଣିବାକୁ ଓ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଭୂମିକା ନିର୍ଦ୍ଧାରଣ କରିବାକୁ ଯୋଜନା କମିଶନରେ ରାଜସ୍ଥାନର ତିଲୋନିଆ ସ୍ଥିତ 'ସମାଜ କାର୍ଯ୍ୟ ଏବଂ ଅନୁସନ୍ଧାନ କେନ୍ଦ୍ର'ର ନିର୍ଦ୍ଦେଶକ ଶ୍ରୀ ବଙ୍କର୍ ରାୟଙ୍କୁ ଉପଦେଷ୍ଟା ହିସାବରେ ନିଆଯାଇଥିଲା । ତାଙ୍କର ଦାୟିତ୍ୱ ଥିଲା ଯେ କେନ୍ଦ୍ର ସରକାର ଓ ରାଜ୍ୟ ସରକାରମାନଙ୍କୁ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ସହ ସମନ୍ୱୟ ରକ୍ଷା କରିବା ପାଇଁ ବିଭିନ୍ନ କମିଟି ଗଢିବାରେ ସାହାଯ୍ୟ କରିବେ । ରାଜ୍ୟ ସ୍ତରୀୟ ସ୍ୱେଚ୍ଛାସେବୀ ସମନ୍ୱୟ କମିଟି ବା ଏସ୍.ଏଲ୍.ସି.ସି.(SLCC)ର ଢାଞ୍ଚା ଥିଲା ଯେ ମୁଖ୍ୟ ସଚିବଙ୍କ ଅଧକ୍ଷତାରେ କେତେକ ବଛା ବଛା ପଦସ୍ଥ ଅଫିସର, ଦକ୍ଷ ଏବଂ ସଚ୍ଚୋଟ ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ନେଇ ଏଇ ସମନ୍ୱୟ କମିଟି ଗଢ଼ାଯିବ । ଏଇ କର୍ମରେ ଯୋଜନା କମିଶନଙ୍କ ଠାରୁ ରାଜ୍ୟ ସରକାରମାନଙ୍କୁ ଚିଠି ଲେଖା ଯାଇଥିଲା । ଶ୍ରୀ ବଙ୍କର ରାୟଙ୍କ ଉଦ୍ଦେଶ୍ୟ ଥିଲା ଯେ ପ୍ରତି ରାଜ୍ୟକୁ ଯାଇ ଏଇଭଳି ପଦସ୍ଥ ଅଫିସର ଓ ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ଚିହ୍ନଟ କରି ଏକ ତାଲିକା ପ୍ରସ୍ତୁତ କରିବେ ଏବଂ ରାଜ୍ୟ ସରକାରଙ୍କୁ ଆବଶ୍ୟକ ପରାମର୍ଶ ଦେବେ । ମୁଁ ଶ୍ରୀ ବଙ୍କର ରାୟଙ୍କ ସହଯୋଗୀ ଥିଲି ତିଲୋନିଆରେ । ଓଡ଼ିଶାର ସମନ୍ୱୟ କମିଟି ଗଢିବା ଓ

ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ବାଛିବାକୁ ସେ ମୋର ସାହାଯ୍ୟ ଲୋଡ଼ିଥିଲେ । ତାଙ୍କର ଓଡ଼ିଶାଗସ୍ତ ବେଳେ ମୁଁ ଢ଼େଙ୍କାନାଳ, ସମ୍ବଲପୁର, ବଲାଙ୍ଗିର, କଳାହାଣ୍ଡି, ଫୁଲବାଣୀ ଆଦି ଜିଲ୍ଲାକୁ ତାଙ୍କ ସହ ଯାଇଥିଲି । ପ୍ରତି ଜିଲ୍ଲାରେ ଜିଲ୍ଲାପାଳ ଓ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ମିଟିଂ ହୋଇଥିଲା ଓ ଆମେ ଦୁହେଁ କିଛି ନା କିଛି କହୁଥିଲୁ । ଶ୍ରୀ ରାୟ ସେତେବେଳେ ସରକାରଙ୍କ ସର୍କିଟ୍ ହାଉସରେ ନ ରହି ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ସହ ରହିବାକୁ ପସନ୍ଦ କରୁଥିଲେ ଓ ସେମାନଙ୍କର କାର୍ଯ୍ୟକ୍ରମରେ ଭାଗ ନେଉଥିଲେ । କିନ୍ତୁ ଶ୍ରୀ ବଙ୍କର ରାୟଙ୍କ ଗସ୍ତ ଏକ ସରକାରୀ ଗସ୍ତ ଥିଲା ଓ ଆମ ସହ ଜଣେ ଡେପୁଟି ସେକ୍ରେଟାରୀ ଗାଇଡ ହିସାବରେ ଥିଲେ । ମୁଁ ବଙ୍କର ରାୟଙ୍କୁ କହିଥିଲି ଯେ ଓଡ଼ିଶାରେ ଅମଲାତନ୍ତ୍ର ବଡ଼ ବିଚିତ୍ର ଓ ସବୁ ସରକାରୀ ଅଫିସରଙ୍କ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ପ୍ରତି ସମ୍ବେଦନଶୀଳତା ନାହିଁ । କିନ୍ତୁ ରାଜ୍ୟସରକାର ବଙ୍କର କେଉଁ କେଉଁ ଜିଲ୍ଲାକୁ ଯିବେ ଓ କେଉଁ କେଉଁ ଅଫିସରଙ୍କ ସହ ଆଲୋଚନା କରିବେ ତାହା ସ୍ଥିର କରି ଏକ ଲମ୍ବା ଚୌଡ଼ା ଗସ୍ତକ୍ରମ ସ୍ଥିର କରିଥିଲେ ।

ମୁଁ କିନ୍ତୁ ଯୋଜନା ଓ ସମନ୍ୱୟ ବିଭାଗସହ କଥାବାର୍ତ୍ତା କରି କିଛି ପରିବର୍ତ୍ତନ କରିବାକୁ ଚେଷ୍ଟା କରିଥିଲି । ମୋର ଉଦ୍ଦେଶ୍ୟ ଥିଲା ଯେ ବଙ୍କର ରାୟ ଓଡ଼ିଶାର ଖ୍ୟାତନାମା ସମାଜସେବୀ ଓ ଅନୁଷ୍ଠାନ ମଧ୍ୟ ଦେଖନ୍ତୁ । ସେତେବେଳେ ଅନୁଗୁଳର ବାଜି ରାଉତ ଛାତ୍ରାବାସରେ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ରହୁଥିଲେ । ଶ୍ରୀଯୁକ୍ତ ଚୌଧୁରୀ ଜରୁରି ପରିସ୍ଥିତି ସମୟରେ ଜେଲ୍ ଯାଇଥିଲେ ଓ ତାଙ୍କର ଭୀଷଣ ସ୍ୱାସ୍ଥ୍ୟହାନୀ ହୋଇଥିଲା । ସେଥିପାଇଁ ବାଜି ରାଉତ ଛାତ୍ରାବାସରେ ସେ ପ୍ରାୟ ସବୁବେଳେ ରହୁଥିଲେ । ସେଠାରେ ଶ୍ରୀଯୁକ୍ତ ବିଭୂତି ଭୂଷଣ ମହାନ୍ତିଙ୍କୁ ମୁଁ ଜାଣିଥିଲି । ଶିକ୍ଷା ଓ ସାକ୍ଷରତା ସମ୍ପର୍କରେ ତାଙ୍କ ସହ ମୋର ଅନେକ ପତ୍ରାଳାପ ହୋଇଥିଲା । ସେ ମଧ୍ୟ ବଙ୍କର ରାୟଙ୍କୁ ଜାଣିଥିଲେ ଅନେକ ଦିନ ଧରି । ତେଣୁ ବାଜି ରାଉତ ଛାତ୍ରବାସରେ ଆମର ରାତ୍ରିଯାପନ କରିବା ଉଚିତ ହେବ ଓ ନବବାବୁ ଏବଂ ମାଳତୀଦେବୀଙ୍କ ସହ କିଛି କଥାବାର୍ତ୍ତା ହୋଇ ପାରିବ ଏହା ମୋର ଅସଲ ଉଦ୍ଦେଶ୍ୟ ଥିଲା । ବାଜି ରାଉତ ଛାତ୍ରାବାସରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ନଇଁ ଆସୁଥାଏ । ବିଭୂତି ବାବୁ ଆମକୁ ସ୍ୱାଗତ କରିଥିଲେ ଓ କହିଥିଲେ ଯେ ବିଭିନ୍ନ ଅସୁବିଧା ହେତୁ ଆଶ୍ରମରେ ରାତ୍ରି ଯାପନ କରିହେବ ନାହିଁ । ମୁଁ ଟିକିଏ ଅବାକ୍ ହେଲି । କିନ୍ତୁ ଆମ ସହ ଯାଉଥିବା ଡେପୁଟି ସେକ୍ରେଟାରୀ କହିଥିଲେ ଯେ କିଛି ବ୍ୟସ୍ତ ହେବାର ନାହିଁ । ଜିଲ୍ଲାପାଳ ଅନୁଗୁଳର ସର୍କିଟ ହାଉସରେ ଆମର ରହିବା ଓ ନୈଶ୍ୟଭୋଜନର ବ୍ୟବସ୍ଥା ଆଗରୁ କରିଛନ୍ତି । ଶ୍ରୀଯୁକ୍ତ ନବବାବୁ ଓ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ସହ ଆମର ଅଳ୍ପ ସମୟ ପାଇଁ କଥାବାର୍ତ୍ତା ହୋଇଥିଲା । ଦଳେ ଝିଅଙ୍କୁ ମାଳତୀ ଦେବୀ ନୂଆଖାଲିର ସାମ୍ପ୍ରଦାୟିକ ଦଙ୍ଗା ଓ ତାଙ୍କର ଭୂମିକା କଥା କହୁଥାଆନ୍ତି । ବଙ୍କର ସେ ସବୁ ଶୁଣିଥିଲେ ଓ ନୂଆଖାଲିରେ ଗାନ୍ଧୀଜୀଙ୍କ ସହ ପଦଯାତ୍ରା କରିଥିବା ତାଙ୍କର ପିଉସୀ ଶ୍ରୀମତୀ ରେଣୁକା ରାୟଙ୍କୁ ସେ ଚିହ୍ନିଛନ୍ତିକି ନାହିଁ ବୋଲି ପଚାରିଥିଲେ । ମାଳତୀଦେବୀ ହଠାତ୍ ଚୁପ୍ ହୋଇଗଲେ ଓ ପଚାରିଲେ ଯେ ଶ୍ରୀମତୀ ରେଣୁକା ରାୟଙ୍କୁ ସେ କେମିତି ଜାଣନ୍ତି । ବଙ୍କର ଇଂରାଜୀରେ ତାଙ୍କର ଶ୍ରୀମତୀ ରାୟଙ୍କ ସହ କି ସମ୍ପର୍କ

ଅଛି କହିଦେଉଥିଲେ । ମାଳତୀଦେବୀ ବଙ୍କରଙ୍କୁ କହିଲେ ଯେ ସେ ବଙ୍ଗାଳୀ ହୋଇ ଇଂରାଜୀ କହିବାରେ କାହିଁକି କସରତ୍ କରୁଛନ୍ତି । ବଙ୍କର କିଛି କିଛି ନ ଶୁଣିଲା ଭଳି ଇଂରାଜୀରେ ବାର୍ତ୍ତାଳାପ କରୁଥାନ୍ତି । ଉଭୟଙ୍କ ଭିତରେ ସ୍ୱାଭିମାନ ପରିଷ୍କାର ପରିସ୍ଫୁଟ ହୋଇଥାଏ । ମୁଁ ବଡ଼ ଅଡୁଆରେ ପଡିଥିଲି ସେ ସମୟରେ । ବଙ୍କର କିନ୍ତୁ ସେଠାକାର ପରିସ୍ଥିତିକୁ ବଦଳାଇ ବିଭୂତିବାବୁଙ୍କ ପୁଅ ଓ ଝିଅସହ କଥାବାର୍ତ୍ତା କରିବାକୁ ଆରମ୍ଭ କରିଥିଲେ । ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ବିଷୟରେ କିଛି ଆଲୋଚନା ହୋଇପାରିନଥିଲା । ଶ୍ରୀ ମହାନ୍ତି ସେଠାରେ କାର୍ଯ୍ୟରତ ପୌଢ ଶିକ୍ଷାର ରାଜ୍ୟ ସାଧନକେନ୍ଦ୍ର ଓ ବିଭିନ୍ନ କାର୍ଯ୍ୟକ୍ରମର ସୂଚନା ଦେଇଥିଲେ ।

ଆମେ ଅନୁଗୁଳରେ ରାତ୍ରୀଯାପନ କରି ତା'ଆରଦିନ ସକାଳୁ ସମ୍ବଲପୁର ଅଭିମୁଖେ ଯାତ୍ରା କରିଥିଲୁ । ସମ୍ବଲପୁରରେ ସେତେବେଳେ ଆର.ଡି.ସି. ଥାଆନ୍ତି ଶ୍ରୀ ସହଦେବ ସାହୁ ଓ ଜିଲ୍ଲାପାଳ ଥାଆନ୍ତି ଶ୍ରୀ ଅଜିତ୍ ତ୍ରିପାଠୀ । ରେଙ୍ଗାଳି ବିସ୍ଥାପିତଙ୍କ ଥଇଥାନ ଦାୟିତ୍ୱରେ ଥାଆନ୍ତି ଶ୍ରୀ ପ୍ରମୋଦ ମିଶ୍ର । ଜିଲ୍ଲାପାଳ ବିଶ୍ୱସେବକଙ୍କ ସଂସ୍ଥା ପରିଦର୍ଶନରେ ଯିବାକୁ ପ୍ରସ୍ତାବ ଦେଇଥିଲେ । ଆମେ ବିଶ୍ୱସେବକଙ୍କ ଗାଁରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଦେଖିବା ସହ ଗାଁ ଦାଣ୍ଡରେ ମୁକ୍ତାକାଶ ତଳେ ଶୋଇଥିଲୁ । ଖରାଦିନ ଓ ରାତିସାରା ବିଭିନ୍ନ ବାର୍ତ୍ତାଳାପ କରି କଟିଗଲା । ତା'ପରଦିନ ଆମେ ବଲାଙ୍ଗିର ଅଭିମୁଖେ ଯାଇଥିଲୁ । ସେଠାରେ ଜିଲ୍ଲାପାଳ ଶ୍ରୀ ସନ୍ତୋଷ କୁମାର ଜିଲ୍ଲାର ବଛାବଛା ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ମିଟିଂ ଆୟୋଜନ କରିଥିଲେ । ବଲାଙ୍ଗିର ଜିଲ୍ଲାରେ ସାମାଜିକ ବନିକରଣ ଓ ଜଙ୍ଗଲ ସୁରକ୍ଷା ଜୋର ସୋରରେ ଚାଲିଥାଏ । ଆମକୁ ଖୁବ୍ ଖୁସି ଲାଗିଥିଲା ଯେ ଜନସହଭାଗିତା ବଢ଼ାଇବା ପାଇଁ ଜିଲ୍ଲା ପ୍ରଶାସନ ଖୁବ୍ ତତ୍‌ପର ଅଛି ଓ ଜିଲ୍ଲାରେ ଏକ ଆସ୍ଥାସୂଚକ ବାତାବରଣ ଲାଗିରହିଛି । ତାହାପରେ ଆମେ କଳାହାଣ୍ଡି ଜିଲ୍ଲାରେ କିଛି ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ସହ କଥାବାର୍ତ୍ତା କରିଥିଲୁ । ଜିଲ୍ଲାପାଳ ଶ୍ରୀମତୀ ମୀନା ଗୁପ୍ତାଙ୍କ ସହ ଦେଖାହୋଇପାରିଲା ନାହିଁ । ଆମେ ଫୁଲବାଣୀ ଅଭିମୁଖେ ଯାଇ ତୁମୁଡିବନ୍ଧଠାରେ ରାତ୍ରି ଯାପନ କରିଥିଲୁ । ମୁଁ ସେଇଠାରୁ କାଶୀପୁର ଅଭିମୁଖେ ଫେରିଥିଲି । ବଙ୍କର ଫୁଲବାଣୀର ଜିଲ୍ଲାପାଳ ଶ୍ରୀଯୁକ୍ତ ଭାଟିଆଙ୍କ ସହ ଖୁବ୍ ଭଲ ଆଲୋଚନା ହେଲା ବୋଲିକହୁଥିଲେ । ତା'ପରେ ବଙ୍କର ଏକାକୀ କେନ୍ଦୁଝର ଯାଇଥିଲେ ଓ ସେଠାରେ ବିଭିନ୍ନ ଆଦିବାସୀ ସଂଗଠନମାନଙ୍କ ସହ ଆଲୋଚନା କରିବା ବେଳେ ତତ୍‌କାଳୀନ ଜିଲ୍ଲାପାଳ ଶ୍ରୀ ଫଣିଭୂଷଣ ଦାସ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଇଥିଲେ ବୋଲି ବଙ୍କର କହୁଥିଲେ ।

ସେ ଫେରିଆସି ସଚିବାଳୟରେ ପଦସ୍ଥ ଅଫିସର ଓ ମୁଖ୍ୟସଚିବ ଶ୍ରୀ ଜ୍ଞାନଚନ୍ଦଙ୍କ ସହ କଥାବାର୍ତ୍ତା କରି ଖୁବ୍ ପ୍ରଭାବିତ ହୋଇଥିଲେ । ଅନ୍ୟ ପଦସ୍ଥ ଅଫିସରଙ୍କ ଭିତରେ ଶ୍ରୀ ପ୍ୟାରୀମୋହନ ମହାପାତ୍ର, ଡକ୍ଟର ଆର.କେ. ନାୟକ, ଶ୍ରୀଯୁକ୍ତ ଶ୍ରୀନିବାସନ୍ ପ୍ରମୁଖ ଥିଲେ । ବଙ୍କରଙ୍କ ଓଡ଼ିଶା ଗସ୍ତ ଖୁବ୍ ସଫଳ ହୋଇଥିଲା । ଖୋଦ୍ ମୁଖ୍ୟମନ୍ତ୍ରୀ ଓ ମୁଖ୍ୟ ସଚିବ ସ୍ୱେଚ୍ଛାସେବୀ ସଂଗଠନମାନେ ସରକାରଙ୍କ ସହ ସମନ୍ୱୟ ରକ୍ଷା କରନ୍ତୁ ବୋଲି ଆଶା ପ୍ରକଟ କରିଥିଲେ । ଓଡ଼ିଶାରେ ରାଜ୍ୟସ୍ତରୀୟ ସମନ୍ୱୟ କମିଟି ଗଢ଼ା ହେବା ସହ ଜିଲ୍ଲା ସ୍ତରୀୟ

ସମନ୍ୱୟ କମିଟି ଗଢ଼ାଯିବାକୁ ନିଷ୍ପତ୍ତି ନିଆଗଲା । ରାଜ୍ୟସ୍ତରୀୟ କମିଟିରେ ପ୍ରତ୍ୟେକ ଜିଲ୍ଲାର ଆବାହକ ସଦସ୍ୟ ରହିବେ । ମୁଖ୍ୟମନ୍ତ୍ରୀଙ୍କ ଅଧକ୍ଷତାରେ ରାଜ୍ୟସ୍ତରୀୟ କମିଟିରେ ମୁଖ୍ୟ ସଚିବ, ଉନ୍ନୟନ କମିଶନର ଓ ବିଭିନ୍ନ ବିଭାଗର ସଚିବମାନେ ସଦସ୍ୟ ମଧ ଥିଲେ । ମୁଁ କୋରାପୁଟ ଜିଲ୍ଲାକୁ ପ୍ରତିନିଧିତ୍ୱ କରୁଥିଲି । ରାଜ୍ୟସ୍ତରୀୟ ସମନ୍ୱୟ କମିଟିର ପ୍ରଥମ ବୈଠକ ସଚିବାଳୟରେ ଆୟୋଜିତ ହୋଇଥିଲା ଓ ସେଥିରେ ମୁଁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲି । କାଶୀପୁରରୁ କୋରାପୁଟ ଓ କୋରାପୁଟରୁ ଭୁବନେଶ୍ୱର ଦେଇ ଅମଲାତନ୍ତ୍ର ଓ ପ୍ରାଶାସନିକ ବ୍ୟବସ୍ଥାର ଯେଉଁ ଢାଞ୍ଚା ରହିଛି ତାହା ବେଶ୍ ବୁଝି ହେଲା । ସେତେବେଳର କେନ୍ଦ୍ରର କଂଗ୍ରେସ ସରକାର ଓ ରାଜ୍ୟର କଂଗ୍ରେସ ସରକାର ଗରିବମାନଙ୍କ ବିକାଶ ପାଇଁ କେତେକାଂଶରେ ଅଙ୍ଗୀକାରବଦ୍ଧ ଥିଲେ । ଗରିବମାନେ ବିକାଶଧାରାରେ ମୁଖ୍ୟ ଭୂମିକା ନିଅନ୍ତୁ ତାହା ମଧ ଏକ ରାଜନୈତିକ ଇଚ୍ଛାଶକ୍ତିର ଅଂଶ ବିଶେଷ ଥିଲା । ଏଇଥିପାଇଁ ଓଡ଼ିଶାରେ ଗ୍ରାମ୍ୟଗରିବଙ୍କ ଉତ୍‌ଥାନ ଓ ସଂଗଠନ ସମ୍ଭବ ବୋଲି ମୋତେ ପ୍ରତୀୟମାନ ହୋଇଥିଲା । କିନ୍ତୁ ଗ୍ରାମ୍ୟଗରିବଙ୍କ ସଂଗଠନ କାହା ହାତରେ ? ସରକାର ଏହା ସମ୍ଭବ କରିବେ କି ସ୍ୱେଚ୍ଛାସେବୀ ସଂଗଠନମାନେ କରିବେ ? ମୁଁ ସାଥୀ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ସହ ବହୁବାର ବାର୍ତ୍ତାଳାପ କରିଛି । ଅନେକଙ୍କୁ ପ୍ରବର୍ତ୍ତାଇଛି କିଛି ବୈପ୍ଳବିକ ପଦକ୍ଷେପ ନେବା ପାଇଁ । ସେସମୟରେ ମୋ ସହ ବେଶୀ ସମ୍ପର୍କ ରଖିଥିବା ମୟୂରଭଞ୍ଜର ଅନ୍ତୋଦୟ ଚେତନାମଣ୍ଡଳରେ କାର୍ଯ୍ୟରତ ଶ୍ରୀ ଆଦିତ୍ୟ ପଟ୍ଟନାୟକ ମୋତେ ଖୁବ୍ ସମର୍ଥନ ଦେଇଥିଲେ । କିନ୍ତୁ ଅନ୍ୟ ସ୍ୱେଚ୍ଛାସେବୀ ସଂଗଠନମାନେ ସରକାରଙ୍କ ସହ ଏକାଠି କାମ କରିବାକୁ ଯେମିତି ଭୟ କରୁଥିଲେ ବା ପଛଘୁଞ୍ଚା ଦେଉଥିଲେ । ଅମଲାତନ୍ତ୍ରର ଯେଉଁ ରୂପ ଅଛି ତାହା ଯେଉଁମାନେ ଜାଣିଥିଲେ ସେମାନେ ସମ୍ଭବତଃ ଆଶଙ୍କା କରୁଥିଲେ ଯେ ସରକାର ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ଅଧୀନସ୍ଥ କରିଦେବେ ଓ ପୋଷା ମନାଇ ଦେବେ । ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ସ୍ୱାଧୀନତା ଓ ପରିଚୟ କ୍ଷୁର୍ଣ୍ଣ ହେବାର ଡର ମଧ ଥିଲା । ମୁଁ ଆମର କାର୍ଯ୍ୟକ୍ରମ ଓ ଅମଲାତନ୍ତ୍ର ସହ ସମୀକରଣର ଉଦାହରଣ ଦେଉଥିଲେ ମଧ ତାହା ବିଶେଷ ପ୍ରଭାବ ପକାଇ ନଥିଲା । ଅବଶ୍ୟ ସରକାର ମିଟିଂ ଡାକିଲେ ସ୍ୱେଚ୍ଛାସେବୀମାନେ ଅହେତୁକ ଆଗ୍ରହ ଦେଖାଇ ମିଟିଂରେ ଭାଗ ନେଉଥିଲେ । ମୁଁ ଏ ସବୁ ବୁଝିପାରୁ ନଥିଲି ସେତେବେଳେ ।



# ୩୪

ଓଡ଼ିଶାର ବିକାଶ ପ୍ରକ୍ରିୟାରେ ବାଲେଶ୍ୱର ଜିଲ୍ଲାର ନୀଳଗିରି ନିକଟସ୍ଥ ଗଡପାଳ ଗାଁଟି ଚିରଦିନ ସ୍ମରଣୀୟ ହୋଇ ରହିବ । ୧୯୮୫ ମସିହାରେ ସେଠାରେ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଏକ ଆଲୋଚନା ଚକ୍ରର ମୁଁ ଆୟୋଜନ କରିଥିଲି । ଗଡପାଳଠାରେ ସ୍ଥାନୀୟ ସଂସ୍ଥା 'ଲୋକଶକ୍ତି'ର ଏକ ଛୋଟ କାର୍ଯ୍ୟାଳୟ ଥାଏ ଆଦିବାସୀ ମହିଳାମାନଙ୍କୁ ଖଲିପତ୍ର ତିଆରି ଓ ବିକାକିଣାରେ ଏସଂସ୍ଥା ସାହାଯ୍ୟ କରୁଥାଏ । କାର୍ଯ୍ୟାଳୟ ପଛପଟେ ରହିଛି ପାହାଡ଼ ଓ ଜଙ୍ଗଲ । ସାମ୍ନାରେ ଗୋଟାଏ କେନାଲ । ଲୋକଶକ୍ତିର ସେକ୍ରେଟାରୀ ଓ ମୋର ବନ୍ଧୁ ରବି ରାୟଙ୍କୁ ମୁଁ ଏ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଚକ୍ର ଆୟୋଜନ କରିବାରେ ମୁଖ୍ୟ ଦାୟିତ୍ୱ ନେବାକୁ ଅନୁରୋଧ କରିଥିଲି । ସେ ରାଜି ହୋଇଥିଲେ କିନ୍ତୁ ସେଠାରେ ପାଇଖାନାର ବ୍ୟବସ୍ଥା ନାହିଁ ବୋଲି କହିଥିଲେ । ମୁଁ କହିଥିଲି ଯେ କାପାର୍ଟ, ଭାରତ ସରକାର ଏବଂ ଓଡ଼ିଶା ସରକାରଙ୍କ ପଦସ୍ଥ ଅଫିସରମାନେ ଆସି ରାତ୍ରିଯାପନ କରିବେ । ସେଠାରେ ଯେମିତି ହେଲେ ପାଇଖାନା ଗୋଟାଏ କିମ୍ବା ଦୁଇଟିର ବ୍ୟବସ୍ଥା କରିବାକୁ ହେବ । ଆଲୋଚନାର ବିଷୟବସ୍ତୁ ଥିଲା, ସ୍ୱେଚ୍ଛାସେବୀ ସଂଗଠନଙ୍କ ପାଇଁ ଆଚାର ସଂହିତା ଆବଶ୍ୟକ କି ନାହିଁ ସେତେବେଳେ ଦେଶସାରା ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱକୁ ଦୃଢ଼କରିବା ପାଇଁ ଆଚାର ସଂହିତା ଆବଶ୍ୟକ ବୋଲି ଆଲୋଚନା ଚାଲିଥାଏ । ଯେତିକି ସମର୍ଥନ ଥାଏ, ସେତିକି ବିରୋଧାଭାସ ମଧ୍ୟ ଥାଏ । ଦେଶର ମୁଖିଆ ଓ ଛାମୁଁଆ ସଂଗଠନମାନେ ବିଭାଜିତ ହୋଇଥାଆନ୍ତି ଏବିଷୟରେ । ଓଡ଼ିଶାରେ ମଧ୍ୟ ଏଇଭଳି ପରିସ୍ଥିତି । ଆମେ କେତେଜଣ ଆଚାର ସଂହିତାର ସମର୍ଥନରେ ବାହାରିଥାଉ । କିନ୍ତୁ 'ଗ୍ରାମ ବିକାଶ'ର ଶ୍ରୀ ଜୋ ମାଡ଼ିଆଥ୍ ଆଦିଙ୍କ ନେତୃତ୍ୱରେ ଆଚାର ସଂହିତା, ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଏକ କାଉନ୍‌ସିଲ୍ ଗଠନ ଓ ସେଥିରେ ସରକାରଙ୍କର ଭୂମିକାକୁ ନେଇ ବିଭିନ୍ନ ସମାଲୋଚନା ପ୍ରକାଶ ପାଉଥାଏ । ମୋଟାମୋଟି ଏଇ ପ୍ରକ୍ରିୟା ଯେ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ସାର୍ବଭୌମତ୍ୱ ଉପରେ ସରକାରଙ୍କ ହସ୍ତକ୍ଷେପ ହୋଇପାରେ ବୋଲି ସନ୍ଦେହ ସୃଷ୍ଟି ହୋଇଥାଏ । ଜାତୀୟ ସ୍ତରରେ ଏହା ଉପରେ ଦେଶସାରା ଏକ ତର୍କ ହେଉ ବୋଲି "ସମାଜ କାର୍ଯ୍ୟ ଏବଂ ଅନୁସନ୍ଧାନ କେନ୍ଦ୍ର"ର ନିର୍ଦ୍ଦେଶକ ଶ୍ରୀ ବଙ୍କର ରାୟ ପ୍ରସ୍ତାବ ଦେଇଥିଲେ । ଭାରତ ସରକାରଙ୍କ କାପାର୍ଟ ସହାୟତାରେ ଏହି ତର୍କ ବିତର୍କର ଆୟୋଜନ ହୋଇଥାଏ । ଅନ୍ୟପକ୍ଷରେ 'ପ୍ରିୟା'ର ଶ୍ରୀ ରାଜେଶ ଟଣ୍ଡନ ଓ 'ଇଣ୍ଡିଆନ୍ ସୋସିଆଲ୍ ଇନ୍‌ଷ୍ଟିଚ୍ୟୁଟ'ର ଫାଦର ୱାଲ୍‌ଟର ଫର୍ଣ୍ଣାଣ୍ଡେଜ୍ ଆଦି ଆଚାର ସଂହିତା ନରହୁ ଓ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଏକ କାଉନ୍‌ସିଲ୍ ଗଢ଼ିବା ପଛରେ ସରକାରଙ୍କର ନିୟନ୍ତ୍ରଣ କରିବାର ମାନସିକତା ଅଛି ବୋଲି ଯୁକ୍ତିବାଢ଼ି ସମାନ୍ତରାଳ

ଯୁକ୍ତିତର୍କ ମଧ୍ୟ ଆରମ୍ଭ କରିଥିଲେ । ମୁଁ ଓ 'ଅନ୍ତ୍ୟୋଦୟ ଚେତନା ମଣ୍ଡଳ'ର ଶ୍ରୀ ଆଦିତ୍ୟ ପଟ୍ଟନାୟକ ଆଦି ଆଚାର ସଂହିତାର ସପକ୍ଷରେ ଯୁକ୍ତି ବାଢ଼ିଥିଲୁ । କିନ୍ତୁ ଶ୍ରୀ ଜୋ ମାଡ଼ିଆଥ୍‌ଙ୍କର ଶ୍ରୀ ରାଜେଶ ଟଣ୍ଡନ ଓ ଫାଦର ୱାଲ୍‌ଟର ଫର୍ଣ୍ଣେଣ୍ଡେଜ୍‌ଙ୍କ ସହ ଘନିଷ୍ଠ ସମ୍ବନ୍ଧ ଥାଏ । ଓଡ଼ିଶାର ଏଇଭଳି ଦୁଇଟି ସ୍ପଷ୍ଟ ଦଳରେ ସ୍ୱେଚ୍ଛାସେବୀ ସଂଗଠନମାନେ ବିଭାଜିତ ହୋଇଥିଲେ ସେସମୟରେ । ଗବପାଳ ଆଲୋଚନା ଚକ୍ରକୁ କାପାର୍ଟର ଡ଼େପୁଟି ଡ଼ାଇରେକ୍ଟର ଜେନେରାଲ୍ ଶ୍ରୀ ଅଶୋକ ଜେଟ୍‌ଲୀ, ପ୍ଲାନିଂ କମିଶନ ଉପଦେଷ୍ଟାଭାବେ କାମ କରୁଥିବା ଶ୍ରୀ ବଙ୍କର ରାୟ, 'ଓରେଡ଼ା'ର କାର୍ଯ୍ୟନିର୍ବାହୀ ନିର୍ଦ୍ଦେଶକ ଶ୍ରୀ ସତୀଶ୍ ଅଗ୍ନିହୋତ୍ରୀ ଆଦି ଅନେକ ଅଫିସର ଆସିବାର ପ୍ରସ୍ତାବ ଥାଏ । "ଗବପାଳ" ଗୋଟାଏ ଦୃଷ୍ଟିରୁ ଏକ ଆଭ୍ୟନ୍ତରୀଣ ଗାଁ ଥିଲା । ଆମର ଆଲୋଚନା ଚକ୍ର ରାଜଧାନୀ ଭୁବନେଶ୍ୱର ବା କୌଣସି ଜିଲ୍ଲା ସଦର ମହକୁମାରେ ଅନୁଷ୍ଠିତ ନହୋଇ କୌଣସି ଏକ ଗାଁରେ ହେବାକୁ ଶ୍ରୀ ଜେଟ୍‌ଲୀ ଓ ଶ୍ରୀ ରାୟ ପ୍ରସ୍ତାବ ଦେଇଥିଲେ ଓ କହିଥିଲେ ଯେ ପାଇଖାନା ନଥିଲେ ବି ସେମାନେ ସେଠାରେ ରାତ୍ରିଯାପନ କରିବେ । ସେତେବେଳେ ବାଲେଶ୍ୱର ଜିଲ୍ଲାର ଜିଲ୍ଲାପାଳ ଥାଆନ୍ତି ଶ୍ରୀ ପ୍ରିୟବ୍ରତ ପଟ୍ଟନାୟକ । ସେ ଏଇଭଳି ଏକ ଗୁରୁତ୍ୱପୂର୍ଣ୍ଣ ମିଟିଂ ଗବପାଳଠାରେ ହେବାର ପ୍ରସ୍ତାବରେ ଆଶ୍ଚର୍ଯ୍ୟ ହୋଇଥିଲେ ମଧ୍ୟ ସବୁପ୍ରକାର ସୁବିଧା ଯୋଗାଇ ଦେଇଥିଲେ । ସ୍ୱେଚ୍ଛାସେବୀ ସଂଗଠନ ଓ ସମ୍ବେଦନଶୀଳ ଅଫିସରମାନେ ଯେ ଗାଁର ସମସ୍ତ ଅସୁବିଧା ଧ୍ୱନ୍ତେ ସେଠାରେ ରହି ପାରନ୍ତି ଏହା ମଧ୍ୟ ଏକ ଦୃଷ୍ଟାନ୍ତ ରୂପେ ପ୍ରମାଣିତ କରିବାର ସମସ୍ତଙ୍କର ଇଚ୍ଛା ଥାଏ । ଆଚାର ସଂହିତାର ଏକ ମୁଖ୍ୟଦିଗ ଥାଏ ଯେ ସ୍ୱେଚ୍ଛାସେବୀ ସଂଗଠନମାନେ ସହରରେ ନରହି ଗାଁରେ ରହିବେ ଓ ଗ୍ରାମ୍ୟ ବିକାଶ କାର୍ଯ୍ୟକ୍ରମରେ ଜନ ସହଭାଗିତା ବଢ଼ାଇବେ । ଶ୍ରୀ ବଙ୍କର ରାୟ ତିଲୋନିଆ ଗାଁରେ ନିଜର କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ । ଶ୍ରୀ ରାଜେଶ ଟଣ୍ଡନ ଓ ଫାଦର ୱାଲ୍‌ଟର ଫର୍ଣ୍ଣେଣ୍ଡେଜ୍ ଆଦି ଦିଲ୍ଲୀ ସହରରେ ନିଜର ଆସନକୁ ଦୃଢ଼ କରିଥାଆନ୍ତି ଓ ସେମାନଙ୍କର ଜୀବନର ସ୍ତର କୁଆଡ଼େ ପଞ୍ଚତାରକା ଷ୍ଟାଟସ୍ ଭଳି ବୋଲି ଅଭିଯୋଗ ଆସିଥାଏ । ସତକଥା କହିବାକୁ ଗଲେ ଅଶୀଦଶକରେ ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ବିଳାସବ୍ୟସନ ବଢ଼ିବାର ଯଥେଷ୍ଟ ସଙ୍କେତ ମିଳିଥିବାରୁ ଆଚାର ସଂହିତା ଆବଶ୍ୟକ ବୋଲି ସପକ୍ଷବାଦୀମାନେ ଯୁକ୍ତି ବାଢ଼ିଥିଲେ ।

ମୁଁ ଶ୍ରୀ ରାଜେଶ ଟଣ୍ଡନ, ଶ୍ରୀ ଜୋ ମାଡ଼ିଆଥ୍ ଓ ଫାଦର ୱାଲ୍‌ଟର ଫର୍ଣ୍ଣେଣ୍ଡେଜ୍ ଆଦିଙ୍କୁ ଖୁବ୍ ଭଲଭାବେ ଜାଣିଥିଲି । କାଶୀପୁରରେ ରହି ମଧ୍ୟ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଦୁନିଆରେ ରାଜନୀତି କେମିତି ପ୍ରବେଶ କରିଛି ଓ ସେଥିରେ କେଉଁମାନେ ନାୟକ ଓ ଖଳନାୟକ ଜାଣିବାକୁ ମୋତେ ଯଥେଷ୍ଟ ସୁଯୋଗ ମିଳିଥାଏ । "ଓଡ଼ିଶା ଆକ୍‌ସନ୍ ଗ୍ରୁପ୍" ନାମରେ ଏକ ମହାସଂଘ ଆମେସବୁ ଗଢ଼ିଥାଉ । ସେଥିରେ ବଛା ବଛା ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ମୁଖିଆମାନେ ସଦସ୍ୟ ଥାଆନ୍ତି । ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଭିତରେ ଏକତା ଓ ସଂହତି ମୂଳଲକ୍ଷ୍ୟ ଥାଏ । ଏହାର ପ୍ରଥମ ମିଟିଂ ମହୁଡ଼ାସ୍ଥିତ 'ଗ୍ରାମ ବିକାଶ'ର ମୁଖ୍ୟ କାର୍ଯ୍ୟାଳୟଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଶ୍ରୀ ଜୋ ମାଡ଼ିଆଥ୍, ଶ୍ରୀ ରାଜେଶ ଟଣ୍ଡନ ଆଦି ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଦ୍ୱିତୀୟ ମିଟିଂ କାଶୀପୁରଠାରେ ଅନୁଷ୍ଠିତ ହେବାକୁ ପ୍ରସ୍ତାବ ଆସିଥିଲା । ଏଥିରେ

ଅଂଶଗ୍ରହଣ କରିବାକୁ ବିଭିନ୍ନ ଫାଦର ଓ ବ୍ରଦର୍‌ମାନଙ୍କର ନାମ ନିମନ୍ତ୍ରିତ ଅତିଥିମାନଙ୍କ ତାଲିକାରେ ଅନ୍ତର୍ଭୁକ୍ତ ହୋଇଥିଲା, ଯେଉଁମାନଙ୍କର ନାମ ମୁଁ ଶୁଣିନଥିଲି । ସେମାନଙ୍କୁ ବାଦ୍‌ଦେଇ ମୁଁ ଏକ ନୂତନ ତାଲିକା ପ୍ରସ୍ତୁତ କରିଥିଲି ଓ ମୋ ଦୃଷ୍ଟିରେ ଯେଉଁମାନେ ଆକୃଷ୍ଟ ସେମାନଙ୍କୁ ନିମନ୍ତ୍ରଣ କରିଥିଲି । ଶ୍ରୀ ରାଜେଶ ଟଣ୍ଡନ ଓ ଫାଦର ୱାଲ୍‌ଟର ଫର୍ଣ୍ଣାଣ୍ଡେଜ୍ ସେତେବେଳେ ଜଙ୍ଗଲ ଉପରେ ଏକ ସ୍ୱତନ୍ତ୍ର ଅଧ୍ୟୟନ କରୁଥିଲେ ଓ ଓଡ଼ିଶା ଆକ୍‌ସନ ଗ୍ରୁପ୍‌କୁ ଏଇ ଅଧ୍ୟୟନରେ ମାଧ୍ୟମ କରିବାକୁ ରଣନୀତି ସମ୍ଭବତଃ ପ୍ରସ୍ତୁତ କରିଥିଲେ । ମୁଁ ଫାଦର ଓ ବ୍ରଦର୍‌ମାନଙ୍କୁ ଓଡ଼ିଶା ଆକ୍‌ସନ ଗ୍ରୁପ୍ ତାଲିକାରୁ ବାଦ୍‌ଦେବା ସେମାନଙ୍କୁ ଖୁବ୍ ଆଘାତ ଦେଇଥିବ ନିଶ୍ଚିତ । ସେମାନଙ୍କର ବନ୍ଧୁ ଶ୍ରୀ ଜୋ ମାଡ଼ିଆଥ୍ ମଧ୍ୟ ମୋର ନିଷ୍ପତ୍ତିକୁ ସମାଲୋଚନା କରିଥିଲେ । ଏହାର ଫଳାଫଳ ଖୁବ୍ ଭୟାନକ ହୋଇଥିଲା ଆମ ପାଇଁ । ବିଦେଶୀ ଅନୁଦାନକାରୀ ସଂସ୍ଥାମାନେ ଏମାନଙ୍କ ହାତରେ ଥିଲା ଓ ୧୯୮୩ ମସିହାରେ ଆମକୁ ଗୋଟାଏ ଶିକ୍ଷାଦେବା ପାଇଁ ଏକ ଷଡ଼ଯନ୍ତ୍ର ହୋଇଥିଲା । ଆମର ବିଦେଶୀ ଅନୁଦାନରେ ଚାଲିଥିବା ଏକ ପ୍ରକଳ୍ପକୁ ଅଧାରୁ ଓ ଅସମ୍ପୂର୍ଣ୍ଣ ଅବସ୍ଥାରେ ବନ୍ଦ କରିଦିଆଗଲା ଓ ଏହାର ପ୍ରଭାବରେ ଆମକୁ ଭିକାରୀର ପରିସ୍ଥିତି ଭୋଗିବାକୁ ହୋଇଥିଲା ।

ସବୁଠାରେ ରାଜନୀତି ଅଛି ବୋଲି ମୁଁ ଅନୁଭବ କରି ଆସୁଥିଲି ଛାତ୍ରାବସ୍ଥାରୁ । ଏପରିକି କଲେଜ ହେଉ କି ହଷ୍ଟେଲ ହେଉ, ସେଠାରେ ନିର୍ବାଚନ ବେଳେ ରାଜନୀତି ଅତି ନିମ୍ନସ୍ତରକୁ ଖସି ଆସିବାର ପରିସ୍ଥିତି ମୁଁ ନିଜେ ହୃଦ୍‌ବୋଧ କରିଛି । ବନ୍ଧୁତାର ସମସ୍ତ ମୂଲ୍ୟବୋଧ ଏକାବେଳେକେ ଭାଙ୍ଗିଯାଏ । ଏହା ଗ୍ରାମ୍ୟ ବିକାଶ କ୍ଷେତ୍ରରେ ଓ ବିଶେଷକରି ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଭିତରେ ଥିବା ମୁଁ କଳ୍ପନା କରିନଥିଲି । ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ଏକ କ୍ଷମତାଶାଳୀ ଗୋଷ୍ଠୀଙ୍କ ଭିତରେ ଯେମିତି ପ୍ରତିଯୋଗିତା ଚାଲିଥାଏ । ବିଦେଶର ଅନୁଦାନକାରୀ ସଂସ୍ଥାମାନେ ମଧ୍ୟ ପ୍ରତ୍ୟକ୍ଷଭାବେ ଏରାଜନୀତିରେ ଭାଗ ନିଅନ୍ତି ଓ ସରକାରଙ୍କ ସହ ସହଭାଗିତା ଓ ସହଯୋଗକୁ ପ୍ରଶ୍ନ କରନ୍ତି । ସରକାର ଆମର ଓ ସରକାରଙ୍କ ସାହାଯ୍ୟ କରଦାତା ନାଗରିକଙ୍କର । ଏହା ସହିତ ସମ୍ବନ୍ଧ ରଖିଲେ କି ଅପରାଧ ହୋଇଯାଏ ମୁଁ ଅନ୍ୟମାନଙ୍କ ମୁହଁରୁ ଶୁଣି ଅବାକ୍ ହୋଇପଡ଼ିଥିଲି । ମୁଁ ଜାଣିଥିଲି ଯେ ଗବପାଳ ମିଟିଂରେ ଆଚାର ସଂହିତା ବିରୋଧରେ ବିଭିନ୍ନ ମତ ଆସିବ । ଶ୍ରୀ ଜୋ ମାଡ଼ିଆଥ୍‌ଙ୍କ ନେତୃତ୍ୱରେ ଏକ ଗୋଷ୍ଠୀ ଏଥିପାଇଁ ଖୁବ୍ ସକ୍ରିୟ ହୋଇଥାଆନ୍ତି । ଶ୍ରୀ ଅଶୋକ ଜେଟ୍‌ଲୀ ଓ ଅନ୍ୟ ପଦସ୍ଥ ଅଫିସରମାନଙ୍କ ଆଗରେ କେଉଁମାନେ ସ୍ୱେଚ୍ଛାସେବୀ ସଂଗଠନଙ୍କ 'କୋଡ୍ ଅଫ୍ କଣ୍ଡକ୍ଟ' (Code of Conduct) ଏବଂ କାଉନ୍‌ସିଲ୍ ପ୍ରତିଷ୍ଠାକୁ ବିରୋଧ କରିବେ ସେମାନଙ୍କୁ ପ୍ରସ୍ତୁତ କରି ରଖାଯାଇଥିଲା ବୋଲି ମୁଁ ପରେ ଜାଣିଲି । ଗବପାଳ ଆଲୋଚନା ଚକ୍ର ମୁଁ ଆୟୋଜିତ କରିଥିଲି ଓ ଆଶା କରିଥିଲି ଯେ ଓଡ଼ିଶାର ବିକାଶ ଦିଗରେ ଏହା ଏକ ମାଇଲଖୁଣ୍ଟ ହେବ । ଆମେ ସମସ୍ତେ ମିଶି ଦାରିଦ୍ର୍ୟ ଓ ଶୋଷଣ ବିରୋଧରେ ଏକ ବିଶାଳ କାର୍ଯ୍ୟକ୍ରମ ନେଇପାରିବା ଓ ଏଥିରେ ଭାରତ ସରକାରଙ୍କ ସଂସ୍ଥା କାପାର୍ଟ ସହଯୋଗ କରିବ ବୋଲି ଶ୍ରୀ ଅଶୋକ ଜେଟ୍‌ଲୀ ଆହ୍ୱାନ ଦେଇଥିଲେ । ଶ୍ରୀ ବଙ୍କର

ରାୟ ମଧ୍ୟ ଆଲୋଚନା ଚକ୍ରରେ ଭାଗନେଇ କହିଥିଲେ ଯେ ସ୍ୱେଚ୍ଛାସେବୀ ସଂଗଠନମାନେ ଯଦି ନିଜ ଉପରେ ଅଙ୍କୁଶ ନଲଗାଇବେ, ତେବେ ସରକାର ବିଭିନ୍ନ ପ୍ରକାର ନିୟନ୍ତ୍ରଣ ପ୍ରକ୍ରିୟା ଆଣି ଲଦିଦେବେ ଓ ତାହା ସମସ୍ତେ ମାନିବାକୁ ବାଧ୍ୟ ହେବେ । ଶ୍ରୀ ସତୀଶ୍ ଅଗ୍ନିହୋତ୍ରୀ 'ଓରେଡ଼ା' ପକ୍ଷରୁ ସବୁ କାର୍ଯ୍ୟକ୍ରମରେ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ସହ ହାତ ମିଳାଇବାକୁ ପ୍ରସ୍ତୁତ ବୋଲି ଘୋଷଣା କରିଥିଲେ । ଜଣେ ଯୁବ ଅଫିସର ସାହସର ସହ ଏକଥା କହିପାରେ, ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ଶ୍ରୀ ଜୋ ମାଡ଼ିଆଥ୍ ଆଚାର ସଂହିତାର ଦୃଢ଼ ବିରୋଧ କରିଥିଲେ । ଶୁଣାଯାଏ ଯେ ଦିଲ୍ଲୀର ଆଚାର ସଂହିତା ବିରୋଧି ଏକ ସମାବେଶରେ ଯୋଗଦେବାକୁ ଶ୍ରୀ ମାଡ଼ିଆଥ୍ ଅନେକ ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ଆର୍ଥିକ ସହାୟତା ଦେଇଥିଲେ । ଶ୍ରୀ ରାଜେଶ ଟଣ୍ଡନ ଓ ଫାଦର ୱାଲ୍ଟର ଫର୍ଣ୍ଣେଣ୍ଡେଜ୍ ଆଦି ଆଚାର ସଂହିତା ବିରୋଧି ଗୋଷ୍ଠୀ ସହ ହାତ ମିଳାଇ ସେମାନେ ଓଡ଼ିଶାରେ ଆମ ଉଦ୍ୟମକୁ ପ୍ରାୟ ପଣ୍ଡ କରିଦେଇଥିଲେ । ଏହା ଓଡ଼ିଶାର ଭବିଷ୍ୟତ ପାଇଁ ଏକ ଶୁଭ ଲକ୍ଷଣ ନଥିଲା ।

କିନ୍ତୁ ଗବପାଳଠାରେ ଗୋଟାଏ ରାତ୍ରି କାଟିବା ଆମ ପାଇଁ ଖୁବ୍ ରୋମାଞ୍ଚକର ଥିଲା । ଖଲିପତ୍ର ଗୋଦାମରେ ଦରି ପକାଇ ଶୋଇବା ଓ କେନାଲର ଥଣ୍ଡା ପାଣିରେ ଗାଧୋଇବା ଖୁବ୍ ସ୍ମରଣୀୟ ଥିଲା । ଜଣେ ପଦସ୍ଥ ଅଫିସର ହୋଇ ମଧ୍ୟ ଶ୍ରୀ ଜେଟ୍‌ଲୀ ଜଣେ ସ୍ୱେଚ୍ଛାସେବୀ ସଂଗଠନର କର୍ମୀଭଳି ଆମ ସହ ସମୟ କାଟିଥିଲେ । ଜିଲ୍ଲାପାଳଙ୍କ ତାଗିଦ୍ ଥିଲା ଯେ ବାଲେଶ୍ୱରର ସର୍କିଟ୍ ହାଉସ୍‌ରେ ତାଙ୍କ ପାଇଁ ସବୁ ଆୟୋଜନ କରାଯାଇଛି । ଶ୍ରୀ ଜେଟ୍‌ଲୀ ସବୁ ପ୍ରତ୍ୟାଖାନ କରି ଆମ ସହ ଗବପାଳରେ ରହିଥିଲେ ଓ ଆମ ଆଡ୍‌ଭେଞ୍ଚର (Adventure)ରେ ପ୍ରତ୍ୟକ୍ଷ ଭାଗ ନେଇଥିଲେ । ଏହା ଓଡ଼ିଶାର ଅମଲାତନ୍ତ୍ରରେ ସମ୍ଭବତଃ ଇତିହାସ ହୋଇପାରିଲା ।



## ୩୫

ଖରାବର୍ଷା, ଶୀତ ଦିନମାନଙ୍କରେ ଆଦିବାସୀ ଘର ଭିତରେ ନିଆଁ ଜଳୁଥାଏ । କାରଣ ଜଳବାୟୁ ସବୁଦିନେ ଥଣ୍ଡା ଥାଏ । ରାତ୍ରି ସମୟରେ ଉତ୍ତାପ କମିଯାଏ । ଆଦିବାସୀ ଘୋଡିଘାଡି ହୋଇଥାଏ । ଘରେ ନିଆଁ ଜଳିଲେ ଉଷୁମ ଲାଗେ । ଏହାଛଡା ମଶାମାନଙ୍କର ପ୍ରାଦୁର୍ଭାବ ମଧ କମିଥାଏ । ଏଇଥି ପାଇଁ ଏଠାକାର ସବୁ ପରିବାରଙ୍କ ଲୋଡା ହୋଇଥାଏ ଜାଳେଣି କାଠ । ଡଙ୍ଗର ପାହାଡରେ କାଠ କାଟି ଆଣିବାରେ ଅନେକ ସମୟ ଲାଗିଯାଏ । ଆଦିବାସୀ ହରିଜନ ମାଆ ଭଉଣୀମାନେ ନିଜର ଅନେକ ସମୟ କଟେଇ ଥାଆନ୍ତି କାଠ ସଂଗ୍ରହରେ । ମନେପକାନ୍ତି ପାଖରେ ଜଙ୍ଗଲ ଥିଲେ କେତେ ଭଲ ହୋଇଥାଆନ୍ତା । କାରଣ କାଶୀପୁରରେ ଜଙ୍ଗଲ ଅନେକ କଟିଗଲାଣି । ଡଙ୍ଗର ପାହାଡ ଲଣ୍ଡା ହୋଇ ଗଲାଣି । ଜଙ୍ଗଲରେ ଶାଳ, ପିଆଶାଳ, ଆମ୍ବ, ପଣସ, ଚମ୍ପା, କେନ୍ଦୁ, ଜାମୁ ଆଦି ଅନେକ କିସମର ଗଛ । ଡଙ୍ଗରରେ ବି ବାଉଁଶ ବୁଦା ବିଛେଇ ହୋଇଥାଏ । ବର୍ଷସାରା ଖାଇବା ଜିନିଷ ଫଳ, ମୂଳ, ଶାଗ ଆଦି ମିଳୁଥାଏ । ଗାଁରେ ଆଲୋଚନା କରିଲେ ବଣ ଜଙ୍ଗଲ, ପାହାଡ ଡଙ୍ଗର, ବାଘ, ଭାଲୁ, କୁଟ୍ରା ମୟୂର ଆଦି ଅନେକ କଥା ଓ କାହାଣୀ ଲୋକେ ବଖାଣିବସନ୍ତି । ଏବେ ସବୁ କିନ୍ତୁ ଅଲଗା । ସବୁ ଲଣ୍ଡା ଓ ନଗ୍ନ । ଖାଲି ଖାଲି ଲାଗେ ।

ଜନଗଣନା ବିଭାଗ ପ୍ରତି ଦଶବର୍ଷରେ କାଶୀପୁରର ଏକ ନିର୍ଦ୍ଦିଷ୍ଟ ଗାଁ ଲାକ୍ରିସ୍‌ର ଏକ ବିଶେଷ ରିପୋର୍ଟ ପ୍ରକାଶ କରନ୍ତି । କାଶୀପୁରଠାରେ ୭ କିଲୋମିଟର ଦୂରରେ ଶୁଙ୍ଗେର ରାସ୍ତାର ପାଖରେ ଏ ଗାଁ ଅବସ୍ଥିତ । ସେ ଗାଁର ଖାଲି ଜନସଂଖ୍ୟା ନୁହେଁ ସବୁପ୍ରକାର ପରିସଂଖ୍ୟାନ ଓ ବିବରଣୀ ରିପୋର୍ଟରେ ଉଲ୍ଲେଖ କରାଯାଇଥାଏ । କେତୋଟି ଫଟୋ ମଧ ଦିଆଯାଏ । ଲାକ୍ରିସ ଗାଁର ଗତ କେତେବର୍ଷର ଇତିହାସ ପଢିବାକୁ ସୁଯୋଗ ମିଳେ ଓ କାଶୀପୁରର ଅବସ୍ଥା ତିରିଶ ଚାଳିଶ ବର୍ଷ ପୂର୍ବେ କ'ଣ ଥିଲା ତାହର ସୂଚନା ମିଳେ । ଗବେଷକମାନଙ୍କୁ ଅନେକ ଖୋରାକ ମିଳିଯାଏ ଏ ଦସ୍ତାବିଜ୍‌ରୁ । ଆଜି ଲାକ୍ରିସ୍ ଗାଁକୁ ଗଲେ ଗତ କେତେ ଦଶନ୍ଧିରେ କି ପରିବର୍ତ୍ତନ ହୋଇଛି ତାହାର ସ୍ପଷ୍ଟ ଆଭାସ ମିଳେ । ରିପୋର୍ଟରେ ଘନ ଜଙ୍ଗଲ ଥିବାର ବର୍ଣ୍ଣନା ପଢିବାକୁ ମିଳେ । ବାଘ, ଭାଲୁ, ହରିଣ, କୁଟ୍ରା, ବାରହା ଅନେକ ବନ୍ୟଜନ୍ତୁମାନଙ୍କର ଉପସ୍ଥିତି ଓ ସେମାନଙ୍କର ଗାଁ ଉପରେ ପ୍ରଭାବର ଏକ ଚିତ୍ର ଆଙ୍କି ହୁଏ । ଲାକ୍ରିସ ଗାଁର ପଛ ପଟେ ମସ୍ତବଡ ଡଙ୍ଗର । ଗାଁର ବାମ ଓ ଦକ୍ଷିଣ ପାର୍ଶ୍ୱରେ ଜଙ୍ଗଲ କେମିତି ଘଞ୍ଚଥିଲା ତାହାର ଅଂଶ ବିଶେଷକୁ ଦେଖି କଳ୍ପନା କରିହୁଏ । ଲାକ୍ରିସରେ କାଶୀପୁର ରାଜାଙ୍କ ଜମି ଅନେକ ଥାଏ । ୧୯୫୦ ମସିହା ପରେ ପରେ ଯେତେବେଳେ ପଞ୍ଚାୟତ ସମିତି ସବୁ ସ୍ଥାପିତ ହେଲା, ଲାକ୍ରିସ ଠାରେ ବ୍ଲକ୍ ଅଫିସ ହେବ ବୋଲି କୁଆଡେ ନିଷ୍ପତ୍ତି

ହୋଇଥିଲା । ଭବାନୀପାଟଣାକୁ ରାସ୍ତା ଲାକ୍ରିସ୍ ବାଟ ଦେଇ ଯାଇଛି । ୧୯୬୦ ମସିହାରେ କାଶୀପୁର କଳାହାଣ୍ଡିରୁ ବିଛିନ୍ନ ହୋଇ କୋରାପୁଟରେ ମିଶିଲା ଓ ରାୟଗଡ଼ାର ଅଂଶ ବିଶେଷ ହୋଇଗଲା । ଲାକ୍ରିସ୍‌ରେ ଆଦିବାସୀଙ୍କ ପରିବାର ସଂଖ୍ୟା ଶହେ ପାଖାପାଖି । ଜନସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ କେତେ ଘର ରାସ୍ତା ଉପରକୁ ଉଠିଗଲେ ଓ ତେନ୍ତୁଳିସାଇ ନାମରେ ଏକ ବସ୍ତି ଆରମ୍ଭ କରିଲେ । ଗାଁରେ ହରିଜନ ପରିବାର ମଧ୍ୟ ୫୦ରୁ ଅଧିକ । ଚାଷ ଜମି କମ୍ ଥିବାରୁ ପୋଡୁ ଚାଷ ଉପରେ ସମସ୍ତଙ୍କର ଆଖି । ଏଇଥିପାଇଁ ଡଙ୍ଗର ପାହାଡ ଖୁବ୍ ଶୀଘ୍ର ଲଣ୍ଡା ହୋଇଗଲେ । ଏବେ କାଠ ପାଇଁ ସେମାନଙ୍କୁ ମାଣ୍ଡିବିଶି ଜଙ୍ଗଲକୁ ଯିବାକୁ ପଡୁଛି । ଗୋଟାଏ ଦିନ ସକାଳୁ ସକାଳୁ ବାହାରି ଗଲେ ଘାଟି ପାହାଡ ଚଢ଼ି ମାଣ୍ଡିବିଶି ଜଙ୍ଗଲରେ ପ୍ରବେଶ କରିବା ସମ୍ଭବ ହୁଏ । ସେଠାରେ କାଠ କାଟି ଫେରି ହୁଏ ନାହିଁ । ତାର ପରଦିନ ଫେରିବାକୁ ହୁଏ । ମୁଣ୍ଡରେ କାଠ ବିଡ଼ା ଓ କାନ୍ଧରେ କାଠ କାଉଡି ଧରି ଘାଟି ରାସ୍ତାରେ ଚାଲିବା ଖୁବ୍ କଠିନ କାମ । କିନ୍ତୁ ଲୋକଙ୍କ ପାଖରେ ଆଉ କିଛି ରାସ୍ତା ନାହିଁ । କାଠ ନଆଣିଲେ ଚୁଲି ଜଳିବ ନାହିଁ । ମାସରେ ପାଞ୍ଚ ଛଅଦିନ ଏଇଭଳି ଜାଳକାଠ ସଂଗ୍ରହ କରିବାରେ କଟିଯାଏ । ଜନଗଣନା ବିଭାଗର ରିପୋର୍ଟରେ ଯାହାସବୁ ଲେଖାଯାଇଛି, ତାହା କାହାଣୀ ବୋଲି ମନେ ହୁଏ । ଲାକ୍ରିସ୍ ଗାଁରେ କାଶୀପୁରରେ ଜଙ୍ଗଲର ବିନାଶ ଓ ତାହାର ଜନସଂଖ୍ୟା ଉପରେ ପ୍ରଭାବର ସୂଚନା ସହଜରେ ଅଧ୍ୟୟନ କରିହୁଏ ।

କାଶୀପୁର ତହସିଲର ଆୟତନ ପ୍ରାୟ ୧୫୦୦ ବର୍ଗ କିଲୋମିଟର ଏବଂ ଗ୍ରାମର ସଂଖ୍ୟା ୪୬୦ । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା ଲକ୍ଷେ ଟପି ଗଲାଣି । ପୂର୍ବ ପଟେ ଲିଲିଗୁମା ରିଜର୍ଭ ଜଙ୍ଗଲ ଓ ପଶ୍ଚିମପଟେ କଳାହାଣ୍ଡିକୁ ଲାଗି କିଛି କିଛି ଶାଳ ଜଙ୍ଗଲ ଦେଖିବାକୁ ମିଳୁଛି । କିନ୍ତୁ ଦକ୍ଷିଣ ଦିଗରେ ଡଙ୍ଗାସିଲ ଅଞ୍ଚଳରେ ଡଙ୍ଗରରେ ଘାସଛଡ଼ା ଅନ୍ୟ କିଛି ଉଠୁନାହିଁ । ପ୍ରତ୍ୟେକ ଗାଁ ମାନଙ୍କରେ ଜାଳକାଠର ଅଭାବ । ଯେଉଁଠି ଯେଉଁଠି ସବୁ କିଛି କିଛି ବୁଦା ଲଟା ଅଛି ତାହା ଲୋକମାନେ କାଟିବାରେ ବ୍ୟସ୍ତ । କେଉଁ କେଉଁ ଗାଁରେ ଲୋକମାନେ ଜଙ୍ଗଲ ସୁରକ୍ଷା କରିବାକୁ ବାହାରି ଥିଲେ ମଧ୍ୟ ଆଖ ପାଖ ଗାଁର ଲୋକେ ଆସି କାଟିବାରେ ଲାଗିଛନ୍ତି । କାଶୀପୁରର ଫରେଷ୍ଟ ରେଞ୍ଜର ଓ ଗୋରଖପୁରର ବନୀକରଣ ରେଞ୍ଜରଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ ଜଙ୍ଗଲ ସୁରକ୍ଷା ଅସମ୍ଭବ ହୋଇପଡିଛି ଏ ଅଞ୍ଚଳରେ । ଜାଳକାଠର ଅଭାବ ହେତୁ କେଉଁଠି କେଉଁଠି ଫଳଗଛ ଯଥା; ଆମ୍ବ, ପଣସ ଆଦି ଲୋକମାନେ ମଧ୍ୟ କାଟିବାକୁ ପଛାଉ ନାହାନ୍ତି । କାଶୀପୁରରେ କାଠ କାଉଡି ପାଞ୍ଚଟଙ୍କାରେ ଅଶୀଦଶକରେ ମିଳୁଥିଲା । ସେତେବେଳେ ସର୍ବନିମ୍ନ ମଜୁରି ଥିଲା ଛଅଟଙ୍କା । କିନ୍ତୁ କାମଧନ୍ଦା ମିଳୁନଥିବାରୁ ଆଖପାଖର ବହୁତ ଆଦିବାସୀ ପରିବାର ଜାଳକାଠ ଆଣି କାଶୀପୁରରେ ବିକ୍ରୟ କରି ପରିବାର ଚଳାଉଥିଲେ ।

କାଶୀପୁରର ସାମାଜିକ, ଆର୍ଥିକ ଓ ପାରିବେଶିକ ଅବସ୍ଥା ବର୍ଣ୍ଣନା କରିଲାବେଳେ ଆମକୁ ଜଙ୍ଗଲ ସମ୍ପଦର ଅବକ୍ଷୟ କଥା ବିଚାରକୁ ନବାକୁ ପଡୁଥିଲା । ମୋର ଯେଉଁମାନେ ଅଫିସର ମହଲରେ ବନ୍ଧୁ ଓ ଶୁଭେଚ୍ଛୁ ଥିଲେ କାଶୀପୁରରେ ବନୀକରଣ ଓ ଜଙ୍ଗଲ ସୁରକ୍ଷା

ବିଷୟରେ ସଚେତନତା ବୃଦ୍ଧି ଉପରେ ଗୁରୁତ୍ୱ ଆରୋପ କରିବାକୁ ସେମାନଙ୍କୁ ଅନୁରୋଧ କରୁଥିଲି । କୋରାପୁଟର ଡି.ଆର.ଡି.ଏ ତରଫରୁ ସାମାଜିକ ବନୀକରଣ କାର୍ଯ୍ୟକ୍ରମ ହାତକୁ ନିଆଯାଇଥାଏ । ସାମାଜିକ ବନୀକରଣ ରେଞ୍ଜର ମଧ୍ୟ ବିଭିନ୍ନ ସ୍ଥାନରେ ବନୀକରଣ କରାଇବାକୁ ଉଦ୍ୟମ କରିଥାଆନ୍ତି । ଆମର ଗାଁମାନଙ୍କରେ କଣ୍ଢେଇ ନାଚ ଓ ସଚେତନତା ଗୀତ ମାଧ୍ୟମରେ ଜଙ୍ଗଲ ସୁରକ୍ଷା ଓ ବୃକ୍ଷରୋପଣ ପାଇଁ ଉଦ୍ୟମ କରିଥିଲୁ । ରାତ୍ରିସ୍କୁଲ ମାନଙ୍କରେ ପିଲାଙ୍କୁ ଏସବୁ ବିଷୟ ମଧ୍ୟ ପଢାଇ ଆଗ୍ରହ ସୃଷ୍ଟି କରିଥିଲୁ । ଆମେ ଯେଉଁ ଗାଁରେ କାମ ଆରମ୍ଭ କରୁଥିଲୁ ସେଠାରେ ବୃକ୍ଷରୋପଣ କାର୍ଯ୍ୟକ୍ରମ ପାଇଁ ନର୍ସରୀ ପ୍ରତିଷ୍ଠା କରିଥିଲୁ । ଜଙ୍ଗଲ ବିଭାଗ ହେଉ ଅଥବା ଉଦ୍ୟାନ ବିଭାଗ ହେଉ, ଆମେ ସହଯୋଗର ହାତ ବଢ଼ାଇଥିଲୁ । ଆମର ଦୃଢ ବିଶ୍ୱାସ ଥିଲା ଯେ ଯଦି ଆଦିବାସୀମାନେ ପୂର୍ଣ୍ଣପ୍ରାଣରେ କୃଷିକାର୍ଯ୍ୟରେ ଲାଗିବେ ଓ ଜମିରେ ଗୋଟିଏ ଥର ବଦଳରେ ଦୁଇଫସଲ ଅମଳ କରିବେ ତେବେ ଡଙ୍ଗର ଚାଷ କମିଯିବ । ଏଇଥିପାଇଁ ଯେତେସମ୍ଭବ ଆମେ ଝରଣା ପାଣିକୁ ଚେକ୍‌ଡ୍ୟାମ୍ କରି ଗାଁରେ ଜଳସେଚନ ବ୍ୟବସ୍ଥା କରିବାକୁ ପ୍ରୟାସ ଜାରି ରଖିଥିଲୁ ଓ ଅନେକ ଗାଁରେ ସଫଳ ହୋଇଥିଲୁ । ଗାଁରେ ଆଦିବାସୀମାନଙ୍କର ଯୁକ୍ତି ଥିଲା ଯେ ସେମାନେ ବନୀକରଣ ଓ ଜଙ୍ଗଲ ସୁରକ୍ଷା କାହିଁକି କରିବେ ? ବୃକ୍ଷରୋପଣରେ ଜଙ୍ଗଲ ବିଭାଗ ଓ ଅନ୍ୟମାନେ ସବୁ ଲାଭ ନେବେ । ଆମେ ଏହାର ଓଲଟା ଯୁକ୍ତି କରି ଜଙ୍ଗଲ ସହ ପରିବେଶ, ପାଣି, ପବନ, ମାଟି ଆଦିର କି ସମ୍ପର୍କ ଅଛି ବୁଝାଇ ଥିଲୁ । ଜଙ୍ଗଲ କେମିତି ଖାଦ୍ୟ ସୁରକ୍ଷା ହାସଲ କରିବାରେ ସାହାଯ୍ୟ କରୁଛି ବିଭିନ୍ନ ମାଧ୍ୟମରେ ବୁଝାଇଥିଲୁ । ପୋଷ୍ଟର ମାନ ବିଭିନ୍ନ ଗାଁରେ ମାରିଥିଲୁ ।

ଓଡ଼ିଶା ସରକାର ସେ ସମୟରେ ଅକ୍ଷୟଶକ୍ତି ବିକାଶ ଯୋଜନା ବା ରିନ୍ୟୁଏବଲ୍ ଏନର୍ଜି ଡେଭେଲପମେଣ୍ଟ ପ୍ରୋଗ୍ରାମ୍ (Renewable Energy Development Programe) ଆରମ୍ଭ କରିଥାଆନ୍ତି । ଏଥିପାଇଁ ଏକ ସ୍ୱତନ୍ତ୍ର ସଂସ୍ଥା ଓରେଡା (OREDA) ଗଠନ କରାଯାଇଥିଲା । ଯୁବ ଅଫିସର ଶ୍ରୀ ସତୀଶ୍ ଅଗ୍ନିହୋତ୍ରୀ ମୁଖ୍ୟ କାର୍ଯ୍ୟ ନିର୍ବାହୀ ଅଧିକାରୀ ହିସାବରେ ଯୋଗ ଦେଇଥିଲେ । ସେ ଭାରତୀୟ ପ୍ରଶାସନିକ ସେବାରେ ଯୋଗ ଦେବା ପୂର୍ବରୁ ବମ୍ବେ ଆଇ.ଆଇ.ଟି.ରୁ ପରିବେଶ ବିଜ୍ଞାନରେ ଏମ୍.ଟେକ୍ କରିଥିଲେ । ଟ୍ରେନିଂ ବେଳେ ତାଙ୍କ ସହ ପରିଚୟ । ସେ ମଧ୍ୟ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ପ୍ରତି ଦରଦୀ ଥିଲେ ଓ ଓରେଡାର ସମସ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନ କାଶୀପୁରରେ ଦେଖିବାକୁ ଚାହୁଁଥିଲେ । ସେ ଯେତିକି ବାସ୍ତବବାଦୀ ଥିଲେ ସେତିକି ସ୍ୱପ୍ନବାଦୀ ଥିଲେ । ତାଙ୍କର ଆଶା ଥିଲା ଯେ କାଶୀପୁରରେ ଅକ୍ଷୟ ଶକ୍ତି ବିକାଶ କାର୍ଯ୍ୟକ୍ରମ ତ୍ୱରାନ୍ୱିତ କରାଯିବ । ଏଥିରେ ପ୍ରତ୍ୟେକ ପରିବାରରେ ଧୂମହୀନ ଚୁଲା ଲଗାଯିବ । ପ୍ରତ୍ୟେକ ଗାଁରେ ସୌରଶକ୍ତିରେ ଲାଇଟ୍ ଲାଗିବ । ଯେଉଁଠି ସମ୍ଭବ ବିଜୁଳିଶକ୍ତି ଉତ୍ପାଦିତ ହେବ । ସାମୂହିକ ଗୋବର ଗ୍ୟାସ ପ୍ଲାଣ୍ଟ ଲାଗି ସେଥିରୁ ମଧ୍ୟ ବିଜୁଳିଶକ୍ତି ଉତ୍ପାଦିତ ହେବ । ଯେଉଁ ବୈଷୟିକ ଜ୍ଞାନ ଓ ଟେକ୍‌ନୋଲୋଜି କମ୍ ଶକ୍ତି ବା ଉର୍ଜା ବ୍ୟବହାର କରେ ସେଇଭଳି ଟେକ୍ନୋଲୋଜିକୁ ଲାଗୁ କରାଯିବ । ଶ୍ରୀ ସତୀଶ ଅଗ୍ନିହୋତ୍ରୀ ଜଣେ ଦକ୍ଷ ଓ କୁଶଳୀ ପ୍ରଶାସକ ହିସାବରେ ଆମ ପଛରେ ଛିଡା ହୋଇଥିଲେ ।

କାଶୀପୁର ସେ ଅନେକ ବାର ଆସିଥିଲେ । ସେତେବେଳେ ସମନ୍ୱିତ ଅକ୍ଷୟ ଶକ୍ତି ବିକାଶ କାର୍ଯ୍ୟକ୍ରମ ପାଇଁ ଯୋଜନା ପ୍ରସ୍ତୁତ ହେଉଥାଏ । ନିରନ୍ତର ବିକାଶ ପାଇଁ ଯେ ଅକ୍ଷୟଶକ୍ତି ନିତାନ୍ତ ଆବଶ୍ୟକ, ସବୁଆଡେ ଚର୍ଚ୍ଚା ହେଉଥାଏ । କାଶୀପୁର ଏସବୁର ସଫଳ ପରୀକ୍ଷା ପାଇଁ ଯେମିତି ଏକ ଲାବରେଟୋରି(Laboratory) ହୋଇଯାଇଥାଏ । ଆମକୁ ଶ୍ରୀ ଅଗ୍ନିହୋତ୍ରୀଙ୍କ ଠାରୁ ଅନେକ ପ୍ରୋତ୍ସାହନା ମିଳୁଥାଏ ଯୋଜନାକୁ ସଫଳ କରିବା ପାଇଁ । ସେ ମଧ୍ୟ ଓରେଡାରୁ ବିଭିନ୍ନ ବିଶେଷଜ୍ଞମାନଙ୍କୁ ପଠାଉଥିଲେ । ବମ୍ବେର ଜଣେ ବିଖ୍ୟାତ ଇଞ୍ଜିନିୟର ଶ୍ରୀ କେ.ଆର. ଦାତେ ଏମାନଙ୍କ ଭିତରେ ସବୁଠାରୁ ଆଗ୍ରହୀ ବ୍ୟକ୍ତିଥିଲେ । ପଚାଶ ଦଶକରେ ସେ ବମ୍ବେରୁ ବଡ ଚାକିରି ଛାଡି କୋରାପୁଟର ବୈପାରୀଗୁଡାରେ ଚାଲିଥିବା ସର୍ବୋଦୟ କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ଶ୍ରୀ ଆନ୍ନା ସାହେବ ସହସ୍ରବୁଦ୍ଧେଙ୍କ ବିଶାଳ ବ୍ୟକ୍ତିତ୍ୱ ଦ୍ୱାରା ସେ ଆକର୍ଷିତ ହୋଇ ଓଡ଼ିଶାକୁ ଆସିଥିଲେ ସେତେବେଳେ । ଏଣୁ କାଶୀପୁର ସହ ପୁଣିଥରେ ସଂଶ୍ଳିଷ୍ଟ ହେବା ତାଙ୍କର ଏକ ସ୍ୱପ୍ନର ଅଂଶ ବିଶେଷ ଥିଲା । ତେଣୁ ତାଙ୍କ ମାଧ୍ୟମରେ ଫେରୋସିମେଣ୍ଟ ଟେକ୍ନୋଲୋଜି, କ୍ରିକ୍‌ଡ୍ୟାମ୍ ଟେକ୍‌ନୋଲୋଜି କାଶୀପୁର ଠାରେ ପ୍ରୟୋଗ କରାଯାଇଥିଲା ସଫଳତାର ସହ । କାଶୀପୁରରେ ଆଦିବାସୀ ବିକାଶର ଏକ ଦିଗ ଉନ୍ମୋଚିତ ହୋଇଥିଲା ଯେତେବେଳେ ପ୍ରଥମଥର ପାଇଁ ଧୂମହୀନ ଚୁଲ୍ଲୀ ସୌରଶକ୍ତି ଚାଳିତ ଆଲୁଅ, କମ୍ୟୁନିଟି ବାଇଓଗ୍ୟାସ ପ୍ଲାଣ୍ଟ, ପବନକଳ ସବୁ ବିଭିନ୍ନ ଗାଁରେ ଲାଗିଲା ଓ ଅବିଭକ୍ତ କୋରାପୁଟ କେବଳ ନୁହେଁ ସାରା ଓଡ଼ିଶାରେ ଚହଳ ପକାଇଥିଲା ।



## ୩୬

ଯଦି କୌଣସି ଗୋଟିଏ ବିଷୟ ମୋତେ କାଶୀପୁରରେ ବେଶି ବିଚଳିତ କରିଥାଏ, ତାହା ହେଉଛି ପରିଚିତ ହେବାର ବୋଝ । ଛାତ୍ର ଜୀବନରୁ ମୁଁ ସବୁବେଳେ ଅପରିଚିତ ଓ ଅନାମଧେୟ ହୋଇ ରହିବାକୁ ବେଶୀ ପସନ୍ଦ କରିଛି । ସେଥିପାଇଁ କ୍ଲାସରେ ଆଗଧାଡିରେ ବସିବା ମୋ ପକ୍ଷେ ସମ୍ଭବ ହୋଇନାହିଁ । ପଛଧାଡିରେ ବସି ଲର୍ଡସ୍ ଅଫ ଲାଷ୍ଟ ବେଞ୍ଚ ଆମେ ଆମ ନୂତନ ନାମକରଣ କରିଥାଉ । ଶିକ୍ଷକ ଓ ଅଧ୍ୟାପକମାନେ ଯେମିତି ଆମକୁ ଜାଣିପାରିବେ ନାହିଁ । ଆମର ସଂଖ୍ୟା ବଢିବାରେ ଲାଗିଥାଏ । ଆମେ ସବୁ ଡିବେଟ୍ ପ୍ରତିଯୋଗିତାକୁ ନଯାଇ ଅନ୍ୟମାନଙ୍କୁ ଜିତିବାକୁ ସାହାଯ୍ୟ କରିଥାଉ । ଆମେ ଏଇଭଳି କିଙ୍ଗମେକର ହେବାକୁ ପସନ୍ଦ କରିଥାଉ । ନାୟକ ନହୋଇ ଅନ୍ୟକୁ ନାୟକ ଭୂମିକାରେ ଦେଖିବାକୁ ଅନେକଙ୍କୁ ଭଲଲାଗେ । ଏହା ଗୋଟାଏ ନୂତନ ମନସ୍ତତ୍ତ୍ୱ ନୁହେଁ ତ ଆଉ କ'ଣ ? କାଶୀପୁରର ଅବସ୍ଥା କିନ୍ତୁ ଭିନ୍ନ । ସେଇଠି ସବୁ ଆଦିବାସୀ, ଗରିବ ଓ ମଳିମୁଣ୍ଡିଆ ଅପରିଚିତ । ସେମାନଙ୍କ ଗହଣରେ ନିଜକୁ ସ୍ୱତନ୍ତ୍ର କରିରଖିବା ଓ ପରିଚିତ ମୁହଁ ହୋଇଯିବାକୁ ବେଶୀ ସମୟ ଲାଗେ ନାହିଁ । ସମାଜସେବା ଦିଗରେ ଗୋଟାଏ କଥା ସ୍ପଷ୍ଟ ଜଣା ପଡୁଥାଏ । ତାହା ହେଉଛି ନାଁ କମେଇବା ଓ ସାମାଜିକ ସ୍ୱୀକୃତି ବା ମାନ୍ୟତା ହାସଲ କରିବା । ସମାଜସେବୀଙ୍କ ପାଇଁ ବିଭିନ୍ନ ପୁରସ୍କାର ଥାଏ ଓ ସେମାନଙ୍କର ସଂଖ୍ୟା କ୍ରମଶଃ ବଢୁଥାଏ । ଅର୍ଥାତ୍ ଜଣେ ସମାଜସେବୀ ଯଦି ଟିକିଏ ଭଲକାମ କରିଲା, ସେ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ହୋଇଯିବାକୁ ବେଶୀ ସମୟ ଲାଗେ ନାହିଁ । ଗାନ୍ଧୀବାଦୀ ହୁଅନ୍ତୁ କି ଖ୍ରୀଷ୍ଟିୟାନ୍ ମିଶନାରୀ ହୁଅନ୍ତୁ, ବାବା ହୁଅନ୍ତୁ କି ମାତା ହୁଅନ୍ତୁ, ସ୍ୱାମୀ ହୁଅନ୍ତୁ କି ମଠାଧୀଶ ହୁଅନ୍ତୁ, ସମସ୍ତେ ମନ କରିଥାଆନ୍ତି ଯେ ସେମାନେ ଲୋକପ୍ରିୟ ହୁଅନ୍ତୁ । ଜନସାଧାରଣ ଚୁମ୍ବକ, ଲୁହା ଟାଣିଲା ଭଳି ଆକର୍ଷିତ ହୁଅନ୍ତୁ । ଏଇଥି ପାଇଁ କେତେ କ'ଣ କରିବାକୁ ହୁଏ । ସ୍ୱେଚ୍ଛାସେବୀ ସଂଗଠନର ଉଦ୍ୟୋକ୍ତାମାନେ କୁଆଡେ ଲୋକମାନଙ୍କୁ ମିଛସତ କହି ଏକାଠି କରିଥାଆନ୍ତି । ମାଆମାନଙ୍କୁ ଶାଢୀ ଓ ବାପାମାନଙ୍କୁ ଧୋତି ବାଣ୍ଟନ୍ତି । ସାଧୁ ସନ୍ଥମାନେ ପ୍ରବଚନ ଦିଅନ୍ତି ଅଥବା ବିଭୂତି ବାଣ୍ଟନ୍ତି । ନେତାମାନେ କେତେ ପ୍ରକାର ଅଭିନୟ କରି ଲୋକଙ୍କ ମନକୁ କିଣନ୍ତି । ଏସବୁ ଦେଖି ଦେଖି ନିଜକୁ ଅପାଂକ୍ତେୟ କରିବାକୁ ମୁଁ ଦୃଢ ନିଷ୍ପତ୍ତି ନେଇଥିଲି । ନିଜକୁ ଲୁଚେଇ ରଖିବାର ଏକ ତୀବ୍ର ଇଚ୍ଛା ସବୁବେଳେ ଜାଗରିତ ହୋଇଥିଲା । ଗତ କେତେ ବର୍ଷଧରି କାଶୀପୁରରେ ଏହାକୁ ମୁଁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲି । ନିଜର ବୌଦ୍ଧିକ ଜିଜ୍ଞାସାକୁ ମୁଁ ମାରିଦେବାକୁ ଚାହିଁଥିଲି । ଗୋଟାଏ ଜୀବନ ଇତିହାସକୁ ମାଟିରେ ମିଶାଇ ଦେବାକୁ ପ୍ରୟାସ କରିଥିଲି । କିନ୍ତୁ ସଫଳ ହୋଇପାରିନଥିଲି ଏ ସମ୍ପର୍କରେ ।

ଏ ପୃଥିବୀରେ ଜଣେ ମଣିଷ ନିଜର ସ୍ମୃତି ଜାହିର କରିବାକୁ ହେଲେ ପାଞ୍ଚ ଜଣରେ ଜଣେ ହେବ ଓ ନିଜର ନିଜତ୍ୱ ବଜାୟ ରଖିବ । ଲୋକାରଣ୍ୟ ଭିତରେ ବି ସ୍ପଷ୍ଟ ଜାଣି ହେଉଥିବ ଏବଂ ଚିହ୍ନି ହେଉଥିବ । ତିଲୋନିଆରେ କର୍ମରତ ଥିବାବେଳେ ଶ୍ରୀ ବଙ୍କର ରାୟ ଗୋଟିଏ କଥା କହୁଥିଲେ - ତିଲୋନିଆ ସୋଜ୍ ଦି ୱେ (Tilonia Shows the Way) ଅର୍ଥାତ ତିଲୋନିଆ ସମସ୍ତଙ୍କୁ ବାଟ ଦେଖାଉଛି । ରିଡର୍ସ ଡାଇଜେଷ୍ଟ (Readers Digest) ପତ୍ରପତ୍ରିକାରେ ତାଙ୍କର ଅନେକ ଭଲ ଲେଖା ପ୍ରକାଶ ପାଉଥିଲା । ଦି ଷ୍ଟେଟ୍ସମ୍ୟାନ(The Statesman) ଆଦିରେ ସେ ନିୟମିତ ଲେଖୁଥିଲେ । ତିଲୋନିଆର ବିଭିନ୍ନ କାର୍ଯ୍ୟକ୍ରମ ଉପରେ ରିପୋର୍ଟମାନ ତିଆରି ହେଉଥିଲା ଓ ପ୍ରାମାଣିକ ଚିତ୍ର ସବୁ କରାଯାଉଥିଲା । ତିଲୋନିଆ ଗୋଟାଏ ସିମ୍ବଲ(Symbol), ଗୋଟାଏ ପ୍ରତୀକ । ବଙ୍କର ଏବଂ ତାଙ୍କର ସ୍ତ୍ରୀ ଅରୁଣା ଉଭୟେ ଖୁବ୍ ଜଣାଶୁଣା ଥିଲେ ଏ ଦେଶରେ । ପ୍ରତିଷ୍ଠିତ ଓ ଆଭିଜାତ୍ୟ ପାରିବାରରୁ ଆସିଥିଲେ । ବଙ୍କରଙ୍କର ପୂର୍ବ ପୁରୁଷ ଭିତରେ ଥିଲେ ପ୍ରଖ୍ୟାତ ଦେଶବନ୍ଧୁ ଶ୍ରୀ ଚିତ୍ତରଞ୍ଜନ ଦାସ । ଅଜାଥିଲେ ଡକ୍ଟର ବି.ଆର. ସେନ୍ ଓ ସେ ଇଣ୍ଡିଆନ୍ ସିଭିଲ୍ ସର୍ଭିସ ବା ଆଇ.ସି.ଏସ୍(ICS) ପାଇ ଆମେରିକାରେ ରାଷ୍ଟ୍ରଦୂତ ଓ ଜାତିସଂଘର ଖାଦ୍ୟ ଏବଂ କୃଷି ସଂଗଠନର ଡାଇରେକ୍ଟର ଜେନେରାଲ ପଦବୀରେ ଅଧିଷ୍ଠିତ ହୋଇଥିଲେ । ବଙ୍କର ବିଖ୍ୟାତ ଡୁନ୍ ସ୍କୁଲ ଓ ତା'ପରେ ସେଣ୍ଟ ଷ୍ଟିଫେନ୍ସ କଲେଜର ଅଧ୍ୟୟନ କରୁଥିଲେ । ଗାନ୍ଧୀ - ନେହେରୁ ପରିବାର ସହ ବେଶ୍ ସମ୍ପର୍କ । ସ୍ୱର୍ଗତ ରାଜୀବ ଗାନ୍ଧୀଙ୍କ ସମସାମୟିକ । ବଙ୍କର ଭାରତର ସ୍କ୍ୱାସ୍ (Squash) ଖେଳର ଜାତୀୟ ଚମ୍ପିୟାନ୍ । ଅରୁଣା ଆଇ.ଏ.ଏସ(IAS) ପାଇ ଚାକିରୀରୁ ଇସ୍ତଫା ଦେଇଥିଲେ । ଜଣେ ମାମୁଁ ଜେନେରାଲ୍ ସୁନ୍ଦରଜୀ ଏବଂ ଆଉ ଜଣେ ମାମୁଁ ଆଡ୍‌ମିରାଲ୍ । ନିଜେ ମାଡ୍ରାସର ବିଖ୍ୟାତ ସ୍କୁଲ କଳା କ୍ଷେତ୍ରରେ ରହି ଶ୍ରୀମତୀ ରୁକ୍‌ମଣୀ ଦେବୀ ଅରୁଣ୍ଡେଲଙ୍କ ଛାତ୍ରୀ ଥିଲେ । କଳା, ବିଜ୍ଞାନ, ସାହିତ୍ୟ, ସମାଜସେବା, ରାଜନୀତି, ସଂସ୍କୃତି ଆଦି ସବୁକ୍ଷେତ୍ରରେ ସେମାନେ ପରିଚିତ ଥିଲେ । ଉଭୟେ ଆମର ବିଶ୍ୱ ବିଦ୍ୟାଳୟର ଛାତ୍ର ଜୀବନରେ ଆଦର୍ଶ ନିଷ୍ଠିତ ଥିଲେ । ଏଣୁ ବଙ୍କର ଏବଂ ଅରୁଣାଙ୍କ ସାହାଯ୍ୟ ଓ ସଦିଚ୍ଛା ଥିବାରୁ ମୁଁ ତିଲୋନିଆ ସମୟରେ କେତେଜଣ ବିଖ୍ୟାତ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଥିଲି । ୧୯୮୦ ମସିହାରେ 'ଭାରତ ଦର୍ଶନ' ସମୟରେ ତିଲୋନିଆର କର୍ମୀ ଏବଂ ବଙ୍କର ଏବଂ ଅରୁଣାଙ୍କର ସହକର୍ମୀ ହିସାବରେ ମୋତେ ଜାଣିବା ପାଇଁ ଅନେକ ସୁଯୋଗ ମିଳିଥିଲା । ତିଲୋନିଆର ସମାଜ କାର୍ଯ୍ୟ ଏବଂ ଅନୁସନ୍ଧାନର ଶାଖା ଖୋଲିବାକୁ ତତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ସବୁ ପ୍ରଦେଶର ମୁଖ୍ୟମନ୍ତ୍ରୀମାନଙ୍କୁ ଚିଠି ଲେଖିଥିଲେ । ଶୁଣାଯାଏ ଯେ, ବଙ୍କର ଏବଂ ଅରୁଣାଙ୍କୁ ଶ୍ରୀମତୀ ଗାନ୍ଧୀ ଖୁବ୍ ସ୍ନେହ କରୁଥିଲେ । ଏଥିପାଇଁ ସେ ଦୁହେଁ ମଧ୍ୟ ଖୁବ୍ ଲୋକପ୍ରିୟ ହୋଇଥିଲେ ।

ମୁଁ ରାଜସ୍ଥାନର ତିଲୋନିଆରୁ କାଶୀପୁର ଆସିବା ବେଳେ ବଙ୍କର ଓ ଅରୁଣା ଓଡ଼ିଶାରେ ତାଙ୍କର ଅନେକ ବନ୍ଧୁ ଓ ଶୁଭେଚ୍ଛୁଙ୍କ ଠିକଣା ଦେଇ ଭେଟିବାକୁ କହିଥିଲେ । ତାଙ୍କର ଉପଦେଶ

ଥିଲା ଯେ କାଶୀପୁର ଭଳି ଅପନ୍ତରା ଅଞ୍ଚଳରେ ଜଣେ ଏକାକୀ ରହିପାରିବ ନାହିଁ । ଆବଶ୍ୟକ ରାଜନୈତିକ ଓ ପ୍ରଶାସନିକ ସମର୍ଥନ । ଷ୍ଟେଟ୍‌ସମ୍ୟାନ ଖବରକାଗଜରେ ବଙ୍କରଙ୍କ ଜଣେ ସମ୍ପର୍କୀୟ ଭାଇ ଶ୍ରୀ ସୁନନ୍ଦ ଦତ୍ତ ରାୟ ସମ୍ପାଦନା କାର୍ଯ୍ୟ କରୁଥାଆନ୍ତି । ତାଙ୍କ ପାଖକୁ ମୋ ବିଷୟ ଲେଖିଥିଲେ ଓ ମୋ ଲେଖା ସବୁ ବାହାର କରିବାକୁ ପ୍ରସ୍ତାବ ଦେଇଥିଲେ । ମୁଁ ଅବଶ୍ୟ କେବେହେଲେ ଲେଖିବାକୁ ସାହସ ସଞ୍ଚୟ କରିପାରିନଥିଲି ।

କାଶୀପୁରର ବିଭିନ୍ନ କାର୍ଯ୍ୟକ୍ରମରେ ଜନ ସହଭାଗିତା ବଢୁଥିବାରୁ କୌଣସି ନା କୌଣସି ବାଟରେ ପ୍ରଗତିବାଦୀର ସମ୍ପାଦକ ସ୍ୱର୍ଗତ ପ୍ରଦ୍ୟୁମ୍ନ ବଳଙ୍କ ପାଖରେ ଖବର ପହଞ୍ଚୁଥିଲା । ବିଶେଷ କରି ଗୋତିମୁକ୍ତି ଆନ୍ଦୋଳନ, ଶୋଷଣ ଅତ୍ୟାଚାରର ବିରୋଧରେ ଲଢ଼େଇ । ଆଦିବାସୀମାନଙ୍କ ସଂଗଠନ ଆଦି ଓଡ଼ିଶାରେ ସବୁଆଡେ ଲୋକେ ଜାଣନ୍ତୁ ବୋଲି ଆମର ଉପଦେଷ୍ଟା ଓ ଶୁଭେଚ୍ଛୁ ଶ୍ରୀଯୁକ୍ତ ଚିତ୍ତଭାଇ ତାଙ୍କୁ କୁଆଡେ କହିଥିଲେ । ପ୍ରଦ୍ୟୁମ୍ନ ବାବୁ ମୋତେ ଖୋଜୁଥିଲେ ଓ ଦେଖିଲା ମାତ୍ରକେ ପ୍ରଗତିବାଦୀରେ କିଛି କିଛି ଲେଖା ପ୍ରକାଶ କରିବାକୁ ଇଛା ପ୍ରକାଶ କରିଥିଲେ । କାଶୀପୁରରେ ଆମର କାର୍ଯ୍ୟକ୍ରମ ସହ ସାମିଲ୍ ହେବାକୁ ମଧ୍ୟ ଆଗ୍ରହ ଦେଖାଇଥିଲେ । ମୁଁ କିନ୍ତୁ ଲେଖା ଲେଖି ବିଷୟରେ ଖୁବ୍ ପଛରେ ଥିଲି । ମୋର ଦକ୍ଷତା ଭିତରେ କେବେ କେମିତି ବନ୍ଧୁମାନଙ୍କୁ ଚିଠି ଲେଖିବା ଅନ୍ତର୍ଭୁକ୍ତ ଥିଲା । କିନ୍ତୁ କାଶୀପୁର ବିଷୟରେ କିଛି କିଛି ଲେଖାଲେଖି କରିବା ମୋ ପକ୍ଷେ କେଜାଣି କାହିଁକି ଖୁବ୍ କଷ୍ଟକର ବ୍ୟାପାର ଥିଲା । ଆଜିକୁ ୨୫ବର୍ଷ ତଳେ ମୁଁ କିଛି ଲେଖିବା ଆରମ୍ଭ କରିଥିଲେ, ଆଜିର ସ୍ଥିତି ଆମ ପାଇଁ ଅନ୍ୟ କିଛି ନିଶ୍ଚିତ ହୋଇଥାଆନ୍ତା ।

ଆମର ସଫଳତା ଓ ବିଫଳତାର ଏକ ବିବରଣୀ ଦେବାକୁ ଓ ଆମେ କିପରି ସଂଘର୍ଷମୟ ସ୍ଥିତି ଦେଇ ଗତି କରୁଛୁ ତାହା ଜାଣିବାକୁ ଆମର ବାର୍ଷିକ ରିପୋର୍ଟ ଲେଖାଯାଇ ପ୍ରକାଶ କରାଯାଉଥିଲା । ରିପୋର୍ଟରେ କାର୍ଯ୍ୟକ୍ରମ ସହ ଆର୍ଥିକ ବିବରଣୀ ମଧ୍ୟ ଦିଆଯାଇଥିଲା । ସେସବୁ ସ୍ୱଚ୍ଛତା ଓ ଉତ୍ତରଦାୟିତ୍ୱତାର ସଙ୍କେତ ଥିଲା । ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଭିତରେ କେଜାଣି କାହିଁକି ଆମର ପରିଚୟ ବାରି ହୋଇଯାଉଥିଲା । କାଶୀପୁର ଭଳି ଦୁର୍ଗମ ଅଞ୍ଚଳରେ କାମ କରିବା, ଲୋକମାନଙ୍କ ଭିତରେ ସଂଗଠନ ଆଦି ସୃଷ୍ଟି କରିବା ଓ ଆଦର୍ଶବାଦୀ ହୋଇ ପାରିବା ଆମର ସମ୍ଭବତଃ ବିଶେଷ ପରିଚୟ ଥିଲା । ଏହା ମଧ୍ୟ ଆମର ସ୍ୱତନ୍ତ୍ର ଥିଲା । ଏଇଥିପାଇଁ ଅନେକ ଆମକୁ ଜାଣିଥିଲେ ଓ ମୋର ନେତୃତ୍ୱ ପ୍ରତି ଆକୃଷ୍ଟ ହୋଇଥିଲେ । ରେଭେନ୍‌ସା କଲେଜର ଜଣାଶୁଣା ଅନେକ ବନ୍ଧୁ ମଧ୍ୟ ଆମକୁ ଭାରତରେ ପରିଚିତ କରିବାକୁ ଯଥାସାଧ୍ୟ ଉଦ୍ୟମ କରିଥିଲେ । ସେମାନେ କାଶୀପୁର ମଧ୍ୟ ଆସୁଥିଲେ । କିନ୍ତୁ ଗଣମାଧ୍ୟମରେ ଆମର ବିରୋଧ ଗୋଷ୍ଠୀ ବେଶ୍ କିଛି ଅପପ୍ରଚାର ଚଳାଇଥିଲେ । ଏହା ଆମକୁ ଲୋକଙ୍କ ପାଖରେ ପହଞ୍ଚାଇଥିଲା । ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀଙ୍କ ପ୍ରବଳ ଚେଷ୍ଟା ଥିଲା ଯେ ଛେଳିକୁ ତିନିତୁଣ୍ଡରେ କୁକୁର କରିଲା ଭଳି ଆମକୁ ବଦ୍‌ନାମ କରିବାର ଅପଚେଷ୍ଟା ଚାଲିଥିଲା । କାଶୀପୁରର କେତୋଟି ନିର୍ଦ୍ଦିଷ୍ଟ ପରିବାର ଓ ସେମାନଙ୍କର ସମର୍ଥକ ରାୟଗଡ଼ାର କେତୋଟି

ରାଜନୈତିକ ପରିବାରଙ୍କ ଏକମାତ୍ର ଉଦ୍ଦେଶ୍ୟ ଥିଲା ଯେ 'ଅଗ୍ରଗାମୀ' (ସେ ସମୟର ସମାଜ କାର୍ଯ୍ୟ ଏବଂ ଅନୁସନ୍ଧାନ କେନ୍ଦ୍ର) କାଶୀପୁରରୁ ଓହରିଯାଉ । ଆମର ଉଦ୍ୟମ ଥିଲା ଯେ ଆମେ ନିଜର ସ୍ଥିତି କାଶୀପୁରରେ ଦୃଢ଼ କରିବୁ । ସେତେବେଳେର ପ୍ରଶାସନ, ରାଜନୈତିକ ନେତୃତ୍ୱ ଆମକୁ ଚିହ୍ନି ସାରିଥିଲା । ନ ରହିଁଲେ ବି ଅନେକ ଲୋକ ଦେଶବିଦେଶରେ ଆମକୁ ଜାଣି ପାରିଥିଲେ । ସେମାନଙ୍କର ସକ୍ରିୟ ସମର୍ଥନ ଆମକୁ ଶକ୍ତିଶାଳୀ କରିବାରେ ଅନେକ ସାହାଯ୍ୟ କରିଥିଲା ।



# ୩୭

୧୯୮୪ ମସିହାରେ ଅପ୍ରେଲ ମାସରେ ମୁଁ ସସ୍ତ୍ରୀକ ହଲାଣ୍ଡର ଦି ହେଗ୍ ସହରରେ ପହଞ୍ଚିଥିଲି । ଆମେ ଦୁହେଁ (ବିଦ୍ୟା ଓ ମୁଁ) ସେଠାକର ବିଖ୍ୟାତ ଶିକ୍ଷା ପ୍ରତିଷ୍ଠାନ ଇନ୍‌ଷ୍ଟିଚ୍ୟୁଟ ଅଫ ସୋସିଆଲ ଷ୍ଟଡିଜ୍ (Institute of Social Studies)ରେ ଅଧ୍ୟୟନ କରିବା ପାଇଁ ମନୋନୀତ ହୋଇଥିଲୁ । ପହଞ୍ଚିବାର ପ୍ରଥମ ସପ୍ତାହରେ ବିଦ୍ୟାକୁ ଭୀଷଣ ଜ୍ୱର ହେଲା । ଇନ୍‌ଷ୍ଟିଚ୍ୟୁଟରେ ଡାକ୍ତର ଚୀନ ଦେଶର ବଂଶୋଦ୍ଭବ ଥିଲେ । ଜ୍ୱର ପାଇଁ ରକ୍ତ ପରୀକ୍ଷା କରିବାକୁ ପଡିଲା ଓ ମ୍ୟାଲେରିଆ ବୋଲି ଜଣାପଡିଲା । ଡାକ୍ତର ଆମ ଦୁହିଁଙ୍କୁ ଡାକି ପ୍ରଥମ ସାକ୍ଷାତରେ ପଚରା ଉଚୁରା କରିଲେ ଆମେ କେଉଁଠୁ ଆସିଛୁ ଓ ଏଇଭଳି ଜ୍ୱର ଆଗରୁ ବିଦ୍ୟାକୁ ହୋଇଥିଲା କି ନାହିଁ । ରକ୍ତ ପରୀକ୍ଷା ରିପୋର୍ଟ ପହଞ୍ଚିବା ପୂର୍ବରୁ ସେ ଓଡ଼ିଶା ଓ କୋରାପୁଟ ଜିଲ୍ଲାର ରୋଗ ବେମାର ବିଷୟରେ ଅଧ୍ୟୟନ କରି ଆମକୁ କେତେକ ଚମକପ୍ରଦ ତଥ୍ୟ ଦେଇଥିଲେ । ସେ କହିଥିଲେ ଯେ ଆମକୁ ସତର୍କ ରହିବାକୁ ହେବ । ଏ ରୋଗ ବିଷୟରେ ନାତିଦୀର୍ଘ ଭାଷଣଟିଏ ଦେଇଥିଲେ । ଆହୁରି ମଧ୍ୟ କହିଥିଲେ ଯେ (Rotordam) ଟ୍ରପିକାଲ୍ ବା କ୍ରାନ୍ତୀୟ ଅଞ୍ଚଳର ରୋଗ ଉପରେ ଏକ ବିଶ୍ୱବିଖ୍ୟାତ ଗବେଷଣା ପ୍ରତିଷ୍ଠାନ ରହିଛି । ହଲାଣ୍ଡବାସୀ ସାରା ପୃଥିବୀକୁ ବାଣିଜ୍ୟ ବେପାର ପାଇଁ ଯାଉଛନ୍ତି ଓ ବିଭିନ୍ନପ୍ରକାର ସଂକ୍ରାମକ ରୋଗରେ ପୀଡିତ ହେଉଛନ୍ତି । ଅନେକ ମରୁଛନ୍ତି ମଧ୍ୟ । ସେଥିପାଇଁ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଟ୍ରପିକାଲ ମେଡିସିନ୍ (Institute of Tropical Medicine) ମ୍ୟାଲେରିଆ ଭଳି ସଂକ୍ରାମକ ରୋଗର ନିରାକରଣ ପାଇଁ ଅନେକ ଦିନରୁ ପ୍ରୟାସ କରି ଆସୁଛି । ସେ କହୁଥିଲେ ଯେ ଆଫ୍ରିକା, ଏସିଆ ଓ ଦକ୍ଷିଣ ଆମେରିକାରେ ଲକ୍ଷ ଲକ୍ଷ ଲୋକ ମ୍ୟାଲେରିଆରେ ମରୁଛନ୍ତି । ୟୁରୋପ ଓ ଯୁକ୍ତରାଷ୍ଟ୍ର ଆମେରିକା ଆଦି ଦେଶମାନଙ୍କରେ ମ୍ୟାଲେରିଆ ନିରାକରଣ କରାଯାଇଛି ସତ, କିନ୍ତୁ ସଂକ୍ରମଣ ହେବାର ଅନେକ ଆଶଙ୍କା ରହିଛି । ଚୀନା ଡାକ୍ତରଙ୍କ ଉପଦେଶ ମେଡିସିନ୍ ଭଳି ଥିଲା । ବିଦ୍ୟା ପ୍ରାୟ ଗୋଟାଏ ସପ୍ତାହ ଜ୍ୱର ଓ ବାନ୍ତି ଯୋଗୁଁ ବହତ କଷ୍ଟ ପାଇଲା । ହଲାଣ୍ଡର ବନ୍ଧୁମାନେ ବହୁତ ସାହାଯ୍ୟ କରିଥିଲେ ଆମ ଦୁହିଁଙ୍କୁ । ସେ ମ୍ୟାଲେରିଆ ଆକ୍ରମଣ ଦ୍ୱାରା ଆମ ମନରେ ଚେତା ପଶିଲା ।

କାଶୀପୁରର ଡାକ୍ତର ବନ୍ଧୁ ଗନ୍ଧର୍ବ ରାୟ ଓ ପରେ ଡାକ୍ତର ଚୌଧୁରୀ ଆମକୁ ମ୍ୟାଲେରିଆ କଥା କହୁଥିଲେ ବାରମ୍ବାର । ମୁଁ କିନ୍ତୁ ଶୁଣୁ ନଥିଲି । କାଶୀପୁରର ଗାଁମାନଙ୍କରେ ମୁକ୍ତାକାଶ ତଳେ ଶୋଇବା ମୋର ଏକ ଜିଦ୍ ଥିଲା । ବିଶେଷ କରି ଖରାଦିନେ ଖୁବ୍ ଭଲ ଲାଗୁଥିଲା । ଆଦିବାସୀ ଗାଁରେ ଲୋକମାନେ ଖଟଟିଏ ପକାଉ ଥିଲେ । ମୋତେ ଘେରି ଅନ୍ୟମାନେ ଶୋଉଥିଲେ । କେତେବେଳେ ଗାଁର ଗୁଡିଘର ବା କୁଟୁମ୍ବ ଘରେ ବେଳେବେଳେ ଶୋଇବାକୁ

ପଡୁଥିଲା । ଅଥବା କାହାର ବାରଣ୍ଡାରେ । ଆଦିବାସୀ ଘରକୁ ପଶିଲା ବେଳେ ଦ୍ୱାର ମୁହଁରେ ଗାଈ, ମଇଁଷି ଏବଂ ଛେଳି ଆଦି ବନ୍ଧା ହୋଇଥାଏ । ଘୁଷୁରି ଥିଲେ ତାହା ଆଉ ଏକ ସମସ୍ୟା । ଶୀତଦିନେ ଘର ଭିତରେ ଶୋଇବାକୁ ପଡୁଥିଲା । ଦିଲ୍ଲୀର ମୋହନ ସିଂ ପ୍ଲେସ୍‌ରୁ ମୁଁ ଗୋଟାଏ ସେକେଣ୍ଡ ହାଣ୍ଡ ସ୍ଲିପିଙ୍ଗ ବ୍ୟାଗ୍ କିଣିଥିଲି । ତାହାକୁ ମୋଟାମୋଟି ବ୍ୟବହାର କରୁଥିଲି । ଘୋଡିଘାଡି ହୋଇ ଶୋଇବା ଦ୍ୱାରା ମୋତେ କେତେ ବର୍ଷଧରି ମ୍ୟାଲେରିଆ ହୋଇନଥିଲା । କିନ୍ତୁ ଡାକ୍ତରମାନେ କହୁଥିଲେ ଯେ ମ୍ୟାଲେରିଆ ନିରାକରଣ ପାଇଁ ଡି.ଡି.ଟି(DDT) ପକାଇବା କାର୍ଯ୍ୟକ୍ରମ ଚାଲିଥିବା ହେତୁ ମ୍ୟାଲେରିଆର ପ୍ରାଦୁର୍ଭାବ କମିଛି । କାରଣ ମଶାମରା ଅଭିଯାନ ବ୍ୟାପକ କରାଯାଇଛି ।। ମୁଁ ଆଗରୁ କାଶୀପୁରର ମ୍ୟାଲେରିଆ ରୋଗର ବିଭୀଷିକା ଶୁଣିଥିଲି । କେତେ ଲୋକଙ୍କର ଯେ ପ୍ରାଣ ଯାଇଛି କହି ହେବ ନାହିଁ । କିନ୍ତୁ ଆଦିବାସୀଙ୍କ ଭିତରେ ଗୋଟାଏ ପ୍ରକାର ନିରୋଧକ ଶକ୍ତି ରହିଛି ବା ସେ କିଛି ଦେଶୀ ଔଷଧ ଖାଉଛନ୍ତି । କିନ୍ତୁ ମ୍ୟାଲେରିଆ ପାଇଁ ଡାକ୍ତର ଓ ସ୍ୱାସ୍ଥ୍ୟକର୍ମୀମାନେ କ୍ଲୋରୋକୁଇନ୍ (Chloroquin) ବଟିକା ଗାଁରେ ଗାଁରେ ବାଣ୍ଟୁଥାଆନ୍ତି । କୋରାପୁଟ ଅଞ୍ଚଳରେ ମ୍ୟାଲେରିଆ ଜୀବାଣୁ ମୁଖ୍ୟତଃ ଦୁଇପ୍ରକାର ଦେଖା ଦେଇଥାଆନ୍ତି - ପ୍ଲାସ୍ ମୋଡିଅମ୍ ଭାଇଭାକ୍ସ (Plasmodium Vivax) ଏବଂ ଫାଲ୍‌ସି ଫାରମ୍ (Falciparum) । ଅନ୍ୟ ଦୁଇପ୍ରକାର ମ୍ୟାଲେରିଆ ଜୀବାଣୁ ମ୍ୟାଲେରିଆ (Malariae) ଏବଂ ଓଭାଲେ (Ovale) କୁଆଡେ କାଁ ଭାଁ ବଣାଘାଟିରେ ଥାଇ ପାରନ୍ତି ବୋଲି ଏକ ଗବେଷଣାରୁ ଜଣା ପଡିଛି ବୋଲି ମୋର ଡାକ୍ତର ବନ୍ଧୁମାନେ ସତର୍କ କରିଦିଅନ୍ତି ।

ମ୍ୟାଲେରିଆରେ ପଡିବା ଓ କ୍ୱିଇନାଇନ୍ ବଟିକା ଖାଇବା ଏକ ଅସାଧାରଣ ଅନୁଭୂତି । ଶୋଇଲା ବେଳେ ମଶାରି ଟାଙ୍ଗିବା କେବଳ ନିଜ ବାସଗୃହରେ ସମ୍ଭବ । ଗାଁରେ ରାତ୍ରିଯାପନ କରିଲେ ମଶାରି ନେବା ସହଜ ନୁହେଁ । ଏଥିପାଇଁ ମ୍ୟାଲେରିଆ ପ୍ରତିରୋଧକ ନେବାକୁ ପଡିବ । କେହି କେହି ବନ୍ଧୁ କ୍ଲୋରୋକ୍ୱିଇନ୍ ବଟିକା ହୋମିଓପ୍ୟାଥିକ ବା ଆର୍ଯ୍ୟୁର୍ବେଦ ଔଷଧ ନେବାକୁ କହିଥିଲେ । କିଏ କହିଲା ହୋମିଓପ୍ୟାଥିକର ଚାଇନା ବା ସଲ୍‌ଫର ଖାଇବା ପାଇଁ । ଆଉ କିଏ କହିଲା ରସୁଣକୁ ଘିଅରେ ଭାଜି ନିୟମିତ ନେବା ପାଇଁ । ଆଉ କିଏ କହିଲା ଗଙ୍ଗଶିଉଳି ରସ ବା ଭୂଇଁ ନିମ୍ବ ରସ ପିଇବାକୁ । ସବୁ ଔଷଧର ପ୍ରଭାବ ଶରୀର ଉପରେ ପଡିବାର ଆଶଙ୍କା ଥିଲା । ଏଥିପାଇଁ ମୁଁ ସବୁକଥା ଶୁଣିଥିଲି ଓ ନିରବ ରହୁଥିଲି । ଯଦି ଆଦିବାସୀ କାଶୀପୁରରେ ମ୍ୟାଲେରିଆ ସମ୍ଭାଳି ପାରୁଛନ୍ତି, ତେବେ ମୁଁ କାହିଁକି ନିଜକୁ ପ୍ରସ୍ତୁତ କରିପାରିବି ନାହିଁ । ଆଗରୁ ଥରେ ୧୯୭୮ ମସିହାରେ ପାଇକମାଳରେ ରହିବା ସମୟରେ ଥରେ ଜ୍ୱର ହୋଇଥିଲା । ଔଷଧ ଖାଇବା ଦ୍ୱାରା ଏହା ଖୁବ୍ ଶୀଘ୍ର ଭଲ ହୋଇଯାଇଥିଲା । ମୁଁ ଅଯଥାରେ ଚିନ୍ତିତ ନଥିଲି ମ୍ୟାଲେରିଆ ପାଇଁ । କିନ୍ତୁ କାଶୀପୁରରେ ଧୀରେ ଧୀରେ ଭାଇଭାକ୍ସ (Vivax) ଜୀବାଣୁ ପରିବର୍ତ୍ତେ ଫାଲ୍‌ସିପାରମ୍ (Falciparum) ଜୀବାଣୁ ବେଶି ଲୋକଙ୍କୁ ଆକ୍ରମଣ କରିଲା । ଯେଉଁ ଦିନ ମୋ ଦେହରେ ଜ୍ୱର ଆସିଲା ଓ ରକ୍ତ ପରୀକ୍ଷାରୁ ଫାଲ୍‌ସିପାରମ ଜୀବାଣୁର ମ୍ୟାଲେରିଆ ଜଣାପଡିଲା, ଡାକ୍ତର ଚୌଧୁରୀ ନିଜେ

ବ୍ୟକ୍ତିଗତ ଭାବେ ଆସି ମୋତେ ତାଙ୍କ ଆଗରେ ଔଷଧ ଖାଇବାକୁ କହିଲେ । ସେ କହିଲେ ଯେ ସାମାନ୍ୟ ବ୍ୟତିକ୍ରମ ହେଲେ ଜୀବନ ଚାଲିଯିବ । ମୋତେ ବୁଝାଇ କହିଲେ ଯେ ଫାଲ୍‌ସିପାରମ୍ ଜୀବାଣୁ ମସ୍ତିଷ୍କକୁ ଆକ୍ରମଣ କରେ । ତୁରନ୍ତ ଚିକିତ୍ସା ନକଲେ, ରୋଗୀ 'କୋମା' ରେ ପଡିଯାଏ । ସେତେବେଳେ ବଞ୍ଚିଇବା ବହୁତ କଷ୍ଟ ହୋଇପଡେ ଓ ମୃତ୍ୟୁ ଅବଶ୍ୟମ୍ଭାବୀ ହୋଇଯାଏ । ଓଡ଼ିଶା ତଥା ଭାରତର ବିଭିନ୍ନ ମ୍ୟାଲେରିଆ ପ୍ରବଣ ଅଞ୍ଚଳରେ ମସ୍ତିଷ୍କ ଜ୍ୱର ବା ସେରିବ୍ରାଲ୍ ମ୍ୟାଲେରିଆ (Cerebral Malaria)ରେ ଶହ ଶହ ଲୋକଙ୍କ ମୃତ୍ୟୁ ହେଉଛି ବୋଲି ବିଭିନ୍ନ ସୂତ୍ରରୁ ଜଣାପଡିଛି । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ ଓ ସ୍ୱାସ୍ଥ୍ୟ ମନ୍ତ୍ରଣାଳୟରୁ ବିଭିନ୍ନ ଉଦ୍ୟମ କରାଯାଇଛି ଓ ଭେକ୍ଟର କଣ୍ଟ୍ରୋଲ କେନ୍ଦ୍ର (Vector Control Centre) ସବୁ ଖୋଲାଯାଇଛି ଦେଶସାରା । ମ୍ୟାଲେରିଆ କମି ନାହିଁ । ଆଉଥରେ ପୁଣି କାଶୀପୁର ସମେତ ବିଭିନ୍ନ ଅଞ୍ଚଳକୁ ବ୍ୟାପିବାରେ ଲାଗିଛି । କାଶୀପୁରରେ ପ୍ରଥମ ତିନିଚାରି ବର୍ଷର ନିରାପଦ ରହଣି ପରେ ମୋତେ ମ୍ୟାଲେରିଆ ହେବା କାହାକୁ ଆଶ୍ଚର୍ଯ୍ୟ କରିନଥିଲା ।

ମୁଁ ଔଷଧ ଖାଇଲାକ୍ଷଣି ମୁଣ୍ଡ ବୁଲାଇବା ଓ ବାନ୍ତି କରିବା ଜନିତ ଯନ୍ତ୍ରଣାରେ ଅଥୟ ହୋଇଯାଏ । ଡାକ୍ତର କହନ୍ତି ବାନ୍ତି ନିରୋଧକ ମେଡିସିନ୍ ଖାଇବାକୁ ହେବ । କ୍ଲୋରୋକୁଇନ୍ ବା ପ୍ରାଇମାକୁଇନ୍ ସହ ଭିଟାମିନ୍ ନେବାକୁ ହବ । ଦରକାର ହେଲେ ଆଣ୍ଟିବାଇଓଟିକ୍ ମିଶାଇବାକୁ ହେବ । ପଇଡ ପାଣି ଓ ଗ୍ଲୁକୋଜ ପାଣି ପିଇବାକୁ ହେବ । ଜଣ୍ଡିସ୍ ରୋଗ ହେବାର ଡର ଥାଏ । ଜ୍ୱର ଛାଡିଗଲା ପରେ ଖୁବ୍ ଦୁର୍ବଳ ଲାଗେ । କ୍ଲୋରୋକୁଇନ୍ ବଟିକାର ଯେଉଁ କୁ ପ୍ରଭାବ ଥାଏ ତାହା ଜଣେ ଅଙ୍ଗେ ନନିଭାଇଲେ ଜାଣିପାରିବ ନାହିଁ । ଆଖିକୁ ଝାପ୍‌ସା ଦେଖାଯାଏ । ମାନସିକ ସ୍ତରରେ ଖୁବ୍ ଅସ୍ଥିରତା ଆସେ । ଖାଇବାକୁ ମନ ଲାଗେନାହିଁ । ବିଦ୍ୟା ମୋ ପାଇଁ ଗ୍ଲୁକୋଜ୍ ଲେମ୍ବୁପାଣି କରିଦିଅନ୍ତି । ଦୁଗ୍ଧ ପିଇବାକୁ ବାଧ କରନ୍ତି । ପାଟିକୁ ଅରୁଚି ଲାଗୁଥିବାରୁ ସୁପ୍ କରିଦିଅନ୍ତି । ମୁଁ କିନ୍ତୁ ମ୍ୟାଲେରିଆରେ ପଡିଲେ ପ୍ରାୟ ଦଶଦିନ ଶଯ୍ୟାଶାୟୀ ହୋଇଯାଏ । ଦଶଦିନର କର୍ମଚଞ୍ଚଳତାରେ ଭଟ୍ଟା ପଡ଼ିଯାଏ । ଅସ୍ଥିରତା ଓ ଦୁର୍ବଳତା ଜନିତ ମାନସିକ ଚାପରୁ ରକ୍ଷା ପାଇବା ପାଇଁ ଦୁଇ ତିନୋଟି ପ୍ରକାରର ବହି ପଢ଼େ । ମୋ ପାଖରେ ଥାଏ ଜୀମ୍ କର୍ବେଟଙ୍କର ବହି ସବୁ - ମ୍ୟାନଇଟରସ୍ ଅଫ କୁମାୟୁନ୍ (Maneaters of Kumayun). ମୋ ଭାରତ (My India) , ଟ୍ରୀ ଟପ୍ (Tree Top), ଜଙ୍ଗଲ ଲୋର (Jungle Lore) ସେ ସବୁକୁ କେତେ ବାର ପଢିଯାଏ । ଆହୁରି ଥାଏ ଆଷ୍ଟେରିକ୍‌ସ (Asterix) କମିକ୍‌ସ୍ ବହି । ତାକୁ କେତେଥର ପଢିଯାଏ । ଆଉ ଶୁଣେ ସଂଗୀତ କାନରେ ଇୟରଫୋନ୍ ଲଗାଇ । କାହା ସହ କଥାବାର୍ତ୍ତା ହୁଏ ନାହିଁ । ଦଶଦିନର ମାନସିକ ଓ ଶାରୀରିକ ନିର୍ଯ୍ୟାତନା ମୁଁ ଏଇଭଳି ସହିଯାଏ ।

ଆମର ଯେଉଁ କର୍ମୀମାନେ ଦୁର୍ଗମ ଫିଲ୍ଡ଼ ସେଣ୍ଟରମାନଙ୍କରେ ରହୁଥାଆନ୍ତି, ସେମାନଙ୍କ ପାଖରେ ମ୍ୟାଲେରିଆ ବଟିକା ସହ ଆନୁସଙ୍ଗିକ ଔଷଧ ରଖିବାକୁ ନିର୍ଦ୍ଦେଶ ଦେଇଥାଏ । ମ୍ୟାଲେରିଆ ଜ୍ୱର ପ୍ରବଳ ହେଲେ କେତେଜଣଙ୍କୁ ରାୟଗଡ଼ାରେ ଉତ୍ତମ ଚିକିତ୍ସା ପାଇଁ

ସ୍ଥାନାନ୍ତର କରାଯାଏ । ରାୟଗଡ଼ାରେ ମ୍ୟାଲେରିଆ ଜ୍ୱରର ଚିକିତ୍ସା ପାଇଁ ଅନେକ ରୋଗୀ ଭରି ଯାଆନ୍ତି । ରାୟଗଡ଼ାକୁ ରୋଗୀ ବୋହିବା ପାଇଁ ଆମର ଗାଡି ସବୁବେଳେ ବ୍ୟବହାର କରିବାକୁ ହୋଇଥାଏ ।

କାଶୀପୁରରେ ଏକଦା ସାହୁକାର, ମଣିଷ ଖିଆ ବାଘ ଓ ମ୍ୟାଲେରିଆ ଆଦିବାସୀମାନଙ୍କୁ ଯେ ମାରି ସାରିଛି ଅନେକ କାହାଣୀ ସତ୍ୟ ବୋଲି ପ୍ରମାଣିତ ହୋଇଥାଏ । କୋରାପୁଟରେ ଥିବା ଜିଲ୍ଲା ପ୍ରଶାସନକୁ ମୁଁ ସତର୍କ କରିଦିଏ ଯେ ମ୍ୟାଲେରିଆ ନିରାକରଣ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ହେବ । ଗୋଟାଏ ଜିଲ୍ଲା ଏଭଳି ଭୟାନକ ଭାବେ ଆକ୍ରାନ୍ତ ହେବା କଥା ନୁହେଁ । କି ପଦକ୍ଷେପ ନିଆଯିବା ଉଚିତ ମୁଁ ତାହା କଳ୍ପନା କରିପାରିନଥିଲି ।



# ୩୪

ଆଦର୍ଶବାଦୀ ସ୍ୱପ୍ନ ଆମର ସମ୍ଭବ ହେବ ବୋଲି କାଶୀପୁରରେ ଗୋଡ ରଖିଲା ଦିନଠାରୁ ମୁଁ ଭାବି ଆସୁଛି । ଏକାଠି ଖାଇବା, ଏକାଠି ଶୋଇବା, ସବୁ କିଛି ଗୋଟାଏ କୁଟୁମ୍ବ ବୋଲି ବିଚାର କରିବା ଓ ସମାନତା ଭାବକୁ ମାନ୍ୟତା ଦେବା ଆମର ଆନ୍ତରିକ ଉଦ୍ଦେଶ୍ୟ ଥିଲା । ଚୀନ ଦେଶରେ 'କମ୍ୟୁନ୍' (commune) ଏବଂ ଇସ୍ରାଏଲ୍‌ର କିବ୍‌ବୁତ୍‌ସ (kibbutz) କଥା ମୁଁ ଅନେକ ଦିନରୁ ପଢିଥିଲି । ସେଇ ଢ଼ାଞ୍ଚାରେ କାଶୀପୁରରେ ଆମର ବସବାସ ନିର୍ଦ୍ଧାରଣ କରିବା ଠିକ୍ ହେବବୋଲି ମୋର ସହକର୍ମୀମାନଙ୍କୁ ବୁଝାଇଥିଲି । କାହାର ମନରେ କ'ଣ ବିଚାର ଥିଲା ମୁଁ ଜାଣିନାହିଁ, କିନ୍ତୁ ସମସ୍ତେ ସହମତି ପ୍ରଦାନ କରିଥିଲେ । ଏଥି ପାଇଁ ଆମର ବ୍ୟକ୍ତିଗତ ସମ୍ପତ୍ତି ପ୍ରାୟ କିଛି ନଥିଲା । ଆମେ ଗୋଟାଏ ମେସ୍ ଆରମ୍ଭ କରିଥିଲୁ ଓ ସେଠାରେ ସମସ୍ତେ ଭୋଜନ କରୁଥିଲୁ । ସମସ୍ତେ ପ୍ରାୟ ସମାନ ଦରମା ନେଉଥିଲୁ । ସବୁ ଦାୟିତ୍ୱ ସମବଣ୍ଟନ କରିବାକୁ ନିଷ୍ପତ୍ତି ନେଇଥିଲୁ । ମୁଁ ଆମ ଟିମ୍‌ର ସବୁଠାରୁ ବୟସ୍କ ଲୋକ ହୋଇଥିବାରୁ, ମୋତେ ବେଶି ଦାୟିତ୍ୱ ନେବାକୁ ପଡୁଥିଲା । ଆମକୁ ରୋଷେଇ କରି ଖାଇବାକୁ ଦେଉଥିଲେ ଦିନୁ ଓ ଅଲ୍‌ମାଇ । ଦୁହେଁ ସ୍ୱାମୀ-ସ୍ତ୍ରୀ ଆମକୁ ଠିକ୍ ସମୟରେ ଖାଦ୍ୟ ପରଷୁଥିଲେ । ଅଲ୍‌ମାଇ ଆଦିବାସୀ ମହିଳା କିନ୍ତୁ ଗୁଣରେ ଦେବୀ ଭଳି ପୂଜ୍ୟା । କେବେ ସେ ଥକି ଯିବାଭଳି ଲାଗେ ନାହିଁ । ଦିନସାରା ଚା କଫି ତିଆରି ଚାଲିଥାଏ । ଆମେ ଆମ ଘରମାନଙ୍କରେ ତାଲା ଦେବାର ଆବଶ୍ୟକତା କେବେ ଅନୁଭବ କରୁନଥିଲୁ । ଆମର ହିସାବପତ୍ର ସବୁ ଅଲ୍‌ମାଇ ପାଖରେ । ତାକୁ ଟଙ୍କା ବାକ୍ସର ଦାୟିତ୍ୱ ମଧ୍ୟ ଆମେ ଦେଇଥିଲୁ । ସବୁ ଏକାଠି ବସି ଖାଉଥିଲୁ । ନିଜ ନିଜର ବାସନ ସଫା କରୁଥିଲୁ । କେହି ଦୂର ଗାଁକୁ ରାତ୍ରି ସ୍କୁଲ ପରିଦର୍ଶନରେ ଗଲାବେଳେ, ଫେରିଲା ପର୍ଯ୍ୟନ୍ତ ଅପେକ୍ଷା କରୁଥିଲେ । ସମସ୍ତେ ଏକାଠି ହେଲେ ଖାଦ୍ୟ ପରଷିବା ଆରମ୍ଭ ହେଉଥିଲା । ବନ୍ଧୁତାର ଏହା ଥିଲା ଚରମ ନିଦର୍ଶନ ।

ଆମ ଭିତରୁ ପ୍ରଥମେ ଭାଗିରଥୀ ବିବାହ କରିଲା । ବାଲେଶ୍ୱରରେ ତା'ର ଘର । ତା'ର ସ୍ତ୍ରୀ ମଧ୍ୟବିତ୍ତ ପରିବାରର ଝିଅ । ସେମାନେ ଦୁହେଁ କାଶୀପୁର ଆସି ରହିଲା ପରେ ଆମ ପରିବାର ବଢିବାରେ ଲାଗିଲା । ସେମାନଙ୍କ ପାଇଁ ସ୍ୱତନ୍ତ୍ର କୋଠରିର ବ୍ୟବସ୍ଥା କରାଗଲା । ଆମେ ଲକ୍ଷ୍ୟ କରିଲୁ ଯେ ସେମାନେ ବାହାରକୁ ଗଲେ ଘରେ ତାଲା ଦେଇ ଯାଉଛନ୍ତି । ଆମ ସମସ୍ତଙ୍କୁ ଏହା ଖୁବ୍ ଆଶ୍ଚର୍ଯ୍ୟ କରିଥିଲା ପ୍ରଥମେ ପ୍ରଥମେ । ପରେ ତାହା ଦେହସୁହା ହୋଇଗଲା । ଭାଗିରଥୀ ସଫେଇ ଦେଲା ଯେ ତାର ସ୍ତ୍ରୀର ଗହଣା ସେ ସାଙ୍ଗରେ କାଶୀପୁର ଆଣିଛି । ତାହା ଖୋଲା ଛାଡିବା ନିରାପଦ ନୁହେଁ । କଥାର ଗୁରୁତ୍ୱ ମୁଁ ବୁଝିବାକୁ ଚେଷ୍ଟା

କରିଲି ଓ ଏଥିରେ ଅନ୍ୟ ସହକର୍ମୀମାନଙ୍କର ନାକ ଟେକିବା ବନ୍ଦ କରାଇଲି । କିନ୍ତୁ ଅଗ୍ରଗାମୀରେ କେଉଁଠି ତାଲା ପଡୁନାହିଁ ଅଥଚ ଗୋଟିଏ କୋଠରିରେ ତାଲା ଝୁଲୁଛି, ତାହା ଗୋଟାଏ ସ୍ୱାଭାବିକ ବ୍ୟତିକ୍ରମ ଥିଲା । ମୁଁ ଦିଲ୍ଲୀ, ଭୁବନେଶ୍ୱର ବା ତିଲୋନିଆ ଯଦି ୧୦-୧୫ ଦିନ ପାଇଁ ଯାଉଥିଲି, ତେବେ ଚେକ୍ ବହିରେ କେତେଗୁଡ଼ିଏ ଦସ୍ତଖତ କରିଦେଇଯାଉ । ସେପର୍ଯ୍ୟନ୍ତ ମୋର କେବେ କାହା ଉପରେ ସନ୍ଦେହ ହୋଇ ନାହିଁ ଯେ ଖୋଲା ଚେକ୍ ନେଇ କିଏ ବ୍ୟାଙ୍କରୁ ପଇସା ଉଠାଇଦେବ । କେବେ ମୋର ମନକୁ ପାପ ଛୁଇଁ ନାହିଁ ଯେ ଚୋରି କରିବାକୁ ଆମ ଭିତରେ କେହି ମସୁଧା କରୁଥିବ । ଆଦିବାସୀମାନେ ଚୋରି କରନ୍ତି ନାହିଁ ବା ଅନ୍ୟ କାହାରି ଜିନିଷ ଉପରେ ଆଖି ପକାନ୍ତି ନାହିଁ । ଏଥିପାଇଁ ତାଙ୍କର ଜିନିଷ ଚୋରି କରିବା ଏବଂ ଠକି ଭଣ୍ଡି ଜିନିଷ ନେଇଯିବାକୁ ଅଣଆଦିବାସୀମାନେ ସୁଯୋଗ ପାଆନ୍ତି । ସରଳ ବିଶ୍ୱାସୀ ଆଦିବାସୀ ଏଥିପାଇଁ ସହଜରେ ଶୋଷିତ ଓ ନିର୍ଯ୍ୟାତିତ ହୋଇଯାଏ । ଆଦିବାସୀ ବିଶ୍ୱାସ କରି ବନ୍ଧୁତା ସ୍ଥାପନ କଲେ, ତାହା କେବେହେଲେ ସେ ଭାଙ୍ଗଦିଏ ନାହିଁ । ଜୀବନ ଦେବାକୁ ପଡିପାରେ ସତ, ସେ କିନ୍ତୁ ବନ୍ଧୁତା ଓ ଭଲପାଇବାକୁ ଅକାଟ୍ୟ ବୋଲି ପ୍ରମାଣ କରିଥାଏ । କାଶୀପୁରର ପ୍ରଥମ କେଇବର୍ଷର ସବୁଠାରୁ ଆସ୍ଥାସୂଚକ ଅନୁଭୂତି ଏହାହିଁ ଥିଲା ବୋଲି କହିଲେ ଚଳେ । ଯେଉଁ ଗାଁକୁ ଗଲେ ଆମେ ଖୋଜିବସୁ ସାଙ୍ଗସାଥୀ । ଆଦିବାସୀ ମାଆ ବାପାମାନେ ତାଙ୍କର ସବୁ ସମସ୍ୟା ସତ୍ତ୍ୱେ ଆମକୁ ସ୍ନେହ ଓ ସହୃଦୟତା ଅଜାଡି ଦିଅନ୍ତି । ଜୀବନରେ ଅନେକ ସାର୍ଥକତା ଆସିଯାଏ ।

ମୋର ମନେପଡେ ଜୀମ୍ କର୍ବେଟଙ୍କ ଲିଖିତ 'ବିଶ୍ୱସ୍ତତା' ବୋଲି ଗପଟିଏ । 'ମୋ ଭାରତ' ବହିରେ ଏହା ତାଙ୍କର ଭାରତ ପ୍ରତି ସ୍ନେହ ମମତାର ଅନ୍ୟତମ ପରିପ୍ରକାଶ । ସେ ୧୯ବର୍ଷ ବୟସରେ ମୋକାମେହ ଘାଟରେ ଦାୟିତ୍ୱ ନେଇଥିଲେ ରେଲଷ୍ଟେସନ୍‌ରୁ ଗଙ୍ଗାନଦୀ ପାରିକରି ଜିନିଷପତ୍ର ଏପାଖ ସେପାଖ କରିବା ପାଇଁ । ଶହ ଶହ ଶ୍ରମିକ ଠିକା ନେଇଥାନ୍ତି ଏ କାମ କରିବାକୁ । କିନ୍ତୁ ସବୁ ପ୍ରତିଶ୍ରୁତି ସତ୍ତ୍ୱେ ସେମାନଙ୍କୁ ମଜୁରି ମିଳେ ନାହିଁ । ଥରେ ମାସେ ଦୁଇମାସ ଧରି ଶ୍ରମିକମାନଙ୍କୁ ମଜୁରି ମିଳିଲା ନାହିଁ । ଅଭାବ ଅସୁବିଧା ବହୁତ ବଢ଼ିଗଲା । ଲୋକମାନେ ଅସନ୍ତୁଷ୍ଟ ହେଲେ । ଦିନେ ସନ୍ଧ୍ୟାରେ ନିଜର ଆପତ୍ତି ଅଭିଯୋଗ ସହ ସେମାନେ ଜୀମ୍ କର୍ବେଟଙ୍କ ଘରକୁ ଆସିଥିଲେ । ଦେଖିଲେ ଯେ ଜୀମ୍ କର୍ବେଟ୍ ଖୋଦ୍ ରୁଟି ଗୁଡ଼ ଖାଉଛନ୍ତି । ଶ୍ରମିକମାନେ ଦୁଃଖରେ ଗଦ୍‌ଗଦ୍ ହୋଇଗଲେ । ସେମାନେ କହିଲେ ଯେ ଅଭାବ କେବଳ ତାଙ୍କୁ ଦୁଃଖ ଦେଉ ନାହିଁ, ଜୀମ୍ କର୍ବେଟଙ୍କୁ ମଧ୍ୟ ଦେଉଛି । ସେଥିପାଇଁ ସେମାନେ କାମ ଅଧାରୁ ଛାଡି ପଳାଇ ଯିବାକୁ ଯେଉଁ ନିଷ୍ପତ୍ତି ନେଇଥିଲେ ତାହା ବଦଳେଇ ଦେଇଥିଲେ ଓ ଜୀମ୍ କର୍ବେଟଙ୍କୁ କାମରେ ଏକ ସପ୍ତାହ ପର୍ଯ୍ୟନ୍ତ ସହଯୋଗ କରିଥିଲେ । ଏହା ବିଶ୍ୱସ୍ତତାର ଚରମ ଉଦାହରଣ ବୋଲି ସେ ବାରମ୍ବାର ଉଲ୍ଲେଖ କରିଛନ୍ତି । ଏହି କଥାରେ ମୁଁ ଖୁବ୍ ପ୍ରଭାବିତ ହୋଇଥିଲି । ଲୋକମାନଙ୍କ ପାଖରେ ଆମର ସମ୍ପୂର୍ଣ୍ଣ ବ୍ୟକ୍ତିଗତ କିଛି ନରହୁ ବୋଲି ମୁଁ ବାରମ୍ବାର ଯୁକ୍ତି କରୁଥିଲି । ଆମର ବୌଦ୍ଧିକତାର ସମ୍ପୂର୍ଣ୍ଣ ମୃତ୍ୟୁ ହେଉ ବୋଲି ମୁଁ ଆଶା ରଖିଥିଲି । ଆଦିବାସୀର ବାହାର ଭିତର ଦୁନିଆ କିଛି ନାହିଁ । ଆମର ମଧ୍ୟ ରହିବ ନାହିଁ ।

ମଣିଷ ମଣିଷକୁ ଭଲପାଇବ, ସ୍ନେହ କରିବ, ସୁଖ ଦୁଃଖରେ ଭାଗ ନେବ ଏହାଠୁ ବଳି ଆଉ କ'ଣ ଆନନ୍ଦର କଥା ଅଛି ?

ଆମର କାଶୀପୁର ପରିବେଶ କ'ଣ ସତରେ ଗୋଟାଏ ୟୁଟୋପିଆ (Utopia) ହୋଇପାରିବ ? ଆମ ସମସ୍ତେ କ'ଣ ସମାନ ହୋଇପାରିବା ? ମୋର ସହକର୍ମୀମାନେ ଦିନକୁ ଦିନ ଅଧୈର୍ଯ୍ୟ ହୋଇ ପଡୁଥିଲେ । କିଏ କିଏ ଅଭିଯୋଗ କରିବା ଆରମ୍ଭ କରିବସିଲା ଯେ, ସେ ନଥିବା ବେଳେ ଆଦିବାସୀ କିଏ ଆସି ଖଟରେ ଶୋଇ ପଡିଲାଣି ତ ପାନିଆଁରେ ମୁଣ୍ଡ କୁଣ୍ଡାଇ ସାରିଲାଣି, କିଏ ଶ୍ରମଦାନ କରୁଛି ତ ଆଉକିଏ ସକାଳୁ ଉଠୁନାହିଁ । କେହି କେହି ଖାଇବା ବାସନ ଧୋଇବାକୁ ନାରାଜ । ଦୂରଗାଁ ମାନଙ୍କୁ ଚାଲି ଚାଲି ଯିବା ପାଇଁ ଜଣେ ରାଜି ହେଉଛି ତ ଆଉ ଜଣେ କୁଣ୍ଠା ପ୍ରକାଶ କରୁଛି । ଜଣେ ଆଦିବାସୀ ଭାଷା ଶିଖିଲାଣି ତ ଆଉଜଣେ ଆଦିବାସୀମାନଙ୍କୁ ହିନ୍ଦି ଗୀତ ଶିଖାଇଲାଣି । ଆଦିବାସୀମାନେ ଆମଭଳି ହେବେ ନା ଆମେ ସେମାନଙ୍କ ଭଳି ହେବ । ଏ ସବୁ ତର୍କବିତର୍କ ଭିତରେ ହିଁ ସୀମିତ ରହେନାହିଁ । ଆମର ଆଚାର ବିଚାରରେ ଏହା ମଧ୍ୟ ଜାଣ ଅଜାଣରେ ପ୍ରତିଫଳିତ ହୋଇଯାଏ । ଜଣେ କାହିଁକି ବିଶ୍ୱସ୍ତ ରହିବ ଏକଥା ମନରେ ପ୍ରଶ୍ନ ଉଙ୍କିମାରେ ।

କାଶୀପୁର ପରିପ୍ରେକ୍ଷୀରେ ଆଦର୍ଶବାଦ ଅପେକ୍ଷା ଆମମାନଙ୍କର ସମ୍ପର୍କ ଓ ସ୍ନେହ, ସଦ୍‌ଭାବ ବେଶି ମୂଲ୍ୟବାନ ବୋଲି ମୁଁ ଜାଣିଥିଲି । କିନ୍ତୁ ଟଙ୍କା ପଇସା କଥା ଉଠିଲାବେଳକୁ ଏକଥା ପାଣିଚିଆ ଲାଗେ । ଆମେ ଭାତ, ଡାଲି, ତରକାରୀ ଆଦି ଖାଇବାକୁ ପସନ୍ଦ କରୁ ଅଥଚ ଆମ ଭିତରୁ ଅନେକ ମାଣ୍ଡିଆ ପେଜ ଖାଇବାକୁ ପଛଘୁଞ୍ଚା ଦେଇଥାଆନ୍ତି । ଆମେ ଓ ଆଦିବାସୀମାନେ ପରସ୍ପରକୁ ସମାନ ଦୃଷ୍ଟିରେ ଦେଖିବାକୁ ବହୁତ କଷ୍ଟ ହୁଏ । ବାହାର ପୃଥିବୀରେ କୂଟ କପଟ, ଲାଞ୍ଚ ମିଛ, ଛଳନା ଓ ପ୍ରତାରଣାକୁ କେତେଦିନ ଅଟକାଇ ହେବ ?

ଆମ ଅଫିସ ପାଖରେ ଥିବା ଗାଁ ଗୁଡିକ ଭିତରେ ରତାପଦା ଅନ୍ୟତମ । ଅଧିକାଂଶ ଲୋକ ଜମିହୀନ ଏବଂ କାଶୀପୁର ସାହୁକାରଙ୍କ ପାଖରେ ଗୋତି ହଳିଆ । ସେ ଗାଁର ବୟସ୍କ ଲୋକଙ୍କ ଭିତରେ ଥାଏ ଫଟ୍‌କି ଝୋଡିଆ । ସ୍ତ୍ରୀର ନାମ ଶ୍ରୀମତୀ । ପୁଅର ନାମ ରାମ ଓ ବୋହୂର ନାମ ଲୀଳାବତୀ । ଫଟ୍‌କି ନିଜ ଗାଁ ଛାଡି କୁମ୍ଭାରଶୀଳା ଗାଁର ଗାଇଗଉଡିଆ । ତା'ର କାମ ହେଲା ଗାଁରେ ମଇଁଷିମାନଙ୍କୁ ଏକାଠି କରି ଚରେଇବା । ମୁଣ୍ଡରେ ଠେକା । କାନରେ ଧୁଙ୍ଗିଆ । ହାତରେ ଲମ୍ବାବାଡି । ଶ୍ରୀମତୀ ରୋଷେଇ କରି ନେଇଯାଏ ଦି'ପହରରେ ପେଯ ପିଇବା ପାଇଁ । ଦିନେ ଏକାନ୍ତରେ ବୁଲୁବୁଲୁ ସେ ଦୁଇଜଣଙ୍କ ସହ ଦେଖାହେଲା । ଗଛମୂଳରେ ଦୁଇଜଣ ବସି କ'ଣ କଥାବାର୍ତ୍ତା ହେଉ ଥାଆନ୍ତି । ମୁଁ ପାଖକୁ ଯିବାରୁ ମୁରୁକି ମୁରୁକି ହସୁଥିଲେ । ମୁଁ କିଛି କଥାବାର୍ତ୍ତା କରିବାକୁ ଚାହୁଁଥିଲି । ସେମାନଙ୍କର ଜୀବନକଥା ଓ ଗାଁର ଚିତ୍ର । ଫଟ୍‌କି ଦିନସାରା ଥକି ଗଲାପରେ ରାତିରେ ପେଟେ ମଦପିଇ ଶୋଇଯାଏ । କିନ୍ତୁ ଶ୍ରୀମତୀ ଘର ସମ୍ଭାଳିବାରେ ବ୍ୟସ୍ତ ହୁଏ । କୁମ୍ଭାରମାନଙ୍କର ଗାଇ ଚରାଉଥିବାରୁ ବର୍ଷକୁ ଖାଇବା ସହ ଶହେଟଙ୍କା ମିଳେ । ଶ୍ରୀମତୀ ବେଳେ ବେଳେ କୁଲିକରେ । ପୁଅ ଏବେ ବିଭାହେଲାପରେ

ଅଲଗା ରହୁଛି । ମୁଁ ରତାପଦା ଗାଁର ଅର୍ଥନୀତି, ଲୋକଙ୍କର ଜୀବନର ମାନ ଆଦି ସେ ଦୁହିଁଙ୍କଠାରୁ ଜାଣିବାକୁ ଚେଷ୍ଟା କରୁଥିଲି । ସେମାନେ କହିଲେ ଗାଁରେ ଆସି ମିଟିଂ କରିବାକୁ । ସନ୍ଧ୍ୟାବେଳେ ଆମେ ଗାଁକୁ ଗଲୁ । ସେ ଗାଁରେ ରହିଛି ପଚିଶିଟି ପରିବାର । ମଙ୍ଗୁଳି, ଚେମରା ଓ ଚିମଟୁ କଥା କହିବାବାଲା । କେତେ କଥା କହିଲେ ସେମାନେ । ସରକାରଙ୍କ ଘୁଷୁରି ପାଳନ ଯୋଜନା ଠାରୁ ସାହୁକାର ଘରେ ଗୋତି ଖଟିବା ପର୍ଯ୍ୟନ୍ତ । କେହି ଜଣେ ହେଲେ ପାଠ ପଢିନାହିଁ । ଜଣେ ଦୁଇଜଣଙ୍କର ଜମି ଅଛି । ପାଣି କେନାଲ ପାଇଁ ପାଖ ଗାଁ ପରଜାଶୀଳା ଲୋକଙ୍କ ସହ ମାଡପିଟ୍ କେତେବର୍ଷରୁ ଚାଲି ଆସୁଛି । ପରଜାଶୀଳା ବଡ ଗାଁ ଓ ସେମାନଙ୍କର ନେତା ଅଫିସରମାନଙ୍କ ସହ ଭଲ ସମ୍ପର୍କ ରହିଛି । ରତାପଦା ଗାଁ ଆଜି ସେମାନଙ୍କ ଯୋଗୁଁ ପଛରେ ପଡିଛି । କିନ୍ତୁ ରତାପଦାରେ ଥିବା ପରିବାର ଦିନେ ପରଜାଶୀଳା ଗାଁର ଅଂଶ ବିଶେଷ ଥିଲେ । ଏବେ ଶତ୍ରୁ ପାଲଟିଛନ୍ତି । ଗାଁରେ ରାତ୍ରିସ୍କୁଲ ଚଲାଇବା, ଅନାବାଦୀ ଏବଂ ସିଲିଂଜମି ମରାମତି କରିବା, ଗୋତି ଥଇଥାନ ଆଦି କାର୍ଯ୍ୟକ୍ରମ ଯୋଜନା କରାଗଲା । ମୋ ଭିତରେ କିନ୍ତୁ ସନ୍ଦେହ ରହିଲା ଯେ ସେମାନେ ସାହୁକାର ପାଖରେ ବନ୍ଧା ପଡିଛନ୍ତି । ସହଜରେ ମୁକୁଳି ପାରିବେ ନାହିଁ । ଟଙ୍କା ପଇସା ଦେଇ ସେମାନଙ୍କ ବିଶ୍ୱସ୍ତତା କିଣି ହେବ ନାହିଁ ।



# ୩୯

କାଶୀପୁର ଜଳବାୟୁ ଆମ୍ବ, ଲିଚୁ, ନାରଙ୍ଗୀ ଓ ଚମ୍ପାର ନୁହେଁ, କଫିଚାଷ ପାଇଁ ଅନୁକୂଳ ବୋଲି କାଶୀପୁର ଦେଖିଥିବା ବନ୍ଧୁମାନେ ମୋତେ କେତେଥର କହିଥିବେ । ବିଶେଷକରି ବ୍ୟାଙ୍କ ଅଫିସର ଓ ପ୍ରଶାସନିକ ଅଧିକାରୀମାନେ କଫିଚାଷ କେତେ ଲାଭଜନକ, ସେ ସମ୍ପର୍କରେ ମୋତେ ଧାରଣା ଦେଇଥିଲେ । ଆନ୍ଧ୍ର ପ୍ରଦେଶରେ ଗିରିଜନ ସମବାୟ ସମିତି କର୍ପୋରେସନ୍ କଫିଚାଷ କରିବାରେ ଆଦିବାସୀମାନଙ୍କର ବ୍ୟାପକ ବିକାଶ କରିପାରିଛି ବୋଲି କେତେଜଣ ବନ୍ଧୁ ମଧ୍ୟ ସୂଚନା ଦେଇଥିଲେ । କୋରାପୁଟ ଠାରୁ ଅନତିଦୂରରେ ଥିବା ଆରକୁ ଉପତ୍ୟକା ଓ ବିଶାଖାପାଟଣା ପାଖ ଚିନ୍ତାପାଲି ତାଲୁକରେ କଫିଚାଷ ଜୋର୍‌ସୋରରେ ହୋଇଛି । ନିଜେ ନ ଦେଖିଲେ ବିଶ୍ୱାସ କରିହେବ ନାହିଁ ଯେ, ଆଦିବାସୀମାନଙ୍କର ସର୍ବାଙ୍ଗୀନ ଉନ୍ନତି କେତେମାତ୍ରାରେ ହୋଇପାରିଛି । ଏହାପୂର୍ବରୁ ମୁଁ କେରଳ ପ୍ରଦେଶର ଓ୍ୱାଇନାଡ୍ ଜିଲ୍ଲାରେ କଫିଚାଷର ପ୍ରସାର ସେଠାକାର ଆଦିବାସୀମାନଙ୍କର ଯଥେଷ୍ଟ ଉନ୍ନତି କରିଛି ବୋଲି ଏକ ରିପୋର୍ଟରୁ ମୁଁ ପଢ଼ିଥିଲି । ଏଣୁ କଫିଚାଷ କରିବାରେ ଆଦିବାସୀ ବିକାଶର ରାସ୍ତା ଉନ୍ମୋଚିତ ହୋଇଯିବ ବୋଲି ଯେଉଁ ଯୁକ୍ତି ହେଉଛି, ତାହାକୁ ମୁଁ ବେଶୀ ସନ୍ଦେହ କରୁନଥିଲି । କାଶୀପୁରର ସୁଙ୍ଗେର ଗ୍ରାମପଞ୍ଚାୟତର ମୁଖ୍ୟ କାର୍ଯ୍ୟାଳୟ । ସେବାଟ ଦେଇ କଳାହାଣ୍ଡିର ଭବାନୀପାଟଣାକୁ ଦୁଇଟି ଗଳାବାଟ ଅଛି । କାଶୀପୁର ମାନଚିତ୍ର ପଶ୍ଚିମପଟେ ରାସ୍ତାଟିଏ ବାହାରି ସୁଙ୍ଗେର ବାଟ ଦେଇ ଗୁଣ୍ଡୁପୁର ଆଡକୁ ଯାଇଛି ବୋଲି ଉଲ୍ଲେଖ କରାଯାଇଛି । ଅନ୍ୟ ବାଟଟି ସାଇସୁରଶି ଦେଇ ଭବାନୀପାଟଣାକୁ ଯାଇଛି । କୋରାପୁଟର ଗୁଣ୍ଡୁପୁର ଆଉ କଳାହାଣ୍ଡିର ଗୁଣ୍ଡୁପୁର ଅଲଗା ଅଲଗା । ଅବସ୍ଥିତି ସମ୍ପୂର୍ଣ୍ଣ ଭିନ୍ନ । କିଛି ସମୟ ବିଶ୍ଳେଷଣ କରିଲେ, ଭବାନୀପାଟଣାରୁ ଥୁଆମୂଳ ରାମପୁର ମଝିରେ ଗୁଣ୍ଡୁପୁର ପଡେ ଓ ବସ୍ ଅଟକେ ସେଇଠି । ସୁଙ୍ଗେରଠାରେ ମୃତ୍ତିକା ସଂରକ୍ଷଣ ବିଭାଗ ତରଫରୁ କଫିଚାଷ ପାଇଁ ପ୍ରଥମେ ଛାଇ ହେବା ଲାଗି ସିଲ୍‌ଭର ଓକ୍ ଗଛ ଲଗାଯାଏ । ତା'ତଳେ କଫିଚାଷ ଆରମ୍ଭ ହୋଇଥାଏ । ସିଲ୍‌ଭର ଓକ୍ ଗଛର ଛାୟା ଦ୍ୱାରା ଗୋଲମରିଚ ଆଦି ମଧ୍ୟ ଚାଷ କରାଯାଏ । ମୁଁ ସୁଙ୍ଗେରରେ ଏହା ଲକ୍ଷ୍ୟ କରିଥିଲି । ସୁନ୍ଦର ଦେଖାଯାଉଛି ସେଠାରେ । ସବୁଜିମାରେ ଭରିଯାଉଛି । ସ୍ଥାନୀୟ ଲୋକମାନେ କହୁଛନ୍ତି ଯେ, ଜଙ୍ଗଲରେ ହରିଣ, କୁଟ୍ରା, କଲରାପତରିଆ ବାଘ ଆଦି ଦେଖିବାକୁ ମିଳୁଛି । ସୁଙ୍ଗେରର ଆଖପାଖରେ ପାହାଡ ପ୍ରାୟ ଲଣ୍ଡା ହୋଇଯାଇଛି । ଜଙ୍ଗଲ ବିଭାଗର ଗୋଟାଏ ଗେଷ୍ଟ ହାଉସ୍ କରାଯିବା ଅବସ୍ଥାରେ ଅଛି । ବହୁଦିନ ତଳେ ଶାଳ ଜଙ୍ଗଲ କଟାଯାଇଥିଲା ଓ ସେତେବେଳେ ସୁଙ୍ଗେର କର୍ମଚଞ୍ଚଳ ହୋଇଥିଲା । ସ୍ୱାଧୀନତା ପୂର୍ବରୁ କଳାହାଣ୍ଡିର ମହାରାଜା କେବେ କେମିତି ଶିକାର ପାଇଁ ହାତୀ ପିଠିରେ ବସି ଆସୁଥିଲେ ।

କାଶୀପୁର ଓ ଥୁଆମୂଳ ରାମପୁରର ସୀମାରେ ଏବେ ମଧ୍ୟ ଯଦି ଜଙ୍ଗଲ ଅଛି ଓ ମହାବଳ ବାଘ ଚଳାବୁଲା କରୁଛି ବୋଲି ଲୋକେ କୁହାକୁହି ହେଉଛନ୍ତି । ଗୋଟାଏ ପଟେ ଘଞ୍ଚ ପ୍ରାକୃତିକ ଜଙ୍ଗଲ ଓ ଅନ୍ୟପଟେ ମଣିଷକୃତ କଫିଚାଷ ପାଇଁ ଜଙ୍ଗଲ ବେଶ୍ କିଛି ତୁଳନା କରିହେଉଛି । କଫିଚାଷ ଆନ୍ତର୍ଜାତିକ ବଜାରର ଅନୁପ୍ରବେଶ ବୋଲି ବେଶ କିଛି ଅନୁମାନ କରିହେଉଛି । କଫିଚାଷ ଖୁବ୍ ଲାଭଜନକ ବୋଲି ବିଭିନ୍ନ ବିଜ୍ଞାପନ ଜରିଆରେ ପ୍ରକାଶିତ ହୋଇଥାଏ । ସେତେବେଳେ କଫି କିଣାବିକାରେ କେହି ହସ୍ତକ୍ଷେପ କରିପାରିବେ ନାହିଁ ବୋଲି ଭାରତ ସରକାର କଫି ବୋର୍ଡ ପ୍ରତିଷ୍ଠା କରିଥାଆନ୍ତି । କଫି ବୋର୍ଡ ସାରା ଭାରତରେ କଫି କିଣିବ ଓ ତା'ର ପ୍ରକ୍ରିୟାକରଣ ପରେ ବଜାରରେ ବିକ୍ରୟ କରିବ । କଫିର ଦର ଆନ୍ତର୍ଜାତିକ ସ୍ତରରେ ନିର୍ଦ୍ଧାରିତ ହୁଏ । ବ୍ରାଜିଲ୍ କିମ୍ବା ଆଫ୍ରିକାର କଫିଚାଷ ପ୍ରାୟତଃ ଏଇ ଦର ନିର୍ଦ୍ଧାରିତ କରିଥାଏ । ଭାରତର କଫିର ବାହାରେ ବେଶୀ ଚାହିଦା ଅଛି । କିନ୍ତୁ ଏହାର ଦର ଆନ୍ତର୍ଜାତିକ ମୂଲ୍ୟ ଉପରେ ନିର୍ଭର କରିଥାଏ । କଫି କିଣିଲା ମାତ୍ରକେ କଫି ବୋର୍ଡ ପ୍ରଥମ କିସ୍ତି ପଇସା ଦେଇଦିଏ । ତା'ପରେ ପ୍ରକ୍ରିୟାକରଣ ପରେ କଫିର ଅସଲ ଦାମ୍ ନିର୍ଦ୍ଧାରିତ ହେଲାପରେ କଫିଚାଷୀ ଅନ୍ୟ ଗୋଟାଏ ଦୁଇଟା କିସ୍ତିରେ ତାହାର ପ୍ରାପ୍ୟ ପାଇଥାଏ । କଫିବୋର୍ଡ ଏହି ନିୟମ ବର୍ଷସାରା ବ୍ୟବହାର କରିଥାଏ । ସୁଙ୍ଗେର ଅଞ୍ଚଳ ଓଡ଼ିଶା କଫି ବୋର୍ଡର ସୀମା ଭିତରେ ନ ଥିବାରୁ କଫିଚାଷୀ ଉପଯୁକ୍ତ ମୂଲ୍ୟ ଠିକ୍ ସମୟରେ ପାଆନ୍ତି ନାହିଁ । ଜିଲ୍ଲା ପ୍ରଶାସନ ସ୍ଥିର କରିଥାଆନ୍ତି ଯେ, ବ୍ଲକ୍ କଫିଚାଷୀମାନଙ୍କଠାରୁ କଫି କିଣି ବିଶାଖାପାଟଣା ସ୍ଥିତ କଫି ବୋର୍ଡରେ ବିକ୍ରୟ କରିବ ଓ ପୂରା ପଇସା ମିଳିବା ପର୍ଯ୍ୟନ୍ତ ଚାଷୀମାନଙ୍କୁ ବିଭିନ୍ନ କିସ୍ତିରେ ପଇସା ଦେବ । ଆଦିବାସୀମାନେ କଫିଚାଷରେ ଥିବା ଜଟିଳତା ବୁଝିପାରନ୍ତି ନାହିଁ । ପ୍ରଥମ କିସ୍ତି ମିଳିବା ପରେ ପରବର୍ତ୍ତୀ କିସ୍ତିଗୁଡିକ କଥା ଭୁଲିଯାଆନ୍ତି । ବ୍ଲକ୍ ଅଫିସରମାନେ ସେଇ କିସ୍ତିଗୁଡ଼ିକୁ ପକେଟ ଖର୍ଚ୍ଚ ହିସାବରେ ଆତ୍ମସାତ୍ କରନ୍ତି । ୧୯୮୫ ମସିହାରେ କଫିର ଆନ୍ତର୍ଜାତିକ ଦର ଖୁବ୍ ବଢ଼ିଲା ଓ ପ୍ରାୟ ଦୁଇଗୁଣ ହୋଇଗଲା । କାରଣ ବ୍ରାଜିଲ୍‌ର କଫିଚାଷ ସେବର୍ଷ ଫେଲ୍ ମାରିଥିଲା । କାଶୀପୁର ବ୍ଲକ୍‌ର ସମବାୟ ସମ୍ପ୍ରସାରଣ ଅଫିସର୍ କଫି କିଣାବିକା ଦାୟିତ୍ୱରେ ଥିଲେ ଓ ବ୍ଲକ୍ ପାଣ୍ଠିରୁ ଋଣ ନେଇ ସେ ଚାଷୀମାନଙ୍କୁ କିଛି ଅର୍ଥ ପ୍ରଦାନ କରିଥିଲେ । ବାକି ଟଙ୍କାରୁ ସେ ସମ୍ଭବତଃ ବିଡିଓ ଓ ବ୍ଲକ୍ ଚେୟାରମ୍ୟାନ୍‌ଙ୍କୁ ଭାଗ ଦେଇ ମୁଖ୍ୟ ଭାଗ ନିଜ ପକେଟ୍‌କୁ ନେଇଥିଲେ । ସୁଙ୍ଗେରଠାରୁ ଆମର କର୍ମୀମାନେ ଯେତେବେଳେ କଫି ଦର ଚାଷୀମାନଙ୍କୁ ଜଣାଇଥିଲେ ଓ ସେମାନଙ୍କର ପ୍ରାପ୍ୟ ଅନେକ ବେଶୀ ବୋଲି ଜାଣିପାରିଲେ, ଚାଷୀମାନେ ସମବାୟ ସମ୍ପ୍ରସାରଣ ଅଫିସରଙ୍କୁ ଭେଟି ପୂରା ଟଙ୍କା ଦାବି କରିଥିଲେ । କିଛି ନା କିଛି ବାହାନା ଦେଖାଇ ସେ ଅଫିସର୍ ଜଣକ ଲୋକମାନଙ୍କୁ ଠକି ଚାଲିଥିଲେ । କଫିଚାଷୀମାନେ ମୋତେ ଆସି ଭେଟି ଅନେକ କିଛି ଅଭିଯୋଗ କରିଥିଲେ । ମୁଁ ଜିଲ୍ଲାପାଳଙ୍କୁ ଦରଖାସ୍ତ କରିବାକୁ କହିଥିଲି । ଜିଲ୍ଲାପାଳଙ୍କ ଅଫିସ୍‌ରେ ଦରଖାସ୍ତ ପହଞ୍ଚିଲାକ୍ଷଣି ସେ ଅତିରିକ୍ତ ଜିଲ୍ଲାପାଳଙ୍କୁ ତଦନ୍ତ କରିବା ପାଇଁ କାଶୀପୁର ପଠାଇଥିଲେ । ଆମ ଅଫିସ୍‌ରେ ତଦନ୍ତ କମିଶନ୍ ଭଳି କମିଶନ୍ ବସିଲା ଓ ଜଣେ ଜଣେ କଫିଚାଷୀ ଆସି ସାକ୍ଷ୍ୟ ପ୍ରମାଣ ଦେଲେ । ସମବାୟ

ସମ୍ପ୍ରସାରଣ ଅଫିସରଙ୍କୁ ନିଲମ୍ବିତ କରାଗଲା ଓ ଶୁଣାଗଲା ଯେ, ତାଙ୍କୁ ଚାକିରିରୁ ବରଖାସ୍ତ କରାଯିବ । ସେ ଭଦ୍ରଲୋକ ସରକାରଙ୍କ ନୋଟିସ୍ ପାଇ ମୋ ପାଖକୁ ଆସି କାନ୍ଦି ପକାଇଲେ । କହିଲେ ଯେ ବିଡିଓ ଓ ପଞ୍ଚାୟତସମିତି ଚେୟାରମ୍ୟାନ୍ ମିଶିକରି ସବୁ ଅର୍ଥ ଆତ୍ମସାତ୍ କରିଛନ୍ତି । ତାଙ୍କୁ କେବଳ ଦାୟୀ କରାଯାଇଛି ମିଛରେ । ମୁଁ କହିଲି ସେ ଯାଇ ଲୋକଙ୍କୁ କ୍ଷମା ମାଗନ୍ତୁ ଓ ପଇସା ଫେରାଇ ଦଅନ୍ତୁ । କିଛି ରାଜନୈତିକ ନେତା ତାଙ୍କୁ କୁଆଡେ ଆଶ୍ୱାସନା ଦେଇଥିଲେ ଯେ, ସେ ଚାକିରିରୁ ବରଖାସ୍ତ ହେବେ ନାହିଁ । ମନ୍ତ୍ରୀଙ୍କ ସହ କଥାବାର୍ତ୍ତା ସରିଛି । କିନ୍ତୁ ମନ୍ତ୍ରୀ ବା ରାଜନୈତିକ ନେତାମାନଙ୍କ କଥା ସରକାର ଶୁଣିଲେ ନାହିଁ । ଏହି ଦୁର୍ଭାଗ୍ୟଜନକ ପରିସ୍ଥିତିରୁ ଅଫିସର୍ ଜଣକ ନିଜକୁ ରକ୍ଷାକରିପାରିଲା ନାହିଁ । କିଛିଦିନ ପରେ ତାଙ୍କ ଗାଁରେ ସେ କୁଆଡେ ଲୋକନିନ୍ଦା ସହି ନପାରି ଆତ୍ମହତ୍ୟା କରିଥିଲେ । କଫିଚାଷ ଉପରେ ଏହାର ପ୍ରଭାବ ଗୁରୁତର ହୋଇଥିଲା । ବ୍ଲକ୍ କର୍ତ୍ତୃପକ୍ଷ ଲକ୍ଷାଧିକ ଟଙ୍କାର କଫି କିଣି କଫି ବୋର୍ଡରେ ବିକିବାର ଦାୟିତ୍ୱ ନେବାକୁ କୁଣ୍ଠା ପ୍ରକାଶ କରିଥିଲେ । ତେଣୁ କାଶୀପୁରର ସାହୁକାରମାନେ ଅତି ଶସ୍ତା ଦରରେ କଫି କିଣି ସେଥିରୁ ପ୍ରଚୁର ଲାଭ ଉଠାଇଲେ । ବର୍ଷେ ଦୁଇବର୍ଷ ଭିତରେ କଫିର କିଣାବିକା ଉପରୁ ସମସ୍ତ ନିୟନ୍ତ୍ରଣ ସରକାର ଉଠାଇନେଲେ ଓ ମୁକ୍ତ ବଜାରରେ ଏହା ଏକ ସାମଗ୍ରୀ ହେଲା । କିନ୍ତୁ ଆଦିବାସୀମାନେ କଫିଚାଷରୁ ଯେମିତି ଲାଭ ପାଇବା କଥା, ଆଉ ପାଇପାରିଲେ ନାହିଁ । ଅନେକ ସମୟରେ କଫି ବିକ୍ରୟ ହେଲା ନାହିଁ ଓ ଲୋକେ ଖୁବ୍ ହତୋତ୍ସାହ ହୋଇପଡିଲେ । କଫି ବଗିଚାର ରକ୍ଷଣାବେକ୍ଷଣା ଖୁବ୍ ସମୟସାପେକ୍ଷ । ଦେଖାଗଲା ଯେ, ସୁଙ୍ଗେର ଆଦିବାସୀମାନେ କଫି ପ୍ରତି ବୀତସ୍ପୃହ ହୋଇପଡିଛନ୍ତି । ଜଗାରଖା ନ କରିବାରୁ ଗଛ କାଟିବା ଧୀରେ ଧୀରେ ସେଠାରେ ଆରମ୍ଭ ହେଲା । ଅଶୀ ଦଶକର ଶେଷବେଳକୁ ସୁଙ୍ଗେର କଫି ବଗିଚା ଶ୍ରୀହୀନ ହୋଇପଡିଲା । କିନ୍ତୁ ମୃତ୍ତିକା ସଂରକ୍ଷଣ ବିଭାଗ ରାଣିଝିରି ଓ ଉପରଝିରି ଗାଁରେ କଫିଚାଷ ବେଶୀ ଆରମ୍ଭ କରିଥାଆନ୍ତି । କଫି ବୋର୍ଡ ମଧ୍ୟ କୋରାପୁଟରେ ଅଫିସ୍ ଖୋଲି କଫିଚାଷର ସମ୍ପ୍ରସାରଣ ପାଇଁ ଯୋଜନା କରିଥାଏ । କଫି ବଜାର ସିନା ମୁକ୍ତ ହୋଇଥିଲା, କିନ୍ତୁ କଫିଚାଷ ପାଇଁ ପ୍ରୋତ୍ସାହନ ସରକାର ଓ ବ୍ୟାଙ୍କ ତରଫରୁ ଖୁବ୍ ମିଳୁଥିଲା । କୋରାପୁଟ ଆଖପାଖରେ କେରଳରୁ ଆସି ଜମି କିଣିଲେ । ବ୍ୟାଙ୍କରୁ ଋଣ ନେଇ କଫିଚାଷ ବ୍ୟବସାୟିକ ଢଙ୍ଗରେ ଆରମ୍ଭ କରିଲେ । କାଶୀପୁର ପାଖ ଚମ୍ପାଯୋଡି ଗାଁରେ କେତେକ ଅବସରପ୍ରାପ୍ତ ବ୍ୟାଙ୍କ କର୍ମଚାରୀ ମଧ୍ୟ ଜମି କିଣି କଫିଚାଷ ଆରମ୍ଭ କରିଲେ । ଯେଉଁ ଆଦିବାସୀମାନେ ମାଣ୍ଡିଆ, ମକା ଓ କାନ୍ଦୁଲ ଚାଷ କରନ୍ତି, ଯେଉଁମାନେ ଆମ୍ବ, ପଣସ ଗଛ ଲଗାନ୍ତି, ସେମାନଙ୍କ ପାଇଁ କଫି ଏକ ପୃଥିବୀ ବାହାରର ବସ୍ତୁ ଥିଲା । ଲୋକେ କିଛି ବୁଝିପାରୁ ନଥିଲେ । ଆନ୍ଧ୍ରପ୍ରଦେଶର ଗିରିଜନ ସମବାୟ ସମିତି କର୍ପୋରେସନ୍ ଏକ ସଂଗଠିତ ଅନୁଷ୍ଠାନ ହୋଇଥିବାରୁ କଫିଚାଷକୁ ସମ୍ଭାଳି ପାରୁଥିଲା । ବଜାର ବେପାର ମଧ୍ୟ ସହଜ ଥିଲା । ସମସ୍ତ ଅଧିକାରୀମାନଙ୍କ ଦୃଷ୍ଟି ପଡୁଥିଲା । କାଶୀପୁରରେ କିନ୍ତୁ ଏସବୁ କଳ୍ପନାତୀତ ଥିଲା । କିନ୍ତୁ କଫିଚାଷର ବିଫଳତା ସବୁଦିନ ପାଇଁ ଏ ଅଞ୍ଚଳର ଆଦିବାସୀଙ୍କୁ ବିମୁଖ କରିଥିଲା ।



# ୪୦

କାଶୀପୁରର ସବୁ କୋଳାହଳ ସତ୍ତ୍ୱେ ବେଳେବେଳେ ନିର୍ଜନତା ମୋତେ ଗ୍ରାସ କରିଥାଏ । ଅଗ୍ରଗାମୀ ପରିବାର ବଢ଼ିବାରେ ଲାଗିଛି । ନୂଆ ନୂଆ ଯୁବକ ଯୁବତୀ ଆସି ଆମ ସହ ସାମିଲ୍ ହେଉଛନ୍ତି । ନୂଆ ନୂଆ ଗାଆଁମାନଙ୍କରେ କାର୍ଯ୍ୟକ୍ରମ ଆରମ୍ଭ ହେଉଛି । ମୋର ବିବାହ ହୋଇଛି ୧୯୮୨ ମସିହାରେ । ୧୯୮୪ ମସିହାରେ ନେତୃତ୍ୱର ଗୌରବ ମିଳିଛି । ସ୍ନେହ ଓ ଭ୍ରାତୃତ୍ୱ ଭାବନା ସବୁଆଡ଼େ ବ୍ୟାପିଛି । କାମକରିବାର ନୂତନ ଉତ୍ସାହ ଆସୁଛି ସବୁଦିନେ । ସଂଘର୍ଷ ଓ ସଂରଚନା ଭିତରେ ଦିନଗୁଡ଼ିକ ଅତିବାହିତ ହେଉଛି । ତଥାପି ଏ ନିର୍ଜନତା କାହିଁକି ? ଆମେ ସବୁ ଦଳଗତ ଭାବନା ନେଇ କାମ କରିବାରେ ଲାଗିପଡ଼ିଥାଉ । ଗାଁରେ ବି ଦଳଗତ ଆଲୋଚନା କରୁ ଓ ସଂଘବଦ୍ଧ ହୋଇ ଦାରିଦ୍ର୍ୟ ଓ ଶୋଷଣ ବିରୁଦ୍ଧରେ ଲଢ଼ିବାକୁ ଅଣ୍ଟାଭିଡ଼ୁ । ଗୀତ ବୋଲୁ ଏକାଠି ସମସ୍ୱରରେ । ଜୀବନର ଉଠାଣି ଗଡ଼ାଣିକୁ ବି ସାମ୍ନା କରୁ ଗୋଟାଏ ପରିବାର ଭଳି । କିନ୍ତୁ ଏ ନିଃସଙ୍ଗତା ଓ ଏକାନ୍ତଭାବ କାହିଁକି ? ପାହାଡ଼ ଚଢ଼ିଲା ବେଳେ, ଯେତେବେଳେ ଥକ୍କା ମାରିବାକୁ ଟିକିଏ ସୁଯୋଗ ମିଳେ, ସେତେବେଳେ ଅଚାନକ ମନେପଡ଼ିଯାଏ ଯେ ମୁଁ ଜାଣିଶୁଣି ନିଜକୁ ଏକୁଟିଆ କରିଦେଇଛି । ଏକ କିମ୍ଭୂତକିମାକାର ମଣିଷ ହୋଇଯିବାକୁ କେଜାଣି କାହିଁକି ତୀବ୍ର ଇଚ୍ଛା ହୋଇଛି । ଆହୁରି ଇଚ୍ଛା ହୋଇଛି ଏକ ଅସାଧାରଣ ଜୀବନ ଗଢ଼ିବାକୁ । ଯେଉଁଦିନ ଫ୍ରାଁ କାଫ୍‌କା (Franz Kafka)ଙ୍କ "ମେଟାମରଫସିସ୍" (Metamorphosis) ଗଳ୍ପ ମୁଁ ପଢ଼ିଲି, ସେ ସପ୍ତାହସାରା ମୁଁ ଅନୁଭବ କରୁଥିଲି ଯେ ମୁଁ ଯେମିତି ଏକ ଅଜବ ପ୍ରାଣୀରେ ରୂପାନ୍ତରିତ ହୋଇଯାଇଛି ଓ ନିଜକୁ ଅପସାରଣ କରି ଏକ ଗହ୍ୱର ଭିତରେ ଲୁଚାଇବାର ଆନନ୍ଦ ଲାଭ କରୁଛି । ଅବଶ୍ୟ ଏକ ଆତ୍ମଜ୍ୱାଳା ଓ ଯନ୍ତ୍ରଣା ଆଗରୁ ଲାଗି ରହିଥିଲା । ପ୍ରେମରେ ପଡ଼ିଥିବା ଏ ମଣିଷ ବ୍ୟର୍ଥତା ଓ ଅନୁଶୋଚନାକୁ ପାଥେୟ କରୁଥିଲା । ସେଇଥିପାଇଁ ଦସ୍ତୋଭସ୍କି (Dostoevsky), କାଫ୍‌କା (Kafka), କାମ୍ୟୁ (Camus), ହରମାନ୍ ହେସ୍ (Herman Hess), ଆନ୍ଦ୍ରେ ଜିଦ୍ (Andre Gide), ହେମିଙ୍ଗୱେ (Hemingway), ଆଦି ପଢ଼ିବାକୁ ମନ ଡ଼ାକୁଥିଲା । ଭାନ୍‌ଗଗ୍ (Van Gogh) ବା ଗଗିନ୍ (Gagin)ଙ୍କ ଜୀବନ କାହାଣୀ ଉଦ୍‌ବେଳିତ କରୁଥିଲା । ଗ୍ରାହାମ୍ ଗ୍ରୀନ୍ (Graham Green) ବା କଲିନ୍ ଉଇଲ୍‌ସନ୍ (Colin Wilson)ଙ୍କ ବହିରୁ ଜଣେ ନିଜ ପୃଥିବୀରୁ ନିର୍ବାସିତ ମଣିଷମାନଙ୍କୁ ଜାଣିବାକୁ ସୁଯୋଗ ପାଉଥିଲା । ଗୋଟାଏ ରୋମାଣ୍ଟିକ ଜୀବନର ଅବସାନ ହୋଇଥିଲା ଅଚାନକ । ହଳଦୀ ବସନ୍ତ ଚଢ଼େଇ ହେଉ କି ସୂର୍ଯ୍ୟମୁଖୀ ଫୁଲ ହେଉ, ହଳଦିଆ ଶାଢ଼ୀ ପିନ୍ଧିଥିବା ଝିଅଟି ହେଉ ଅଥବା ହଳଦିଆ ମଲାଟ ଥିବା ବହିଟି

ହେଉ, ଆଉ ଭଲ ଲାଗୁନଥିଲା । ସବୁତ ଭଲ ନପାଇପାରିବାର ଯନ୍ତ୍ରଣା ଓ ପରିତ୍ୟକ୍ତ ଭାବନା । ମୁଁ କିଛିଦିନ ଧରି ପଳାତକ ହୋଇଯାଇଥିଲି । ପଦାର୍ଥ ବିଜ୍ଞାନ ଛାଡ଼ି ମୁଁ ପଢୁଥିଲି ଦର୍ଶନ ଶାସ୍ତ୍ର । ଗଣିତକୁ ପରିତ୍ୟାଗ କରି ମୁଁ ପଢୁଥିଲି ଇଲିଅଟ୍ (Eliot)ଙ୍କ କବିତା । ଅମଡ଼ା ବାଟରେ ଯିବାକୁ ମନ ଉଚ୍ଚାଟ ହେଉଥିଲା । ବିପଦ ସଙ୍କୁଳ ଜୀବନକୁ ନେଇ ବଞ୍ଚିରହିବାରେ ଯେମିତି ଏକ ଆତ୍ମସନ୍ତୋଷ ମିଳୁଥିଲା । ମୋର ଘନିଷ୍ଠ ବନ୍ଧୁ ଲଳିତ ଆତ୍ମହତ୍ୟା କରିଥିଲା । ସେ ଯେମିତି ପ୍ରମାଣ ଦେଲା ଯେ ବଂଚିବା ଅପେକ୍ଷା ମରିବା ସହଜ ଓ ଆନନ୍ଦମୟ । ତା'ପରେ ଆତ୍ମହତ୍ୟା କରିବା ଓ ନିଜକୁ ସଚେତନତାର ସହ ଧ୍ୱଂସ କରିବା ଯେମିତି ଆମ ପାଇଁ ଏକ ଜ୍ୟାମିତିକ ସତ୍ୟ ହୋଇଥିଲା । ବଞ୍ଚିବା ନିରର୍ଥକ ବୋଲି ଯୁକ୍ତି କରିବା ସହଜ ହୋଇପଡ଼ିଥିଲା । କାପୁରୁଷତା ହେଉ ନତୁବା ପ୍ରଚଣ୍ଡ ବୌଦ୍ଧିକ ଆତ୍ମବିଶ୍ଳେଷଣ ହେଉ, ମୁଁ ନିଜକୁ ଧ୍ୱଂସ କରି ପାରିନଥିଲି । ସବୁ ପରାଜୟ, ବ୍ୟର୍ଥତା, ଗ୍ଲାନିମାନଙ୍କୁ ଆତ୍ମସ୍ଥ କରି ବଞ୍ଚି ରହିବାକୁ ମୁଁ ଏକଦା ନିଷ୍ପତ୍ତି ନେଇଥିଲି । ଆରମ୍ଭ ହୋଇଥିଲା ଏକ ଅନ୍ୱେଷଣ ଏହାପରେ । ମଣିଷକୁ ଭଲ ପାଇବାକୁ ହେବ । ଯେଉଁମାନେ ନିଷ୍ପେଷିତ, ଅବହେଳିତ, ଶୋଷିତ, ସେମାନଙ୍କ ପାଖରେ ଛିଡ଼ା ହେବାକୁ ହେବ । ଏହା କେବଳ ବୌଦ୍ଧିକ ଦୃଷ୍ଟିରେ ନୁହେଁ, ଏକ ଜୀବନ୍ତ ପ୍ରେରଣାର ସହ । ମଣିଷ ସହ ମଣିଷର ସମ୍ବନ୍ଧ କେତେ ଦୃଢ଼ ଓ ଆବେଗମୟ । ବିଶ୍ୱବିଦ୍ୟାଳୟ ଜୀବନରେ ଦୁଇ ତିନୋଟି ବହି ମୋତେ ନିଶ୍ଚିତ ପ୍ରଭାବିତ କରି ସବୁ ନକାରାତ୍ମକ ଚିନ୍ତାଧାରାକୁ ପ୍ରତିହତ କରିଥିଲା । ଗୋଟିଏ ହେଲା ରିଚାର୍ଡ଼ ବାକ୍ (Richard Back)ଙ୍କ ଜୋନାଥନ୍ ଲିଭିଂଷ୍ଟୋନ୍ ସିଗଲ୍ (Jonathan Livingstone Seagal) । ଅନ୍ୟଟି ହେଲା ସେଣ୍ଟ ଏକ୍‌ସୁପ୍ରେ (Saint Exupre)ଙ୍କ ଦି ଲିଟିଲ୍ ପ୍ରିନ୍‌ସ (The Little Prince) । ଆଉ ଗୋଟିଏ ଚମତ୍କାର ବହି ଥିଲା ଉଇଲିଆମ୍ ସାରୋୟାନ୍ (William Saroyan)ଙ୍କ ଦି ହ୍ୟୁମାନ୍ କମେଡ଼ି (The Human Comedy) । ମୋ ଭିତରେ ମୁଣ୍ଡ ଟେକିଥିବା ଆଇଭାନ୍ କାରାମାଜୋଭ୍ (Ivan Karamazov)ର ବିଷୟ ହେଲା ଓ ଆଲ୍ୟୋଶା କାରାମାଜୋଭ୍ (Alyosha Karamazov) ଆସ୍ଥାନ ଦୃଢ଼ କରିଲା । ମୁଁ ମଧ ଉଲ୍ଲେଖ କରିବାକୁ ଚାହୁଁଛି ଯେ ଜୀମ୍ କର୍ବେଟ୍ (Jim Corbett)ଙ୍କ "My India " ଏବଂ ଭେରିଅର୍ ଏଲୱିନ୍ (Verrier Elwin)ଙ୍କ "The tribal world of Verrier Elwin" ମଧ କିଛି କମ୍ ପ୍ରଭାବ ବିସ୍ତାର କରି ନଥିଲା । ମୁଁ ଦୃଢ଼ ଭାବରେ ବିଶ୍ୱାସ କରିଥିଲି ଯେ ନିଜେ ବଞ୍ଚି ରହିବି ଓ ଅନ୍ୟକୁ ବି ବଞ୍ଚାଇବ । ଅର୍ଥାତ୍ "Live and let others live" । ଏସବୁ ଯଦି ଜୀବନରେ ଘଟି ନଥାନ୍ତା, ମୁଁ କେବେ କାଶୀପୁର ପହଞ୍ଚି ପାରିନଥାଆନ୍ତି । ଏକଥାକୁ ମୁଁ ସ୍ୱୀକାରୋକ୍ତି ହିସାବରେ ନେବାକୁ ମୋର ବନ୍ଧୁ ପାଠକମାନଙ୍କୁ ଅନୁରୋଧ କରିବି ।

ତଥାପି ନିର୍ଜନତା ଓ ନିଃସଙ୍ଗତା କାହିଁକି ? ଏ ଉଦ୍‌ବେଳନ ଓ ମାନସିକ ଆନ୍ଦୋଳନ କାହିଁକି ? ଏ ପ୍ରଶ୍ନିଳ ଜୀବନ କାହିଁକି ? ମୁଁ ଜାଣେ ଏଭଳି ପ୍ରଶ୍ନ ପଚାରିବାର କୌଣସି ଅର୍ଥ ନାହିଁ । ନିଜ ଜୀବନକୁ ଅର୍ଥପୂର୍ଣ୍ଣ ଭାବେ ବଞ୍ଚିବାକୁ ହେବ ଓ ଆଗେଇବାକୁ ହେବ । ଝରଣାର ଅଙ୍କାବଙ୍କା ଗତିପଥ ଭଳି, ପାହାଡ଼ର ଆବଡ଼ା ଖାବଡ଼ା ରୂପ ଭଳି ଓ ଦୂର ଦିଗ୍‌ବଳୟର

ଝାପ୍‌ସା ସିଲ୍‌ହଟ ଭଳି ଆମ ସମସ୍ତଙ୍କୁ ବଞ୍ଚିବାକୁ ହେବ ଆସ୍ଥା ସୂଚକ ଭାବେ । ମୁଁ ଜାଣିଥିଲି ଯେ କାଶୀପୁରରେ ମୋତେ ସାଧାରଣ ମଣିଷ ଭଳି ବଞ୍ଚି ରହିବାକୁ ହେବ ଓ ସାଧାରଣ ମଣିଷଙ୍କ ସହ ସମୀକରଣ ରକ୍ଷା କରିବାକୁ ହେବ । ବୌଦ୍ଧିକ ସ୍ତରରେ ଏବଂ ସାଧାରଣ ଜୀବନ ସ୍ତରରେ ଆଦିବାସୀଙ୍କଠାରୁ ନିଜକୁ ଭିନ୍ନ କରିହେବନାହିଁ । ଜୀବନ ଜିଜ୍ଞାସାର ସ୍ଥାନ ନାହିଁ ଏଠି । ପଳାୟନର ବା ପରାଜୟର ସ୍ଥାନ ନାହିଁ ଏଠି ।

ମୁଁ ସବୁବେଳେ ଚାହିଁଛି ଏଠାରେ ସୂର୍ଯ୍ୟୋଦୟ ଦେଖିବାକୁ । ସବୁବେଳେ ଚାହିଁଛି ଜ୍ୟୋତ୍ସ୍ନାସ୍ନାତ ରାତ୍ରିରେ ନିସ୍ତବ୍ଧତାକୁ ଉପଭୋଗ କରିବାକୁ । ଆହୁରି ମଧ୍ୟ ଚାହିଁଛି ବିପ୍ଳବର ବହ୍ନି ଜଳାଇବାକୁ ଓ ମଣିଷର ମଣିଷତ୍ୱକୁ ଆପଣାର କରିବାକୁ । ସଂସ୍ଥା ଓ ସଂଗଠନ ଗଢ଼ିବା ଏକ ତାମ୍‌ସା, ଏକ ନାଟକ । ଏହା ଜରିଆରେ ସାମାଜିକ ଓ ରାଜନୈତିକ ପରିବର୍ତ୍ତନ ସମ୍ଭବ ନୁହେଁ । ମୁଁ ଜାଣିଛି ଯେ ସ୍ୱେଚ୍ଛାସେବୀ ସଂଗଠନମାନେ ମଠଗୁଡ଼ିଏ ପ୍ରତିଷ୍ଠା କରିଛନ୍ତି ଓ ନିଜକୁ ମଠାଧୀଶ କରିସାରିଛନ୍ତି । ମୁଁ ଅନୁଭବ କରିଛି ଯେ ଦୋକାନ ବଜାର ସବୁ ଆମକୁ ଗୋଟାପଣେ ଗିଳିବାକୁ ଆରମ୍ଭ କରିଛି । ମୁଁ ଏଥିପାଇଁ ଆପଣାକୁ ବାରମ୍ବାର ସମାଲୋଚନା କରିଛି । ଆମେ ଆଦିବାସୀ ହୋଇ ପାରିବାନାହିଁ କି ତାଙ୍କର ସରଳ ଅମାୟିକ ଜୀବନର ଅଧିକାରୀ ହୋଇପାରିବା ନାହିଁ । ଆମେ ସେମାନଙ୍କ ଭଳି କଷ୍ଟ ସହିଷ୍ଣୁ ହୋଇ ପାରିବାନାହିଁ । ଆମେ ଆଦିବାସୀ ମାଆଙ୍କ ଭଳି ଏକୁଟିଆ ଘଞ୍ଚଜଙ୍ଗଲରେ ଚାଲିଚାଲି ଯାଇପାରିବାନାହିଁ । ଆମେ ସେମାନଙ୍କ ଭଳି ଅନାହାରରେ ରହିପାରିବା ନାହିଁ କେତେଦିନ । ଆମେ ସେମାନଙ୍କ ଭଳି ନାଚି ପାରିବାନାହିଁ କି ଗୀତ ଗାଇପାରିବାନାହିଁ । ତଥାପି ସେମାନଙ୍କୁ ଆମେ ଭଲ ପାଇପାରିବା ଓ ଆପଣାର କରିପାରିବା ।

ଆମ ସହକର୍ମୀମାନଙ୍କ ଭିତରୁ ଅନେକ ଆଦିବାସୀ ମାଆ ଭଉଣୀଙ୍କ ସହ ସମ୍ବନ୍ଧ ରଖିବାର ପ୍ରମାଣ ସ୍ୱରୂପ ଅନେକ କିଛି ପ୍ରଦର୍ଶନ କରିଥାଆନ୍ତି । ପ୍ରମୋଦ ଆମର ଆଦିବାସୀ ଭାଇ ରାଇସିଂ ମାଝୀ ସହ ଏକାଠି ଖାଇବା ପିଇବା କଥା କହିଥାଏ । କୈଳାସ ସୁଙ୍ଗେରର କାଡ଼ିଆ ମାଝୀ ସହ ଏକା ବାସନରେ ଖାଏ । ବିଦ୍ୟା, ସୁମନୀ ଓ ଅନ୍ୟ ମାଆମାନଙ୍କ ସହ ଏକାଠି ସମୟ କଟାଏ । ଗାଁମାନଙ୍କରେ ରାତ୍ରିଯାପନ କରିଲା ବେଳେ ଯେତେବେଳେ ହାଡ଼ଭଙ୍ଗା ଶୀତ ଆମକୁ ଅକଥନୀୟ କଷ୍ଟ ଦିଏ, ଗୋଟାଏ ଦୁଇଟି କମ୍ବଳକୁ ଆମେ ସମସ୍ତେ ଘୋଡ଼ାଇହୋଇ ବସୁ । ପାହାଡ଼ ଚଢ଼ିଲାବେଳେ ମୁଣ୍ଡ ଉପରେ କିଏ କାହାର ବ୍ୟାଗ୍ ବୋହି ନେଇଥାଏ । ରୋଷେଇ କରିଲା ବେଳେ କିଏ ପରିବା କାଟେ ତ ଆଉ କିଏ ଝରଣାରୁ ପାଣି ଆଣି ଦିଏ । ଆମେ ସବୁ ପରସ୍ପରକୁ ସ୍ନେହ ସରାଗ ବାଣ୍ଟି ଦେଇଥାଉ । କାଶୀପୁରରେ କ'ଣ ପରିବର୍ତ୍ତନ ହେବ କିଏ କହିବ ? କିନ୍ତୁ ଆମେ ସମସ୍ତେ ଗୋଟାଏ ନୌକାର ଯାତ୍ରୀ ଓ ନାବିକ । ଆସନ୍ନ ଝଡ଼ର ମୁକାବିଲା କରିବାକୁ ଆମେ ସମସ୍ତେ ପ୍ରସ୍ତୁତ ।

ପୌଷ ପର୍ବ ସରିନାହିଁ କିନ୍ତୁ ଚଇତି ପର୍ବ ଆସିଲାଣି ବୋଲି ପ୍ରତି ଗାଁ' ଗୀତ-ନାଚ ଓ ବାଦ୍ୟ -ସଂଗୀତରେ ମୁଖରିତ ହୋଇଯାଏ । କାଶୀପୁରର ଉଚ୍ଚାଂଶରେ ମହୁଲ ଗଛ ଦେଖାଦିଏ ନାହିଁ । ସେଠାରେ ଚମ୍ପାଫୁଲର ମହକ ଆସେ । କିନ୍ତୁ ତିନୋଟି ପଞ୍ଚାୟତରେ ମହୁଲ ଗଛ

ଦେଖାଯାଏ ଓ ମହୁଲ ଫୁଲ ଫୁଟିବା ବେଳେ ମହକ ସମସ୍ତଙ୍କୁ ମତୁଆଲା କରେ । ଆମେସବୁ ମଧ୍ୟ ବିଭୋର ହୋଇଯାଉ ଏଇ ସମୟରେ । ଆଦିବାସୀମାନଙ୍କୁ ଭଲ ପାଇବାକୁ ହେଲେ ମହୁଲକୁ ଭଲ ପାଇବାକୁ ହେବ ଓ ମହୁଲି ମଦରେ ବୁଡିଯାଉଥିବା ମଣିଷମାନଙ୍କୁ ମଧ୍ୟ ଆପଣାର କରିବାକୁ ହେବ । ମଦ୍ୟପାନ ନକରିବା ଓ ନିଶାନିବାରଣ କରିବା ପାଇଁ ଗୋଟାଏ ପୁରୁଷ ଧରି ବ୍ୟସ୍ତ ରହିଥିବା ସର୍ବୋଦୟୀମାନଙ୍କୁ ବଡ଼ ଦୟା ଲାଗେ । ଆଦିବାସୀ ମଦ ନପିଇ ରହିପାରିବକି ? ମହୁଲ ଉତ୍ପାଦନ ଯଥେଷ୍ଟ ନଥିବାରୁ କାଶୀପୁରର ସାହୁକାରମାନେ କଣ୍ଟାବାଞ୍ଜି ଆଡୁ ରାତ୍ରିରେ ଟ୍ରକରେ ମହୁଲ ଆଣନ୍ତି ଓ ସନ୍ତର୍ପଣରେ ମଦଭାଟିମାନଙ୍କୁ ବିକ୍ରୟ କରି ପ୍ରଚୁର ଲାଭ ଉଠାନ୍ତି । ମାଣ୍ଡିଆ ମଦ ବା ଲନ୍ଦା ଓ ମହୁଲି ମଦରେ ଅନେକ ଫରକ କୁଆଡ଼େ ଅଛି । ଆମେ ଗାଁରେ ମିଟିଂ କରିଲା ବେଳେ ମଦ୍ୟପମାନଙ୍କୁ ତାଗିଦ୍ କରିଥାଉ ଯେ ମହୁଲି ମଦରେ ବିଷ ଅଛି । ୟୁରିଆ ମିଶିଛି । ସାବଧାନ ରୁହ । ମାଣ୍ଡିଆ ଲନ୍ଦା ପିଇଲେ, କିଛି କ୍ଷତିନାହିଁ । କଣ୍ଢେଇ ନାଚ ଜରିଆରେ ମଦ୍ୟପମାନଙ୍କର ଶେଷ ପରିଣତିର କରୁଣ ଦୃଶ୍ୟ ଦେଖାଇ ଥାଉ । କିନ୍ତୁ ମଦ୍ୟପାନ ଆମର ଚିହ୍ନାପରିଚିତ ଗ୍ରାମମାନଙ୍କରେ କମେନାହିଁ । ମୁଁ ବେଳେ ବେଳେ ଏକ ଅଦ୍ଭୁତ ଯୁକ୍ତି ଶୁଣେ ଯେ ଆଦିବାସୀମାନଙ୍କ ସହ ଦୃଢ଼ ସମ୍ବନ୍ଧ ରଖିବାକୁ କେତେକ ସ୍ୱେଚ୍ଛାସେବୀ ସେମାନଙ୍କ ସହ ମଦ୍ୟପାନ କରିଥାଆନ୍ତି । ମୁଁ କିନ୍ତୁ କାଶୀପୁରରେ ଏହାର ଯଥାର୍ଥତା କେବେ ଉପଲବ୍ଧି କରିପାରିନାହିଁ । ଆଦିବାସୀମାନଙ୍କୁ ଭଲ ପାଇବାର ଅନେକ ବାଟ ଅଛି । କାଶୀପୁରରେ ଏଇସବୁ ବାଟ ଆମେ ପରୀକ୍ଷା ନିରୀକ୍ଷା ଦ୍ୱାରା ନିର୍ଦ୍ଧାରଣ କରିଥାଉ ।

ମୁଁ ଯଦି ଅସଲ ମଣିଷ ହେବାକୁ ଅଭିଳାଷ ରଖିଥାଏ, ତେବେ ମୋ ପାଇଁ ଉଚିତ ହେବ ମୁଁ ଆଦିବାସୀ ଗାଁମାନଙ୍କରେ ଓ ତାଙ୍କ ଗହଣରେ ବେଶୀ ସମୟ କାଟେ । ସଂସ୍ଥାର ମୁଖ୍ୟ ହିସାବରେ କର୍ମଶାଳା, ସେମିନାର୍, ଆଲୋଚନାଚକ୍ରଗୁଡ଼ିକରେ ଭାଗନେବାକୁ ବହୁ ନିମନ୍ତ୍ରଣ ଆସେ । ସରକାରୀ ଦପ୍ତର ଓ ମନ୍ତ୍ରଣାଳୟରୁ ମଧ୍ୟ ଅନେକ ସୂଚନା ମିଳେ । ସେସବୁରେ ଭାଗ ନେଲାପରେ, ନିଜର ନିଃସଙ୍ଗତା ଓ ନିରର୍ଥକତା ବେଶୀ ଅନୁଭବ କରିହୁଏ । ପାହାଡ଼ ଉପରେ, ଉପତ୍ୟକା ମଝିରେ ବା ଝରଣା କୂଳରେ ଆଦିବାସୀ ମାଆ ଓ ବାପାମାନଙ୍କୁ ଭେଟି ଦୁଇପଦ ସୁଖଦୁଃଖ ହେବାରେ ଯେଉଁ ଆତ୍ମସନ୍ତୋଷ ମିଳେ, ତାହା ଅନେକ ପୁଞ୍ଜିଭୂତ ଯନ୍ତ୍ରଣା ଦୂର କରିବାରେ ସହାୟକ ହୁଏ । ମଣିଷ ସହ ମଣିଷର ସମ୍ପର୍କ ବଢ଼ିଲେ ପଳାୟନର ପ୍ରଶ୍ନ ଉଠେନାହିଁ । ସମସ୍ତେ ଏକାଠି ଜିଇଁବା ଓ ମରିବା ଅର୍ଥପୂର୍ଣ୍ଣ ହୋଇଯାଏ ।



## ୪୧

ବିଖ୍ୟାତ ପଦାର୍ଥ ବିଜ୍ଞାନୀ ଓ ନୋବେଲ ପୁରସ୍କାର ବିଜେତା ପ୍ରଫେସର ରିଚ୍ଚର୍ଡ ଫିନ୍‌ମ୍ୟାନ (Prof. Richard Feynman) କହିଥିଲେ ଯେକୌଣସି ପ୍ରାକୃତିକ ଦୁର୍ବିପାକ ହେତୁ ଯଦି ଏ ପୃଥିବୀ ଧ୍ୱଂସ ପାଇଯାଏ - ତେବେ ଏପରି ଏକ ବାକ୍ୟ ରଚନା କରିବା କଥା ଯାହା ପରବର୍ତ୍ତୀ ସୃଷ୍ଟି ପାଇଁ ସବୁଠାରୁ ବେଶି ଅର୍ଥ ଆଣି ଦେବ । ସେ ଏହି ବାକ୍ୟଟିକୁ ତାଙ୍କର ଅଦ୍ୱିତୀୟ କୃତୀ- 'ଲେକ୍‌ଚର୍‌ସ ଅନ୍ ଫିଜିକ୍‌ସ' (Lectures on Physics)- ବହିରେ ଉଲ୍ଲେଖ କରିଛନ୍ତି । ଏଇଟି ହେଲା ପୃଥିବୀ ଅଣୁପରମାଣୁରେ ଗଢ଼ା ଓ ଏଗୁଡିକ ଦୂରରେ ଥାଇ ପରସ୍ପରକୁ ଆକର୍ଷଣ କରନ୍ତି । କିନ୍ତୁ ଯଦି କେବେ ଏକାଠି ହୁଅନ୍ତି, ତେବେ ପରସ୍ପରକୁ ବିକର୍ଷଣ କରି ଛିଟିକି ପଡନ୍ତି । ସେଇଭଳି ମଣିଷର ଦର୍ଶନ ଓ ଆଧାତ୍ମିକତାକୁ ନେଇ ଯଦି ଏଇଭଳି ଏକ ବାକ୍ୟଗଠନ କରିବାକୁ ମୋତେ କୁହାଯାଏ ମୁଁ ଦସ୍ତୋଭସ୍କିଙ୍କ ସର୍ବୋଚ୍ଚ କୃତୀ 'ଦି ବ୍ରଦର୍ସ କାରାମାଜୋଭ' (The Brothers Karamazov) ବହିର ଏକ ଉକ୍ତିକୁ ଉଦ୍ଧାର କରିବି । ସେଇଟି ହେଲା-

ହେ ପିତାଭ୍ରାତାମାନେ । ନର୍କ କ'ଣ ? - ଏହା ହେଉଛି ଭଲ ନପାଇ ପାରିବାର ଯନ୍ତ୍ରଣା (-Fathers and Brothers - What is hell - It is suffering of being unalbe to love) । ଏହି ଉପନ୍ୟାସର ଚରିତ୍ର ଫାଦର ଜୋସିମା ଏବଂ ତରୁଣ ଆଲ୍ୟୋଶା କାରାମାଜୋଭ୍‌ଙ୍କ ଭିତରେ ଏହା ଏକ କଥୋପକଥନ । ଫାଦର ଜୋସିମା ଭଗବାନ ସଦୃଶ ମଣିଷ ଥିଲେ ଓ ଆଲ୍ୟୋଶା କାରାମାଜୋଭ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲା । ଫାଦର ଜୋସିମା ସବୁ କଥାକୁ ବିନାସର୍ତ୍ତରେ ଗ୍ରହଣ କରିବା ଓ ଅକୁଣ୍ଠିତଭାବେ ଭଲ ପାଇବାକୁ ଉପଦେଶ ଦେଇ ଆସୁଥିଲେ । ଫାଦର ଜୋସିମା ଯେଉଁ ଉପାସନା କ୍ଷେତ୍ରରେ ଥିଲେ ସେଠାରେ ପରମ୍ପରା ଥିଲା ଯେ ମରିଗଲା ପରେ ଯଦି ଫାଦର୍‌ମାନଙ୍କର ଶବ ନପଚିଲା ଓ ଗନ୍ଧ ନବାହାରିଲା, ତେବେ ସେ ଜଣେ ସତରେ ଶୁଦ୍ଧ ଓ ଆଧାତ୍ମିକ ମଣିଷ । ଏହା ଏକ ନିର୍ଭରଯୋଗ୍ୟ ପ୍ରମାଣ ବୋଲି ସମସ୍ତେ ଧରି ନେଇଥାଆନ୍ତି । ଦୁର୍ଭାଗ୍ୟବଶତଃ ଫାଦର ଜୋସିମା ମରିଗଲାପରେ ତାଙ୍କର ଶବରୁ ଗନ୍ଧ ବାହାରିଲା । ତାଙ୍କ ଇଲାକାରେ ସମସ୍ତେ ଅନୁମାନ କରିଲେ ଯେ ଫାଦର ନିଶ୍ଚୟ କିଛି ପାପ କରିଛନ୍ତି ତାଙ୍କର ଜୀବନକାଳ ଭିତରେ । କିନ୍ତୁ ଆଲ୍ୟୋଶା କାରାମାଜୋଭ୍ ଦୃଢ଼ଭାବରେ କହିଥିଲା ଯେ ଫାଦର ଜୋସିମାଙ୍କ ଶବରୁ ଗନ୍ଧ ବାହାରିଲେ ମଧ୍ୟ ସେ ଜଣେ ପୁଣ୍ୟାତ୍ମା ଓ ମହାନ୍ । ସାରାପୃଥିବୀ ଯାହା କହୁପଛକେ ଏହା ସତ୍ୟ, ନିରାଟ ସତ୍ୟ । ଏଣୁ ଆମ ସମସ୍ତଙ୍କୁ ସେଇଭଳି ମଣିଷଙ୍କୁ ନିଃସର୍ତ୍ତ ଭଲ ପାଇବା ଓ ଆପଣାର କରିବାର ସତ୍‌ସାହସ ରଖିବାକୁ ହେବ ।

କାଶୀପୁରରେ ୧୯୮୦ ମସିହା ଏପ୍ରିଲ୍ ମାସରେ ପହଞ୍ଚିବା ଦିନଠାରୁ ମୁଁ ସ୍ପଷ୍ଟ ଲକ୍ଷ୍ୟ କରିଛି ଯେ କୋରାପୁଟର ଆଦିବାସୀ ଅଞ୍ଚଳରେ ପୋଲିସ୍‌ଙ୍କୁ ସମସ୍ତଙ୍କର ଭୟ । ଆଦିବାସୀ ପାଇଁ ପୋଲିସ ଗୋଟାଏ ରାଜାଭଳି । ଅବଶ୍ୟ ଅନ୍ୟଦୁଇଟି ରାଜା ହେଉଛନ୍ତି ଫରେଷ୍ଟଗାର୍ଡ଼ ଓ ରେଭେନ୍ୟୁ ଇନ୍‌ସ୍‌ପେକ୍ଟର । କୋରାପୁଟ ଜିଲ୍ଲାର ଆୟତନ କେରଳଠାରୁ ଅଧିକ କିନ୍ତୁ ପୋଲିସମାନେ ସବୁଠାରେ ନଥାନ୍ତି । କାଶୀପୁରରେ ୪୨୦ଟି ଗାଁ ଓ ଜନସଂଖ୍ୟା ପ୍ରାୟ ଲକ୍ଷେ । ୧୫୦୦ବର୍ଗ କି.ମି. ଅଞ୍ଚଳ ପାଇଁ ଗୋଟିଏ ଥାନା । ଥାନାବାବୁଙ୍କୁ ସମସ୍ତଙ୍କର ଡର । ହେଡ୍ଡୁ ଓ କନେଷ୍ଟବଳମାନେ ଗ୍ରାମରକ୍ଷୀମାନଙ୍କ ସହ ବେଳେବେଳେ ଗାଁକୁ ଯାଆନ୍ତି । ଚୋରି ଡକାୟତି ପ୍ରବଳ । କେଉଁଠି କାହାର ଗୋରୁ, ଛେଳି ଚୋରି ହେଲାଣି ତ ଆଉ କେଉଁଠି ଘରେ ସିନ୍ଧିକରି ଚୋରି ହେଲାଣି । କେଉଁଠି ଆଦିବାସୀ ମାଆମାନଙ୍କ ନାକରୁ କିଏ ସୁନା ଛିଣ୍ଡାଇ ନେଲାଣି । କିଏ କେଉଁଠି ଫସଲ କାଟି ନେଲାଣି । ଗୋଟାଏ ଚୋର ଦଳ ଥାଆନ୍ତି ସେମାନଙ୍କର ପେଶା ହେଲା ଚୋରି କରିବା । ଏଥିପାଇଁ କାଶୀପୁର ଥାନାରେ ଦିନରାତି କାମ ଚାଲିଥାଏ । ବେଳେବେଳେ ମର୍ଡର କେଶ୍ ଆସେ । ଥାନାବାବୁମାନେ ସବୁ ମୋ ବିଷୟରେ ଖୁବ୍ କୌତୁହଳର ସହ ସୂଚନା ସଂଗ୍ରହ କରୁଥାଆନ୍ତି । ମୋର କୋରାପୁଟର କଲେକ୍ଟର ଏବଂ ଏସ୍.ପି.ଙ୍କ ସହ ସମ୍ପର୍କ ଅଛି ବୋଲି ଖବର ପାଇ ଥାଆନ୍ତି । ମୁଁ ଯଦି ଥାନାରେ ଲାଞ୍ଚ ମିଛ ଓ ଅନ୍ୟାୟ କାମ କେମିତି ଚାଲିଛି ଏସ.ପି. ଓ କଲେକ୍‌ଟରଙ୍କୁ ଜଣାଇଦିଏ, ସେମାନେ ଚାକିରିରୁ ନିଲମ୍ବିତ ହୋଇଯିବେ ବା ବରଖାସ୍ତ ହୋଇଯିବେ ।

ପ୍ରକୃତରେ ୧୯୮୧ ରୁ ୧୯୮୫ ଭିତରେ କୋରାପୁଟର ତତ୍‌କାଳୀନ ଏସ୍.ପି. ଶ୍ରୀ ବିପିନ ବିହାରୀ ମିଶ୍ର ଓ ଶ୍ରୀ ବିଦ୍ୟାଭୂଷଣ ମହାନ୍ତି ମୋତେ ଜାଣିଥିଲେ । ଥରେ ଏଇମିତି ସିରିପାଇ ଅଞ୍ଚଳରେ ଗୋଟିଏ ଗାଁରେ ମୁଁ ବୁଲୁଥିବା ବେଳେ କାନ୍ଦିକାନ୍ଦି ଜାନୀ ବୁଢ଼ା ଅଭିଯୋଗ କଲା ଯେ ଗତ ରାତିରେ ତା'ର ଘରୁ କିଏ ସିନ୍ଧିକରି ଟଙ୍କା ସୁନା ପ୍ରାୟ ପାଞ୍ଚହଜାର ଟଙ୍କାର ନେଇଯାଇଛି । ମୁଁ ଆଶ୍ୱାସନା ଦେଲି ଯେ ଥାନାବାବୁ ମୋର ଜଣାଶୁଣା । ଅନୁସନ୍ଧାନ କରି ଚୋରି ଜିନିଷ ବାହାର କରିଦେବେ । ମୋ ଠାରୁ ଚୋରର ଖବର ପାଇ ଥାନାବାବୁ ତାଙ୍କର ଥାନାରୁ ହେଡ୍ଡୁ ଓ ଦୁଇଜଣଙ୍କୁ ସେ ଗାଁକୁ ପଠାଇଲେ । ହେଡ୍ଡୁ ଓ କନେଷ୍ଟବଳମାନେ ଜାନୀ ବୁଢ଼ା ପାଖରେ ପହଞ୍ଚି କହିଲେ ଯେ ତା'ପାଇଁ ଘାଟି ଚଢ଼ି ଏତେବାଟ ଆସିଛନ୍ତି । ହଜାରେ ଟଙ୍କା ନଦେଲେ ସେ କିଛି ଇନ୍‌କ୍ୱାରୀ କରିବେ ନାହିଁ । ଜାନୀବୁଢ଼ା ନାରାଜ ହେବାରୁ ତାଙ୍କୁ ଅର୍ଦ୍ଧଲଗ୍ନ କରି ଗାଁ ରାସ୍ତାରେ ବୁଲାଇଲେ ଓ ଟଙ୍କା ଜବରଦସ୍ତ ଆଦାୟ କଲେ । ଗୋଟାଏ ସପ୍ତାହ ପରେ ମୁଁ ସେ ଗାଁରେ ପହଞ୍ଚିଲାକ୍ଷଣି ଜାନୀ ବୁଢ଼ା ମୋତେ ଗାଳିକଲା । କହିଲା, ସୁନା ଚୋରି ହୋଇଥିଲା କିନ୍ତୁ ସେ କାହାକୁ କହୁନଥିଲା । ମୋ କଥାରେ ପଡି ଥାନାରେ ଅଭିଯୋଗ କଲା, ଏବଂ ଟଙ୍କା ଗଲା ଓ ସବୁଠାରୁ ଦୁଃଖର କଥା ତାର ଇଜ୍ଜତ ବି ଗଲା । ସେ ଭୋ ଭୋ ହୋଇ କାନ୍ଦି ପକାଇଲା । ମୁଁ ତତ୍‌କ୍ଷଣାତ୍ ଫେରି ଥାନାବାବୁଙ୍କୁ ଭେଟିଲି ଓ ସବୁକଥା ଜଣାଇଲି । ମୁଁ ଧମକ ଦେଲି ଯେ ଯଦି ହେଡ୍ଡୁ ଟଙ୍କା ନଫେରାଏ ଓ କ୍ଷମା ନମାଗେ ମୁଁ ଏସ୍.ପି.ଙ୍କୁ ନିଶ୍ଚୟ ଏକଥା ଜଣାଇବି । ଥାନାବାବୁ ଖୁବ୍ ଡରିଗଲେ ଓ ଜାନୀ ବୁଢ଼ାକୁ ଏକ

ହଜାର ଟଙ୍କା ଫେରାଇ ଦେଲେ । କୋରାପୁଟର ଇତିହାସରେ ଏହା ପ୍ରଥମ ଓ ଅଭିନବ ଘଟଣା ବୋଲି ମାନିବାକୁ ହେବ । ମୁଁ ଏକଥା ଏସ.ପି.ଙ୍କୁ ପରେ କହିଥିଲି ଓ ସେ ଶୁଣି ଅବାକ୍ ହୋଇଯାଇଥିଲେ ।

କାଶୀପୁର ଆସିବା ପୂର୍ବରୁ ଯେଉଁ ପ୍ରଶାସନିକ ଅଧିକାରୀମାନେ ଗରିବ ଓ ଆଦିବାସୀମାନଙ୍କ ପାଇଁ ଉତ୍ସର୍ଗୀକୃତ ସେମାନଙ୍କୁ ବିଭିନ୍ନ ବାଟରେ ମୁଁ ଜାଣିଥିଲି । ମୋର ଯେଉଁ ବନ୍ଧୁମାନେ ଉଚ୍ଚ ପଦପଦବୀରେ ଥିଲେ ସେମାନେ ଏକ ତାଲିକା ନିଶ୍ଚିତ ପ୍ରସ୍ତୁତ କରିଥିଲେ । କୋରାପୁଟରେ ତତ୍କାଳୀନ ପୋଲିସ ଏସ.ପି. ଶ୍ରୀ ବିଦ୍ୟାଭୂଷଣ ମହାନ୍ତି ଏ ତାଲିକାର ଶୀର୍ଷରେ ଥିଲେ । ଶ୍ରୀ ମହାନ୍ତିଙ୍କୁ ମୁଁ କୋରାପୁଟରେ କେବେ କେମିତି ଭେଟି ଆଦିବାସୀମାନଙ୍କ ଉପରେ ଶୋଷଣ ପ୍ରକ୍ରିୟାର ବିଭିନ୍ନ ଦିଗ ବିଷୟରେ କହୁଥିଲି । ତାଙ୍କର ଚାକିରି ଜୀବନ ଆରମ୍ଭ ରାୟଗଡ଼ାରେ । ତେଣୁ ଆଦିବାସୀ ଅଞ୍ଚଳର ସମସ୍ୟା ବୁଝିବାକୁ ତାଙ୍କୁ ବେଶି ସମୟ ଲାଗୁନଥିଲା । ଆମେ ସମସ୍ତେ ପଢୁଥିବା ଓ ଭଲଲାଗୁଥିବା ପୁସ୍ତକଗୁଡ଼ିକର ଆଲୋଚନା କରୁଥିଲୁ । ସେ କିନ୍ତୁ ମୋତେ ତାଙ୍କର ରାୟଗଡ଼ାର ଚନ୍ଦ୍ରଗିରି ହେଉ ବା ମାଲକାନ୍‌ଗିରିର ଜାନ୍‌ବାଇ ଅଞ୍ଚଳ ହେଉ, ବଣ୍ଡା ଅଞ୍ଚଳ ହେଉ ବା ଲାଞ୍ଜିଆ ସଉରା ଅଞ୍ଚଳ ହେଉ, ସେ ଅଞ୍ଚଳରେ ପଦଯାତ୍ରା କରିବାକୁ ଆହ୍ୱାନ ଦେଉଥିଲେ । ମୁଁ ମଧ୍ୟ ସହମତି ଦେଇଥିଲି । ଦିନେ ହଠାତ୍ ତାଙ୍କ ଠାରୁ ଖବର ଆସିଲା ଯେ ସେ ଓ ଅରବିନ୍ଦ (ସେ ସମୟର ଅତିରିକ୍ତ ଜିଲ୍ଲାପାଳ) ବଣ୍ଡା ପର୍ବତରେ ମୁଦୁଲିପଡା ଠାରୁ ଅଣ୍ଡରାହାଲ ପର୍ଯ୍ୟନ୍ତ ପଦଯାତ୍ରା କରିବେ । ଏହା ଏକ ଦୁଃସାହସିକ ପଦକ୍ଷେପ । ବିଖ୍ୟାତ ଲେଖକ ଓ ନୃତତ୍ତ୍ୱବିତ୍ ସ୍ୱର୍ଗୀୟ ଭେରିଅର ଏଲ୍‌ୱିନ୍ ଏଇଭଳି ପଦଯାତ୍ରା କରି ନଥିବେ ବଣ୍ଡାମାନଙ୍କ ଉପରେ ତାଙ୍କର ବହି ଲେଖିଲା ବେଳେ । ମୁଁ କିନ୍ତୁ ହତଭାଗ୍ୟ ସେମାନଙ୍କ ସହ ଯାଇପାରିଲି ନାହିଁ । ବଣ୍ଡାମାନଙ୍କର ସମସ୍ୟା ବୁଝିବାରେ ସେ ଆଗରେ ଥିଲେ । ବଣ୍ଡା ଘାଟିରେ ଥାନା ଖୋଲିବା ପ୍ରସ୍ତାବକୁ ନେଇ ସେ ଅନେକ ପ୍ରଶ୍ନ ଉଠାଇଥିଲେ ।

ଦିନେ ତାଙ୍କସହ କଥା ହେଉ ହେଉ ମୁଁ ଫରାସୀ ଔପନାସିକ ଆଲ୍‌ବେୟାର କାମ୍ୟୁଙ୍କ କଥା ଶ୍ରୀ ମହାନ୍ତିଙ୍କୁ କହୁଥିଲି ଯେ ପୋଲିସ୍ ହେଉ କି ଚୋର ହେଉ, ସମସ୍ତେ ନିଜ ନିଜର ଅପରାଧ, ଜଘନ୍ୟତା ଓ ଅନ୍ୟକୁ ବିନାଶ କରିବାର ମାନସିକତା ଲୁଚାଇ ରଖିଛନ୍ତି ଓ ଆପଣା ଆପଣା ବାଟରେ ଏହା ସହିତ ଏକାକୀ ଲଢ଼େଇ କରୁଛନ୍ତି ମଧ୍ୟ । କିନ୍ତୁ ସବୁଠାରୁ ଉଚିତ ହେବ ଯଦି ସମସ୍ତେ ମିଶିଯାଆନ୍ତେ ଓ ନୂତନ ମାନସିକତାର ସହ ସଂଘବଦ୍ଧଭାବେ ସବୁ ଅପରାଧ ବିରୁଦ୍ଧରେ ସଂଗ୍ରାମ କରନ୍ତେ । ସେ ମୋ ସହ ଏକମତ ହୋଇଥିଲେ । ଏକ ଉଦାହରଣ ଦେଇ ସେ କହୁଥିଲେ ଯେ ମାଲ୍‌କାନାଗିରି ଜିଲ୍ଲାର ଏକ ଅନାମଧେୟ ଗାଁରେ କୋୟା ଆଦିବାସୀଟିଏ ହତ୍ୟା ଅଭିଯୋଗରେ ଆଜୀବନ କାରାଦଣ୍ଡ ପାଇଥିଲା । ପରେ ଜଣାପଡିଲା ଯେ ସ୍ଥାନୀୟ ପୋଲିସ ତାକୁ ମିଥ୍ୟା ପ୍ରମାଣ ଦେଇ ଏଇଭଳି କେସ୍‌ରେ ପକାଇଛି । ଶ୍ରୀ ମହାନ୍ତି ଜିଲ୍ଲା ଜଜ୍‌ଙ୍କ ପାଖରେ ଦରଖାସ୍ତ କରି ନିରୀହ ଲୋକଟିକୁ ମୁକୁଳାଇ ଥିଲେ । କାଶୀପୁରର ଆଦିବାସୀମାନେ ଅଣଆଦିବାସୀମାନଙ୍କ ଦ୍ୱାରା କେତେବାଟରେ ଲୁଣ୍ଠିତ ଓ

ଅତ୍ୟାଚରିତ ହୋଇଥିଲେ । ସବୁଠାରୁ ଅପମାନଜନକ ଘଟଣା ଥିଲା ଯେ ଦୀପାବଳୀ ପର୍ବ ଦିନ ଅଣଆଦିବାସୀମାନେ ଆଦିବାସୀଙ୍କ ଫସଲ କାଟିନେବେ ବା ଗାଈ, ଛେଳି ଜବରଦସ୍ତି ଅପହରଣ କରିବେ । ଶ୍ରୀ ମହାନ୍ତି କାଶୀପୁରର ଥାନା ବାବୁଙ୍କୁ କହିଥିଲେ ଯେ ଏ ଅମାନୁଷିକ ଅନ୍ୟାୟ ପରମ୍ପରା ଯେମିତି ବନ୍ଦ ହୁଏ । ଏବଂ ଏହା ବନ୍ଦ ହୋଇଯାଇଥିଲା ପୋଲିସର ପ୍ରତ୍ୟକ୍ଷ ହସ୍ତକ୍ଷେପ ଫଳରେ । ଜାଆଁଗତ ସମସ୍ୟା ଓ ରାଜନୈତିକ ପରିସ୍ଥିତିକୁ ବୁଝି ଶ୍ରୀ ମହାନ୍ତି ଆଦିବାସୀମାନଙ୍କୁ ଯାରୁପର୍ଯ୍ୟନ୍ତ ନ୍ୟାୟ ଦେବାକୁ ଚେଷ୍ଟା କରୁଥିଲେ । ଏଥିପାଇଁ କୋରାପୁଟର ବିଭିନ୍ନ ଅଞ୍ଚଳ ସେ ଛଦ୍ମବେଶରେ ବୁଲୁଥିଲେ । ତାଙ୍କ ବିଷୟରେ ତାଙ୍କଠାରୁ ଏଇଭଳି ଅନେକ ରୋମାଞ୍ଚକର ଅଥଚ ସତ୍ୟଘଟଣା ଶୁଣିବାକୁ ମିଳୁଥିଲା ମୋତେ । କହିବାକୁ ଗଲେ ସେ ସତ୍ୟ, ନ୍ୟାୟ ଏବଂ ସଚ୍ଚୋଟପଣିଆର ଏକ ବିରଳ ଉଦାହରଣ ଥିଲେ । ଆମେ ସାଧାରଣ ମଣିଷଭାବେ ତାଙ୍କୁ ସମ୍ମାନ ଓ ସ୍ନେହ ପ୍ରଦର୍ଶନ କରୁଥିଲୁ । ତାଙ୍କ ବିଷୟରେ ଯିଏ ଯାହା କହୁନା କାହିଁକି, ସେ ଆମ ପାଇଁ ଜଣେ ଆଗଧାଡ଼ିର ମଣିଷ ଭାବେ ପ୍ରତିଷ୍ଠିତ ହୋଇଛନ୍ତି ।



# ୪୨

କାଶୀପୁରରେ ଜନ ସଂଗଠନ ଗଢ଼ିବାର ଯୋଜନା ଆମର ଏକ ମୂଳଲକ୍ଷ୍ୟ ଥିଲା । କାରଣ ଆମେ ଯୋଜନା କରିଥିଲୁ ଯେ, କାଶୀପୁରରେ ପାଞ୍ଚ ବର୍ଷ କାର୍ଯ୍ୟକ୍ରମ ଅତି ତୀବ୍ର ଗତିରେ ସମାପ୍ତି କରି ଓହରି ଯିବୁ । କାର୍ଯ୍ୟକ୍ରମ ଗୁଡିକ ଆଗକୁ ନେବାର ଦାୟିତ୍ୱ ଆମେ ସ୍ଥାନୀୟ ଲୋକ ସଂଗଠନମାନଙ୍କ ଉପରେ ନ୍ୟସ୍ତ କରିବୁ । ଯଦିଓ ସମସ୍ତେ ଆମର ଏ ଚିନ୍ତାଧାରା ବିରୁଦ୍ଧରେ ଅନେକ ପ୍ରଶ୍ନ ଉଠାଉ ଥାଆନ୍ତି, ଆମେ କିନ୍ତୁ ଦୃଢ଼ ପ୍ରତିଜ୍ଞ ଥାଉ । କାର୍ଯ୍ୟକ୍ରମ ଆରମ୍ଭ କରିବା ସହଜ, କିନ୍ତୁ ସ୍ୱେଚ୍ଛାସେବୀ ସଂଗଠନ କେଉଁଠି ଓହରି ଯିବାର ଉଦାହରଣ ପ୍ରାୟ ଦେଖାଯାଏ ନାହିଁ । ଆମର ଶୁଭେଚ୍ଛୁମାନେ କହୁଥାଆନ୍ତି ଯେ ଏବେ ତ କାମ ଆରମ୍ଭ ହୋଇଛି, ମାତ୍ର ଓହରି ଯିବା କଥା ଉଠୁଛି କାହିଁକି ? ଲୋକ ସଂଗଠନ କହିଲେ ଆମର କିଛି ଧାରଣା ଥାଏ । ଦେଶସାରା ବିଭିନ୍ନ ପରିପ୍ରେକ୍ଷୀରେ ଲୋକସଂଗଠନମାନ ଗଢି ଉଠିଛି ଓ ବିଭିନ୍ନ ସମସ୍ୟା ଉପରେ ସେମାନେ ସଂଘର୍ଷରତ ଅଛନ୍ତି । ସଂଘର୍ଷ ମଧ୍ୟ ସରି ନାହିଁ କେଉଁଠି । ସେଠାରେ ମଧ୍ୟ ସଂଗଠନମାନେ ଓହରି ଯାଇ ନାହାନ୍ତି । ତିଲୋନିଆରେ ମୋର ପ୍ରିୟବନ୍ଧୁ ଖେମରାଜ(Khemraj) ସହ ଗୋଟିଏ ଅପହଞ୍ଚ ଗାଁର ଏକ କୋଠରିରେ ମୁଁ ପୂରା ବର୍ଷଟିଏ ଧରି ସଂଗଠନ ଓ ସଂଘର୍ଷ ବିଷୟରେ ବିଚାର ଆଲୋଚନା କରିଛି । ତାହା ପରି ମୋର କେବେ ଉଗ୍ର ବାମପନ୍ଥୀ ଚିନ୍ତାଧାରା ନଥିଲା । ମୁଁ ମାନବବାଦୀ ଥିଲି ଓ ମାନବୀୟ ଦୃଷ୍ଟିକୋଣରୁ ବିଚାର କରୁଥିଲି । ଏପରିକି ବିକାଶ ଓ ପରିବର୍ତ୍ତନର ବିଭିନ୍ନ ଦିଗଗୁଡ଼ିକୁ ମାନବିକ ସ୍କେଲ୍‌ରେ ମାପୁଥିଲି । ଏଇଥିପାଇଁ ଆମ ଭିତରେ ବହୁତ ଯୁକ୍ତିତର୍କ ହେଉଥିଲା । ଆମେ ଦୁହେଁ ନିଜ ନିଜ ଯୁକ୍ତିରେ ଅଟଳ ଥିଲୁ । କାଶୀପୁରର ନିରୀହ ଆଦିବାସୀମାନଙ୍କୁ ଜାଣିଲାପରେ ଓ ସେମାନଙ୍କର ସାଂସ୍କୃତିକ ନୀରବତାକୁ ଅଧ୍ୟୟନ କରିଲାପରେ ମୋର ମନେ ହେଲା ଯେ, ଏଠାରେ ସଂଘର୍ଷକୁ ଆଧାର କରି ଲୋକ ସଂଗଠନ ଗଢ଼ି ହେବନାହିଁ । ଅନେକ ଦିନ ଲାଗିଯିବ କିନ୍ତୁ ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମ ଜରିଆରେ ଲୋକଙ୍କୁ ଏକାଠି କରିହେବ ଓ ଲୋକେ ଏକାଠି ହେଲେ ସଂଗଠନ ଆପଣାଛାଏଁ ଗଢ଼ି ଉଠିବ । ଅନେକ ବନ୍ଧୁ ପରାମର୍ଶ ଦେଇଥିଲେ ଯେ ଆଦିବାସୀମାନଙ୍କର ବିକାଶ ପାଇଁ ସମବାୟ ସମିତି ଏକ ଉଚିତ ମାଧ୍ୟମ । ଗୁଜୁରାଟର 'ସେଓ୍ୱା'(Sewa), ଆନନ୍ଦ ଦୁଗ୍ଧ ଉତ୍ପାଦନ ସମବାୟ ସମିତି ବା ଅମୁଲ ଡାଏରୀ, ଆନ୍ଧ୍ରପ୍ରଦେଶର ଗିରିଜନ କୋଅପରେଟିଭ କର୍ପୋରେସନ ଏବଂ ସାମ୍ମୁଖ୍ୟ ଆଦି ବିଭିନ୍ନ ସଫଳ ସଂସ୍ଥାମାନଙ୍କ ବିଷୟରେ ମୁଁ ପଢିଥିଲି । ସମବାୟ ସମିତି ଦ୍ୱାରା ଲୋକେ ଲାଭାନ୍ୱିତ ହେଉଛନ୍ତି ଓ ନିଜର ବିକାଶର ଦିଗ ନିର୍ଣ୍ଣୟ କରୁଛନ୍ତି । ଲାଭାଂଶର ଏକ ଭାଗ ମଧ୍ୟ ସ୍ଥାନୀୟ ବିକାଶ ପାଇଁ ନିୟୋଜିତ ହେଉଛି । ସମବାୟ ସମିତି ମାଧ୍ୟମରେ ସ୍ଥାନୀୟ ସହଭାଗିତା ବହୁଗୁଣରେ

ବଢ଼ିଯାଇଛି । ସାମାଜିକ, ଆର୍ଥିକ ଓ ରାଜନୈତିକ ବିକାଶରେ ସମବାୟ ସମିତି ଗୁଡିକ ସହାୟତା କରିପାରିବେ ବୋଲି ମୋର ଧାରଣା ଜନ୍ମିଥିଲା । ସମବାୟ ସମିତି ଓ ସମବାୟ ଆନ୍ଦୋଳନ ଗୁଡିକ ଓଡ଼ିଶା ପରିପ୍ରେକ୍ଷୀରେ ସଫଳ କି ବିଫଳ ହୋଇଛନ୍ତି ତାହା ମୁଁ ଜାଣିବାକୁ ଆଗ୍ରହ ପ୍ରକାଶ କରିଥିଲି । ତେଣୁ ଓଡ଼ିଶାର ସମବାୟ ଆନ୍ଦୋଳନରେ ମୁଖ୍ୟ ଭୂମିକା ନେଇଥିବା ଶ୍ରୀ ସନ୍ତୋଷ ସାହୁଙ୍କୁ ମୁଁ ପରାମର୍ଶ କରିଥିଲି । ଆଦିବାସୀ ଅଞ୍ଚଳରେ ସାହୁକାରମାନଙ୍କ ପ୍ରାଦୁର୍ଭାବକୁ କମାଇବା ପାଇଁ 'ଲ୍ୟାମ୍ପସ୍ ବା ବୃହତ୍‌ମୁଖୀ ସମବାୟ ସମିତିମାନ ଗଢ଼ା ଯାଇଥିଲା । ମୁଁ 'ଲ୍ୟାମ୍ପସ' (Lamaps) ଗୁଡିକର ଭୂମିକା କାଶୀପୁରରେ କ'ଣ ସବିଶେଷ ଜାଣିବାକୁ ଚାହିଁଥିଲି । ଏଗୁଡିକ କିପରି ଋଣ ଦେଉଛି ଓ ଋଣ ଆଦାୟ କରୁଛି, ମହାଜନୀ କାରବାର କମାଇବା ପାଇଁ କି ପଦକ୍ଷେପ ନେଉଛି ଏବଂ ଏହା ସହିତ ଟି.ଡି.ସି.ସି.(TDCC)ର ଭୂମିକାକୁ ଜାଣିବା ପାଇଁ ମୁଁ ଅନେକ ଉଦ୍ୟମ କରିଛି । ଏଗୁଡିକ କାହିଁକି ସଫଳ ହେଲା ନାହିଁ ତାହା ମଧ ଜାଣିବାକୁ ବିଳମ୍ବ ଲାଗିଲା ନାହିଁ । ଆଦିବାସୀମାନଙ୍କ ଧାରଣା ଥିଲା ଯେ ଲ୍ୟାମ୍ପସ୍ ଏବଂ ଟି.ଡି.ସି.ସି.ମାନେ ସାହୁକାର ଠାରୁ ଅଧିକ ଅତ୍ୟାଚାରୀ ଏବଂ ଶୋଷକ ଗୋଷ୍ଠୀ । ଏଥିପାଇଁ ସମବାୟ ସମିତି ଗୁଡିକ ଉପରେ ମୋର ଧାରଣା ମୂଳରୁ ଖରାପ ଥିଲା । ଓଡ଼ିଶାରେ ସମବାୟ ଆଇନ୍ ମଧ ଗରିବ ଲୋକଙ୍କ ହିତରେ ଯାଇ ନାହିଁ । ଋଣ ଗ୍ରସ୍ତ ହେବାପରେ ସାଧାରଣ ଲୋକେ ସମବାୟ ବିଭାଗ କର୍ମଚାରୀମାନଙ୍କ ଦ୍ୱାରା ଏତେ ହନ୍ତସନ୍ତ ହୋଇଛନ୍ତି ଯେ ଏହାର ଦ୍ୱାର ମାଡିବାକୁ ଡରୁଛନ୍ତି । କେତେ ଲୋକଙ୍କ ଘରବାଡି, ଜମି ଓ ସ୍ଥାବର ଅସ୍ଥାବର ସମ୍ପତ୍ତି ନିଲାମ ହୋଇଛି । ଆଦିବାସୀମାନେ ମୁକୁଳି ନାହାନ୍ତି ।

କାଶୀପୁରର ଡଙ୍ଗାସିଲ୍ ଅଞ୍ଚଳରେ ଯେତେବେଳେ ଅନେକଗୁଡିଏ ଜଳସେଚନ ପ୍ରକଳ୍ପ ଆମେ ତିଆରି କଲୁ ଓ ଲୋକମାନେ ଏଥିରେ ଅକୁଣ୍ଠ ସହଭାଗିତା ପ୍ରଦର୍ଶନ କଲେ ତାହା ପରେ କଥା ଉଠିଲା ଯେ ଲୋକମାନେ ସେମାନଙ୍କର ଜମିରେ ଶୀତ ଓ ଖରାଦିନେ କ'ଣ ଚାଷ କରିବେ । ବର୍ଷା ଦିନେ ମକା, ମାଣ୍ଡିଆ ଓ ଧାନ ଏବଂ ଖରାଦିନେ ମକା ଆଦିବାସୀଙ୍କ ପ୍ରିୟ ଫସଲ । ଶୀତ ଦିନେ କାଶୀପୁରରେ ସାହୁକାରମାନେ କେବଳ ପନିପରିବା ଲଗାଇ ଥାଆନ୍ତି । ଆଳୁ, କୋବି ବା ବିଲାତିବାଇଗଣ କେବେ କେବେ କାଶୀପୁର ହାଟକୁ ଆସୁଥାଏ । ଆଦିବାସୀମାନେ ପ୍ରସ୍ତାବ ଦେଲେ ଯେ ସେମାନେ ଆଳୁ, କୋବି, ବିଲାତି ବାଇଗଣ ଆଦି ଚାଷ କରିବେ । ଆମେ ସହମତ ହୋଇଥିଲୁ । ଗାଁମାନେ ଏତେ ପରିବା ଉତ୍ପାଦନ କରିଲେ ଯେ ଡଙ୍ଗାସିଲ ହାଟରେ ବୋଝ ବୋଝ ପରିବା ଭରି ଗଲା । କିନ୍ତୁ କିଣିବ କିଏ ? ଡଙ୍ଗାସିଲକୁ ସବୁଦିନିଆ ରାସ୍ତା ନଥାଏ । ଗାଡି ମଟର ଚାଲୁ ନଥାଏ । ତେଣୁ ଡଙ୍ଗାସିଲ୍‌ର ଉତ୍ପାଦିତ ପରିବା ବିକ୍ରି ନହୋଇ ପଚିଲା ଓ ଲୋକମାନେ ମୁଣ୍ଡରେ ହାତ ଦେଲେ । ପରିଶ୍ରମ ବୃଥା ହୋଇଗଲା । ଆମର ପରାମର୍ଶଦାତାମାନେ କହିଲେ ଯେ ପିଆଜ ରସୁଣ ଆଦି ଫସଲ କଲେ ଭଲହେବ କାରଣ ଏ ଫସଲ ବିକ୍ରି ନହେଲେ ବି କିଛି ଦିନ ରଖିହେବ । ସହଜରେ ପଚିବ ନାହିଁ । କିନ୍ତୁ ପନିପରିବା କେବଳ ଉତ୍ପାଦନ କଲେ ଯଥେଷ୍ଟ ନୁହେଁ । ଲାଭ ପାଇବାକୁ ହେଲେ ସମବାୟ ସମିତିଟିଏ ଗଢିବାକୁ ହେବ । ଆମେ ଆଦିବାସୀ ଚାଷୀମାନଙ୍କ ସହ

ଆଲୋଚନା କଲୁ ଓ ସମସ୍ତେ ଏକ ପନିପରିବା ଉତ୍ପାଦନକାରୀ ମାର୍କେଟିଂ ସମବାୟ ସମିମତି ପଞ୍ଜିକରଣ କରିବାକୁ ସହମତ ପ୍ରକାଶ କରିଲେ । ଏ ସମୟରେ ଜାତୀୟ ସମବାୟ ସମିତି ବିକାଶ କର୍ପୋରେସନ୍‌ର ଭୁବନେଶ୍ୱରର କର୍ମକର୍ତ୍ତା ଶ୍ରୀ ଔଧଙ୍କ ସହ କଥାବାର୍ତ୍ତା ହେଲା । କାଶୀପୁର ଭଳି ଏକ ଅନୁନ୍ନତ ଅଞ୍ଚଳରେ ପନିପରିବା ଉତ୍ପାଦନକାରୀ ବିକାକିଣା ସମବାୟ ସମିତିଟି ଗଢ଼ା ହେଉଛି ବୋଲି ସେ ସବୁପ୍ରକାର ସାହାଯ୍ୟ ଯୋଗାଇ ଦେବାକୁ ଆଗ୍ରହ ପ୍ରକାଶ କଲେ । ଦେଶସାରା ଯେଉଁଠି ଯେଉଁଠି ଏଇଭଳି ସମବାୟ ସମିତି ସଫଳତା ସହ କାର୍ଯ୍ୟ କରୁଛି ତାହାର ତାଲିକା ଦେଲେ । ସେମାନଙ୍କର ପଞ୍ଜିକରଣ ଓ ସଂବିଧାନ ଆଦି ମଧ୍ୟ ଯୋଗାଇଦେଲେ । ଡଙ୍ଗାସିଲ୍‌ରେ କାଶୀପୁର ପନିପରିବା ଉତ୍ପାଦନକାରୀ ବାଣିଜ୍ୟ ସମବାୟ ସମିତି ଗଢା ହେଲା ଓ ରେଜିଷ୍ଟ୍ରେସନ୍ ପାଇଁ ଦରଖାସ୍ତ କରାଗଲା । ଏଇଭଳି ସ୍ଥାନୀୟ ଉଦ୍ୟମରେ ଏକ ସମବାୟ ସମିତି ଗଢାଯିବା ଖବର ସବୁଆଡେ ବ୍ୟାପିଗଲା । ଜିଲ୍ଲାପାଳ ମଧ୍ୟ ସବୁପ୍ରକାର ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ । କିନ୍ତୁ ରେଜିଷ୍ଟ୍ରେସନ୍ ନହେଲେ କିଛି ହୋଇପାରିବ ନାହିଁ । ରାୟଗଡ଼ା ଆସିଷ୍ଟାଣ୍ଟ ରେଜିଷ୍ଟର ଅଫ କୋଅପରେଟିଭ ସୋସାଇଟଙ୍କୁ ଦରଖାସ୍ତ ଦେବା କ୍ଷଣି କାଶୀପୁରରୁ ଏକ ଅଭିଯୋଗ ଆସିଲା । ସ୍ଥାନୀୟ ଲ୍ୟାମ୍ପସ୍ ସେମାନଙ୍କର ଆପତ୍ତି ଅଭିଯୋଗ ଉଠାଇଲେ । ସେମାନେ କହିଲେ ଯେ ଏ ଅଞ୍ଚଳରେ ଲ୍ୟାମ୍ପସ୍ ସଫଳତାର ସହ କାର୍ଯ୍ୟ କରୁଛି । ସେଥିରେ ଅନ୍ୟ ଏକ ସମବାୟ ସମିତିର ଆବଶ୍ୟକତା ନାହିଁ । ସମବାୟ ବିଭାଗ ଏହାକୁ ଗୁରୁତ୍ୱର ସହ ବିଚାର କରିଲେ ଓ ଆମ ସମବାୟ ସମିତି ରେଜିଷ୍ଟ୍ରେସନ୍ ହେବାର ଆଶା ମଉଳିଗଲା । କିନ୍ତୁ ଶ୍ରୀ ଔଧ ଏନ୍.ସି.ଡି.ସି.(NCDC) ତରଫରୁ ଚାପ ପ୍ରୟୋଗ କଲେ ଓ ମୋତେ ରାଜ୍ୟ ସରକାର ଏବଂ କେନ୍ଦ୍ରସରକାର ସାହାଯ୍ୟ ଦେବାକୁ ପରାମର୍ଶ ଦେଲେ । ସେତେବେଳେ ଡକ୍ଟର କିଶାନ କାନୁନ୍‌ଗୋ ଯୋଜନା କମିଶନ୍‌ରେ ଉପଦେଷ୍ଟା ଥାଆନ୍ତି । ମୁଁ ତାଙ୍କର ଦୃଷ୍ଟି ଆକର୍ଷଣ କରି ଚିଠି ଲେଖିଲି । ସେ ଆଶ୍ଚର୍ଯ୍ୟ ହେଲେ ଯେ କାଶୀପୁର ପନିପରିବା ଉତ୍ପାଦନକାରୀ ବାଣିଜ୍ୟ ସମବାୟ ସମିତି ଭଳି ଅନୁଷ୍ଠାନଟିଏ ପଞ୍ଜିକରଣ ହୋଇପାରୁନାହିଁ । ସେ ଓଡ଼ିଶା ସରକାରଙ୍କୁ ପତ୍ର ଲେଖିଲେ । ଓଡ଼ିଶା ଗସ୍ତରେ ଆସିଥିଲାବେଳେ କୃଷି ସଚିବଙ୍କୁ ମଧ୍ୟ ପ୍ରଭାବିତ କରିଥିଲେ । ଦୀର୍ଘ ଦୁଇବର୍ଷ ଧରି କଠିନ ପରିଶ୍ରମ ଓ ଲେଖାପଢ଼ା ପରେ ଡଙ୍ଗାସିଲ୍‌ରେ ପନିପରିବା ଉତ୍ପାଦନକାରୀ ବାଣିଜ୍ୟ ସମବାୟ ସମିତି ରେଜେଷ୍ଟ୍ରିଭୁକ୍ତ ହେଲା । ଏହାର ମୁଖ୍ୟ ଉଦ୍ଦେଶ୍ୟ ଯଦିଓ ପନିପରିବା ଉତ୍ପାଦନ ଓ ବିକାକିଣା ଥିଲା, ଏହା ମଧ୍ୟ ଅନେକ ସ୍ଥାନୀୟ ଉତ୍ପାଦିତ ଦ୍ରବ୍ୟ ଯଥା; ଅଳସୀ, ହଳଦୀ ଆଦି ମଧ୍ୟ ବିକାକିଣା କରି ପାରିବ ବୋଲି ଉଦ୍ଦେଶ୍ୟ ରଖିଥିଲା । ଏହାଛଡା ସାଧାରଣ ବଣ୍ଟନ ବ୍ୟବସ୍ଥାରେ ଭାଗ ନେବାକୁ ସ୍ଥାନୀୟ ଲୋକମାନେ ଆଗ୍ରହ ବ୍ୟବସ୍ଥା କରିଥିଲେ । ଚାଉଳ, ଚିନି ଓ କିରୋସିନ୍ ଆଦି ମିଳୁନଥିଲା ସେ ଅଞ୍ଚଳରେ । ସମବାୟ ସମିତି ଜରିଆରେ ଏହା ସୁବିଧାରେ ମିଳିବ ବୋଲି ସମସ୍ତଙ୍କର ଆଶାଥିଲା ।

ଆନ୍ଧ୍ର ପ୍ରଦେଶରେ ଗିରିଜନ କୋଅପରେଟିଭ ଏବଂ ସାମ୍ମୁଖ୍ୟ ଦ୍ୱାରା ପରିଚାଳିତ ମୁଲକାନୁର ସମବାୟ ସମିତି (Mulkanoor Co-operative Society) ଆଦି ମୁଁ

ପରିଦର୍ଶନରେ ଯାଇଥିଲି । ମୁଲ୍‌କାନୁର ସମବାୟ ସମିତି ଏତେ ସଫଳତାର ସହ ପରିଚାଳିତ ହୋଇଛି ଯେ ବି.ବି.ସି.(BBC) ଏହା ଉପରେ ଗୋଟାଏ ଚଳଚ୍ଚିତ୍ର ପ୍ରସ୍ତୁତ କରିଛି । ଧାନ କିଣି ଚାଉଳ ବିକିବା ଏ ସମବାୟ ସମିତିର ମୁଖ୍ୟ ଉଦ୍ଦେଶ୍ୟ । ଏହାଛଡ଼ା ମକା ବିହନର କିଣାବିକା, କୁକୁଡା ଚାଷ ଏବଂ ତେଲଲୁଣ ଡେଜରାତି ଦୋକାନ ମଧ୍ୟ ଏ ସମବାୟ ସମିତି ଚଳାଇ ଥାଏ । ବର୍ଷକୁ ପ୍ରାୟ ଷାଠିଏ କୋଟି ଟଙ୍କାର କାରବାର । ଡେଜରାତି ଦୋକାନରେ ପେଟ୍ରୋଲ ଡିଜେଲ୍ ଠାରୁ ଆରମ୍ଭ କରି କୃଷି ଯନ୍ତ୍ରପାତି ସହ ଔଷଧ ମଧ୍ୟ ବିକ୍ରିବଟା ହୁଏ । ସମବାୟ ସମିତିର ପରିଚାଳନା ପରିଷଦରେ ସ୍ଥାନୀୟ ଚାଷୀମାନେ ଥାଆନ୍ତି ସେକ୍ରେଟାରୀ ଓ ସଭାପତି ପଦବୀରେ । ସେମାନେ ମ୍ୟାଟ୍ରିକ ପାସ୍ କରିନଥାନ୍ତି । ମୁଁ ସେଠାରେ ପହଞ୍ଚିବା ଦିନ ପରିଚାଳନା ପରିଷଦର ମିଟିଂ ଚାଲିଥାଏ । ସମବାୟ ବିଭାଗର ନିବନ୍ଧକ ଆସିଥାଆନ୍ତି । କିନ୍ତୁ ତାଙ୍କୁ କେହି ପଚାରୁ ନଥାନ୍ତି । ସେ ଦେଉଥିବା ମତାମତ ମଧ୍ୟ କେହି ଗ୍ରହଣ କରୁନଥାନ୍ତି । ଆନ୍ଧ୍ର ପ୍ରଦେଶରେ ସମବାୟ ଆଇନ୍ ଏପରି ହୋଇଛି ଯେ ସେଠାକାର ସମବାୟ ବିଭାଗର କର୍ମକର୍ତ୍ତାମାନଙ୍କର ହାକିମାତି ଚାଲୁନଥାଏ । ଓଡ଼ିଶାରେ ଠିକ୍ ଓଲଟା । କିନ୍ତୁ ମୁଲ୍‌କାନୁର ସମବାୟ ସମିତି ଆଜି ଯେମିତି ପରିଚାଳନା ଓ ଜନସାଧାରଣଙ୍କ ସହଭାଗିତାର ସଫଳ ଉଦାହରଣ ସୃଷ୍ଟି କରିଛି ତାହା ମୋ ମନରେ ଗଭୀର ରେଖାପାତ କରିଥିଲା । ମୁଁ ସେଠାରୁ ଫେରି କାଶୀପୁର ପନିପରିବା ଉତ୍ପାଦନକାରୀ ବାଣିଜ୍ୟ ସମବାୟ ସମିତି କେମିତି ଦୃଢ଼ ହୋଇପାରିବ ଦୃଷ୍ଟି ଦେଇଥିଲି । ଭାରତସାରା ଯେଉଁଠି ସମବାୟ ସମିତିମାନେ ସଫଳ ଉଦାହରଣ ଦେଖାଇଛନ୍ତି ସେଠାକୁ କାଶୀପୁରର ଆଦିବାସୀମାନଙ୍କୁ ପଠାଇବାକୁ ମୁଁ ନିଷ୍ପତ୍ତି ନେଇଥିଲି । ସମବାୟ ସମିତି ଗଢିବା ମାତ୍ରକେ ଏହା ସମବାୟ ସମିତି ଇନ୍‌ସପେକ୍‌ଟରମାନଙ୍କର କବ୍‌ଜାରେ ଆସିଯିବାକୁ ପଡିଥାଏ । ଡଙ୍ଗାସିଲ ସ୍ଥିତି ମୁଖ୍ୟ କାର୍ଯ୍ୟାଳୟରେ ସମବାୟ ବିଭାଗ କର୍ମଚାରୀମାନଙ୍କର ଦୌରାତ୍ମ୍ୟ ମଧ୍ୟ ଆମକୁ ସହିବାକୁ ପଡିଥିଲା । ଆମ ସମବାୟ ସମିତିରେ କେବଳ ଆଦିବାସୀମାନେ ସଦସ୍ୟ ଥାଆନ୍ତି । ଏଥିପାଇଁ ଅଣଆଦିବାସୀମାନେ କିଛି ନ କହିଲେ ମଧ୍ୟ ଅସନ୍ତୁଷ୍ଟ ଥାଆନ୍ତି । କିନ୍ତୁ ସମବାୟ ସମିତିର ମିଟିଂ ମାସକୁ ଥରେ ବସୁଥିଲା ଓ ସମବାୟ ସମିତି କେମିତି ମଜଭୁତ ହେବ ସେଥିପାଇଁ ଅନେକ ସମୟ ଧରି ଆଲୋଚନା ହେଉଥିଲା ।



# ୪୩

କାଶୀପୁରରୁ ଭୁବନେଶ୍ୱର ଯେ ଅନେକଦୂର ଏହା ପ୍ରତିଥର ଆସିଲାବେଳେ ସ୍ପଷ୍ଟ ଅନୁଭବ କରିହୁଏ । ରାୟଗଡ଼ାରୁ ରାତି ବସ ଧରିଲେ ପ୍ରାୟ ବାରଘଣ୍ଟା ଲାଗେ । ସକାଳୁ ସେଠାରେ ପହଞ୍ଚିଲା ବେଳକୁ ଦେହ ସାରା ପୀଡା ଓ ଆଖିରେ ଆଖିଏ ନିଦ । ଖୁବ୍ କ୍ଳାନ୍ତ ଲାଗେ । ବିଜୟନଗର ବାଟେ ରେଳଯାତ୍ରା କଲେ ମଧ୍ୟ ସେମିତି । ଭୁବନେଶ୍ୱରରୁ କୋଣାର୍କ ଏକ୍‌ସପ୍ରେସରେ ବଗିଟିଏ ଲାଗେ ଯାହା  ବିଜୟନଗରମ୍ ଷ୍ଟେସନ୍‌ରେ କଟିଯାଇ ରାୟପୁର ଲିଙ୍କ ଏକ୍‌ସପ୍ରେସରେ ଯୋଡା ଯାଇଥାଏ । ବିଜୟନଗରମ୍ ଷ୍ଟେସନ୍‌ରେ ଅନ୍ଧାର, ଘେର ଓ ମଶାଙ୍କ ସହ ଲଢିବାକୁ ହୋଇଥାଏ । ରାୟଗଡ଼ା ଷ୍ଟେସନ୍‌ରେ ଲିଙ୍କ ଏକ୍‌ସପ୍ରେସ୍‌ରେ କୌଣସି ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ନଥାଏ । ଭୁବନେଶ୍ୱରଗାମୀ ବଗିଟିରେ ଜାଗା ମିଳେ ନାହିଁ । ଖରିଆର ରୋଡ ଠାରୁ ଆରମ୍ଭ କରି କଣ୍ଟାବାଞ୍ଜି, ଟିଟିଲାଗଡ଼ ଆଡୁ ଯାତ୍ରୀ ଭରି ଯାଇଥାଆନ୍ତି । ରିଜର୍ଭେସନ୍‌ର କୌଣସି ମାନେ ନଥାଏ । କାଶୀପୁରରୁ ୧୯୮୦ରୁ ୧୯୮୫ମସିହା ପର୍ଯ୍ୟନ୍ତ ମୋର କୋରାପୁଟ ଅପେକ୍ଷା ଭୁବନେଶ୍ୱର ସହ ବେଶୀ ସମ୍ବନ୍ଧ ଥାଏ । ଭୁବନେଶ୍ୱର ସେତେବେଳେକୁ ଗୋଟାଏ ଛୋଟ ସହର ଥାଏ । ହୋଟେଲ ଆଦି ନୂଆ ନୂଆ ତିଆରି ହେଉଥାଏ । ସହର ବଢିବା ଆରମ୍ଭ କରିଥାଏ । ଜୟଦେବ ବିହାର, ନୂଆପଲ୍ଲୀ, ଆଚାର୍ଯ୍ୟ ବିହାର, ବୀରସୁରେନ୍ଦ୍ରସାଏ ନଗର ଆଦିରେ ଦ୍ରୁତ ଗତିରେ ଘର ସବୁ ତିଆରି ହେଉଥାଏ । ଆମେ ସବୁ ପଢୁଥିବା ବେଳେ ସତୁରୀଦଶକର ଭୁବନେଶ୍ୱର ମାନଚିତ୍ର ଯାହାଥିଲା ତାହା ନୂଆ କରି ଅଙ୍କା ଯାଉଥାଏ । ଭୁବନେଶ୍ୱର ଆସିବା ଲାଗି ମୁଁ ସବୁବେଳେ କୁଣ୍ଠା ପ୍ରକାଶ କରୁଥାଏ କାରଣ ସେଠାରେ ରହିବାକୁ ସୁବିଧା ନଥାଏ । ପାନ୍ଥନିବାସ ଭଳି ହୋଟେଲ ଅଥବା କଟକ ରୋଡ୍‌ର କେଉଁ ହୋଟେଲ ଛଡା ଅନ୍ୟକିଛି ଲଜିଂର ବ୍ୟବସ୍ଥା ନଥାଏ । ଭୁବନେଶ୍ୱରରେ ମୋର ଆତ୍ମୀୟ ସ୍ୱଜନ ମଧ୍ୟ କେହି ସେମିତି ନଥାନ୍ତି । କିନ୍ତୁ ଦୁଇଟି ପରିବାରଙ୍କ ଘର ସବୁବେଳେ ଉନ୍ମୁକ୍ତ ଥାଏ । ଗୋଟିଏ ପରିବାର ହେଉଛି ମୋର କଲେଜ ଜୀବନର ବନ୍ଧୁ ଶ୍ରୀ ଦୁର୍ଗା ପ୍ରସାଦ ମହାପାତ୍ରଙ୍କ ଘର । ସେ ଇନ୍‌ଷ୍ଟିଚ୍ୟୁଟ ଅଫ ଫିଜିକ୍‌ସରେ ଗବେଷଣା କରୁଥାଏ । ଘରଭଡା ନେଇଥାଏ ବୀରସୁରେନ୍ଦ୍ର ସାଏ ନଗରରେ । ସେଠାକୁ ରିକ୍‌ସା ଯାଏ ନାହିଁ । ବେଳେବେଳେ ବ୍ୟାଗ୍ ଆଦି ଧରି ଚାଲିବାକୁ ହୋଇଥାଏ । ଅନ୍ୟଟି ହେଉଛି ଆମ ସମସ୍ତଙ୍କର ନାନୀର ଘର ୫, ସତ୍ୟନଗର । ରାସ୍ତାକୁ ଲାଗି ଛୋଟ ଘରଟିଏ ।  ଷ୍ଟେସନ୍‌ରୁ ବିଶେଷ ଦୂର ନୁହେଁ । ନାନୀ ଅରବିନ୍ଦର କେବଳ ବଡ ଭଉଣୀ ନୁହଁନ୍ତି, ଆମ ସମସ୍ତଙ୍କର ସ୍ନେହର ଓ ସମ୍ମାନର । ବିଶ୍ୱବିଦ୍ୟାଳୟ ଦିନମାନଙ୍କରୁ ନାନୀଘର ସହ ଆମେ ସଂଶ୍ଳିଷ୍ଟ । ନାନୀ, ସନ୍ତୋଷଭାଇ, ମୁନ୍ନା, ଫେଲୁ, ମାମୀ ଓ ଫିକୁମାନଙ୍କର ପରିବାର ଭିତରେ ଆମେ

ଅରବିନ୍ଦର ଅନେକ ବନ୍ଧୁ ସବୁ ସଦସ୍ୟ । ବାଣୀବିହାର ହଷ୍ଟେଲରେ ଖାଇବା ଭଲ ହୁଏ ନାହିଁ । ନାନୀ ଫୋନ କରିଦିଏ । ଆମେ ସାତ-ଆଠଜଣ ଏ ଫୋନ୍‌କୁ ଅପେକ୍ଷା କରିଥାଉ । ବାଟ ଜଣାପଡେ ନାହିଁ । ସନ୍ଧ୍ୟାରେ ଆସି ପହଞ୍ଚି ଯାଉ ଚାଲି ଚାଲି । ଖାଇବା ଜିନିଷ ଅନେକ ମିଳେ । ସନ୍ତୋଷଭାଇ ରାଜନୀତିରେ ଥିବାରୁ ଅନେକ ଲୋକ, ରାଜନୈତିକ କର୍ମୀ ସେଠାରେ ରୁଣ୍ଡ ହୋଇଥାଆନ୍ତି । କିନ୍ତୁ ସବୁ ଭିଡଭିଡରେ ଆମ ପାଇଁ ସବୁବେଳେ ଜାଗା ଥାଏ । ନାନୀର ପରିବାରର ସମସ୍ତେ ଆମକୁ ଧ୍ୟାନ ଦିଅନ୍ତି । ସ୍ନେହ ମମତାର ଏକ ବାତାବରଣ ସବୁବେଳେ ଥାଏ । ମୁନ୍ନା, ଫେଲୁ, ମାମୀ, ଫିକୁ ଆଦି ଆମ ସହ ଜଡିତ ହୋଇଥାଆନ୍ତି । ଆମେ ସବୁ ବିଭିନ୍ନ ବିଷୟରେ କିଛି ସମୟ ପାଇଁ ମାଷ୍ଟ୍ର ହୋଇଯାଉ ସେମାନଙ୍କ ପାଇଁ। ସେମାନେ ଭାବନ୍ତି ଆମେ ସବୁ ବିଶ୍ୱବିଦ୍ୟାଳୟର କୃତୀଛାତ୍ର ଓ ସବୁକିଛି ଜାଣିଛୁ । ମୁଁ ବେଶୀ ବହି ପଢୁଥାଏ ବୋଲି ସେମାନେ ଜାଣି ଥାଆନ୍ତି ଓ ମୋଠାରୁ କିଛି ନୂଆକଥା ଶୁଣିବାକୁ ଇଚ୍ଛୁକ ଥାଆନ୍ତି । ପିଲାମାନେ ସବୁ ଉଚ୍ଚ ପ୍ରତିଭାର ଅଧିକାରୀ ଥିଲେ ଓ ଭବିଷ୍ୟତରେ ନିଜକୁ ପ୍ରମାଣିତ କରିବେ ବୋଲି ଆମେ ଆଶା ରଖିଥିଲୁ । ନାନୀ ତା' ନିଜବାଟରେ ଆମକୁ ତା'ର ସ୍ନେହ ଅଜାଡି ଦେଇଥାଏ । ମୁଁ ଟିକିଏ ପାଗଳାମୀ ଦେଖାଏ-ବୋଲି ସେ ଟିକିଏ ବେଶୀ ଆଦର କରେ । ସେ ଦିନର ସମ୍ବନ୍ଧ ମୁଁ କାଶୀପୁର ପହଞ୍ଚିଲା ପର୍ଯ୍ୟନ୍ତ ଜମିନଥାଏ । ହସ୍ତରେଖାରେ ବିଶ୍ୱାସ କରୁଥିବା ଲୋକମାନେ 'ସିଷ୍ଟର ଲାଇନ୍' କଥା କୁଆଡେ କୁହନ୍ତି । ଯେଉଁମାନଙ୍କର 'ସିଷ୍ଟର ଲାଇନ୍' ତେଜ୍ ଥାଏ ସେମାନେ ବଡ଼ ବଡ଼ ବିପଦରୁ ମୁକ୍ତି ପାଆନ୍ତି ସହଜରେ । ନାନୀ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ଆମ ପଛରେ ଛିଡା ହୋଇଥାଏ । ଯେତେ ଝଡ ଝଞ୍ଜା ଆସୁ ପଛକେ, ଆମେ ନାନୀର ସାହାଯ୍ୟ ସମର୍ଥନ ପାଇଁ ଆଶାୟୀ ହୋଇଥାଉ ।

ଏଇଥିପାଇଁ କାଶୀପୁରରୁ ଭୁବନେଶ୍ୱର ଆସିଲେ ନାନୀ ଘରେ ରହିବାକୁ ମୁଁ ବେଶୀ ପସନ୍ଦ କରିଥାଏ । ଛୋଟ ଘରଟିଏ । ଦୁଇତିନି ବଖରା ଘର । ସବୁବେଳେ ଅତିଥି ଓ ସମ୍ପର୍କୀୟମାନଙ୍କର ଯିବା ଆସିବା ଓ ରହିବା ଲାଗି ରହିଥାଏ । ମୋତେ ଅବାକ୍ ଲାଗେ ଯେ ମୋ ପାଇଁ ମଧ୍ୟ ସେଠାରେ ଜାଗାଥାଏ । ଘରେ ପନ୍ଦର କୋଡିଏ ଜଣଙ୍କ ପାଇଁ ପ୍ରତ୍ୟେକ ଦିନ ରୋଷେଇ ହେଉଥାଏ । ମୁଁ ମଧ୍ୟ ପେଟ ଭରି ଖାଇଥାଏ । ଅରବିନ୍ଦକୁ ଯେତିକି ଜାଗା ମିଳିଥାଆନ୍ତା, ମୋ ପାଇଁ ସେତିକି ସ୍ଥାନ ନିଶ୍ଚିତ ଭାବେ ସଂରକ୍ଷିତ ହୋଇଥାଏ । ସମସ୍ତେ କାଶୀପୁରରେ ମୁଁ କ'ଣ କରୁଛି ଜାଣିବାକୁ ଆଗ୍ରହ ଦେଖାଇଥାଆନ୍ତି । ସନ୍ତୋଷଭାଇ ଆଦିବାସୀ ଅଞ୍ଚଳର ରାଜନୀତି କଥା ପଚାରନ୍ତି ଓ ସେଠାକାର ନେତାମାନେ ମୋର ବିରୁଦ୍ଧରେ କେମିତି ଅଛନ୍ତି, ସୂଚନା ଦେଇଥାଆନ୍ତି । ନାନୀ ଓ ପିଲାମାନେ ପଚାରୁଥାଆନ୍ତି ଯେ ମୁଁ କେଉଁଠି ରହୁଛି, କେମିତି ଖାଉଛି ଓ କି ପ୍ରକାର ଦୁଃସାହସିକ କାର୍ଯ୍ୟ କରୁଛି । କାଶୀପୁରର ପ୍ରଥମ କେତେ ବର୍ଷର ସଫଳତାରେ ୫, ସତ୍ୟନଗରର ଅନେକ ଅବଦାନ ରହିଛି । ସେଠାର ଶୁଭେଚ୍ଛା ମୋର ଜୀବନ ଗଢିବାରେ ଏକ ବଳିଷ୍ଠ ଭୂମିକା ନିଶ୍ଚିତ ଗ୍ରହଣ କରିଛି ।

ଏ ଭିତରେ ମୋର ସବୁ ବନ୍ଧୁଙ୍କ ବିବାହ ହୋଇଯାଇଥିଲା । ମୋର ପରିବାର ସମେତ ଅନ୍ୟମାନେ ଭାବୁଥିଲେ ଯେ ମୁଁ ସମ୍ଭବତଃ ବିବାହ କରିବି ନାହିଁ । କିନ୍ତୁ ବିଦ୍ୟା ସହ ମୋର

ଡିଲୋନିଆରେ ଦେଖା ସାକ୍ଷାତ ଓ ପରେ ପରେ ବିବାହ କରିବାର ନିଷ୍ପତ୍ତି । ଆମେ ଦୁହେଁ ଆମର ପରିବାରକୁ ନଜଣାଇ ବିବାହ କରିବାର ଯୋଜନା ଥିଲା । ଯଦିଓ ସମସ୍ତ ବନ୍ଧୁମାନଙ୍କୁ ଆମେ ସୂଚନା ଦେଇଥିଲୁ, କିନ୍ତୁ ବିବାହ କେମିତି ହେବ ଆମେ କାହାକୁ କହିନଥାଉ । ମୋର ବନ୍ଧୁ ଶ୍ରୀମତୀ ଅରୁଣା ରାୟ ବିଦ୍ୟାର ମାଉସୀ । ମୋର ଅନ୍ତରଙ୍ଗ ବନ୍ଧୁ ଶ୍ରୀ ଅଶୋକ ଆଗ୍ରର୍ଯ୍ୟ ଓ ତାଙ୍କ ସ୍ତ୍ରୀ ବେବିନା ଦିଲ୍ଲୀରେ ଥାଆନ୍ତି । ଏମାନେ ବିବାହର ସବୁଜ ସଙ୍କେତ ଦେଇ ସବୁ ଆୟୋଜନ କରିଥିଲେ । ଦିଲ୍ଲୀର ହଉଜ୍‌ଖାସ ଜଗନ୍ନାଥ ମନ୍ଦିରରେ । ସେଠାରେ ବିବାହ ପର୍ବ ସମାପ୍ତ ହେଲା ମୋର ବିଦ୍ୟା ସହିତ । ସାକ୍ଷୀ ରହିଲେ ଅରୁଣା, ଅଶୋକ ଓ ବେବିନା । ବିବାହ ପରେ ପରେ ଆମେ ଦୁହେଁ ଓଡ଼ିଶା ଆସି ଭୁବନେଶ୍ୱର ପହଞ୍ଚିଥିଲୁ ଓ ନାନୀକୁ ପ୍ରଥମେ ଦେଖା କରିଥିଲୁ । ନାନୀ ଓ ତାର ପରିବାର ଆମ ଦୁହିଁଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଇଥିଲେ । ବିଦ୍ୟା ଅଣଓଡ଼ିଆ ହୋଇଥିବାରୁ ଓଡ଼ିଆ ବୋହୂ ହିସାବରେ ତାହାର କର୍ତ୍ତବ୍ୟ ଓ ଆଗ୍ରର ବିଗ୍ରର ବିଷୟରେ ନାନୀ ପରାମର୍ଶ ଦେଉଥିଲେ ।

କାଶୀପୁରର ଘଟଣା ପ୍ରବାହ ସହ ନାନୀର ପରିବାର ସମସ୍ତ ସଂପୃକ୍ତ ହୋଇଥିଲେ । ସ୍ଥାନୀୟ ମନ୍ତ୍ରୀ ଓ ଏମ୍.ଏଲ୍.ଏ. ମାନେ ଆମକୁ ବିରୋଧ କରିଆସୁଥିଲେ । ଏଥିପାଇଁ ନାନୀ ଓ ସନ୍ତୋଷ ଭାଇ ଆମ ପ୍ରତି କେମିତି ରାଜନୈତିକ ସମର୍ଥନ ବଢ଼ିବ ସଦାସର୍ବଦା ଉପଦେଶ ଦେଇ ଆସୁଥିଲେ । କେଉଁଠି ବି ଯଦି ଆମ ପ୍ରତି ସମାଲୋଚନା ହେଉଥିଲା, ତାହାର ମୁକାବିଲା କରୁଥିଲେ ସେମାନେ । ସନ୍ତୋଷ ଭାଇ ଓ ଅନ୍ୟମାନଙ୍କୁ କାଶୀପୁର ଆସିବାକୁ ମୁଁ ନିମନ୍ତ୍ରଣ କରିଥିଲି । ପାର୍ଲିଆମେଣ୍ଟର ସାଂସଦ ହିସାବରେ ସେ କୋରାପୁଟ ଆସିବାକୁ ମନସ୍ଥ କରିଥିଲେ । ସାନ ପୁଅ ଫିଲୁ ମଧ୍ୟ ତାଙ୍କ ସାଙ୍ଗରେ ଆସୁଥିଲା । କାଶୀପୁରକୁ ତାଙ୍କୁ ଆଣିବାକୁ ମୁଁ କୋରାପୁଟ ଯାଇ ପହଞ୍ଚିଥିଲି । କାଶୀପୁରରେ ମଧ୍ୟ ଆମର କର୍ମୀ ଓ ଗାଁବାଲାମାନେ ତାଙ୍କୁ ଅପେକ୍ଷା କରିଥିଲେ । ସ୍ଥାନୀୟ ବି.ଡି.ଓ ସାଂସଦଙ୍କ କାର୍ଯ୍ୟକ୍ରମ ଜାଣି ସବୁ ପ୍ରକାର ସହଯୋଗ କରିଥିଲେ । କାଶୀପୁର ବଙ୍ଗଳାରେ ତାଙ୍କ ରହିବା ଆଦି ବ୍ୟବସ୍ଥା ହୋଇଥିଲା, କିନ୍ତୁ ସେ କେତେକ ଅସୁବିଧା ହେତୁ କାଶୀପୁର ଗସ୍ତକୁ ବାତିଲ କରିଥିଲେ । କିନ୍ତୁ କୋରାପୁଟ ଆସି ଆମ ସପକ୍ଷରେ ଏକ ରାଜନୈତିକ ସମର୍ଥନ ଯୋଗାଡ କରିବାରେ ସେ ଏକ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ।

କାଶୀପୁରରେ ପ୍ରଥମ କେତେବର୍ଷ ଆମର ଆର୍ଥିକ ଅସୁବିଧା ଲାଗି ରହିଥିଲା । ମୁଁ ଆସିଲେ ୫, ସତ୍ୟନଗରରେ ଏ ବିଷୟ ଆଲୋଚନା ହେଉଥିଲା ଓ ଆମର ସାମଗ୍ରିକ ସ୍ଥିତି କେମିତି ଦୃଢ଼ ହେବ ସେ ବିଷୟରେ ଅନେକ ପ୍ରସ୍ତାବ ଆସୁଥିଲା । ନାନୀ ଘରେ ଜର୍ସି ଗାଈ ରହିଥିଲେ ଏବଂ ଗୋପାଳନ ଦ୍ୱାରା ଯେ ବେଶ ଲାଭ ହୋଇପାରିବ ସେ କଥା ସେଠାରେ ପ୍ରମାଣିତ ହୋଇଥିଲା । ମୁଁ ମଧ୍ୟ ମନେ ମନେ ଭାବୁଥିଲି ଯେ କାଶୀପୁରର ଜଳବାୟୁ ଜର୍ସି ଗାଈ ରଖିବା ପାଇଁ ଅନୁକୂଳ ହୋଇଥିବାରୁ ସେଠାରେ ମଧ୍ୟ ଏଇଭଳି କାର୍ଯ୍ୟକ୍ରମ କରାଯାଇ

ପାରିବ । ସାମାଜିକ କାର୍ଯ୍ୟ ଓ ସାମାଜିକ ଅନୁଷ୍ଠାନ ସହ ନାନୀ ଓ ସନ୍ତୋଷ ଭାଇଙ୍କର ପ୍ରତ୍ୟକ୍ଷ ଅନୁଭୂତି ଆମକୁ ଆଗକୁ ଯିବାକୁ ବାଟ କଢ଼ାଇଥିଲା । ସେମାନେ ଦୁହେଁ ଚାହୁଁଥିଲେ ଯେ ମୟୂରଭଞ୍ଜ ଅଞ୍ଚଳରେ କେତେକ ଛୋଟ ଛୋଟ ଅନୁଷ୍ଠାନକୁ ମୁଁ ଯେମିତି ସାହାଯ୍ୟ କରେ । ଏହା ଛଡା, ଅନେକ ଯୁବକ ଯୁବତୀ ସାମାଜିକ କାର୍ଯ୍ୟକ୍ରମରେ ଭାଗ ନିଅନ୍ତୁ ବୋଲି ସେମାନେ ମଧ୍ୟ ସବୁବେଳେ ଭାବି ଆସୁଥିଲେ । ସେଥିପାଇଁ ୫, ସତ୍ୟନଗରରେ ରାଜନୀତି ଛଡା ସାମାଜିକ ଓ ସଂସ୍କୃତିକ ବିଷୟ ମଧ୍ୟ ବିଶେଷ ଭାବରେ ଆଲୋଚନା ହେଉଥିଲା ।



# ୪୪

ଆଦିବାସୀ ଅଞ୍ଚଳରେ ବିକାଶ ଓ ପିରବର୍ତ୍ତନ ପାଇଁ ଆମେ ଯେଉଁ ସମନ୍ୱିତ ଓ ସାମଗ୍ରିକ ଉଦ୍ୟମ କରି ଆସିଥିଲୁ ତାହାର ପ୍ରମୁଖ ପର୍ଯ୍ୟାୟ ପାଞ୍ଚବର୍ଷରେ ସମାପ୍ତ ହେଲା । ଆମର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଥିଲା ଯେ କାଶୀପୁରର ଆଦିବାସୀମାନେ ନିଜ ଗୋଡରେ ଛିଡା ହୋଇ ସଂଗଠିତ ହେବେ ଓ ଆପଣାର ମାନବିକ ଅଧିକାର ଏବଂ ଜୀବନ ଜୀବିକାର ଅଧିକାରକୁ ଜାହିର କରିବେ । ଆମ କାର୍ଯ୍ୟକ୍ରମ ଭିତରେ ଦୁଇଟି ମୁଖ୍ୟଧାରା ଥିଲା-ଖାଦ୍ୟ ଓ ସ୍ୱରଉତ୍ତୋଳନ । ଅର୍ଥାତ୍ ଆଦିବାସୀମାନେ ନିଜକୁ ଅନାହାର ଓ ଖାଦ୍ୟାଭାବର ସମସ୍ୟାଗୁଡ଼ିକ ସହ ଲଢ଼ିବାକୁ ପ୍ରସ୍ତୁତ କରିବେ ଏବଂ ଅନ୍ୟପକ୍ଷରେ ଶିକ୍ଷା ଓ ଚେତନା ଜରିଆରେ ନିଜର ଦାବିଗୁଡ଼ିକୁ ଉପସ୍ଥାପନା କରିବେ । ସେ ସମୟର ଶବ୍ଦାବଳୀକୁ ପ୍ରୟୋଗ କରିଲେ କୁହାଯାଇପାରେ ଯେ ଆଦିବାସୀମାନେ ନିଜର ଖାଦ୍ୟ ନିରାପତ୍ତା ହାସଲ କରିବେ ଓ ନୀରବତାର ସଂସ୍କୃତିକୁ ଭଙ୍ଗ କରିବେ । ୧୯୮୫ ମସିହା ସୁଦ୍ଧା କାଶୀପୁର ମଡେଲକୁ ଦେଶ ସାରା ପରିଚିତ କରିବାକୁ ଯେଉଁ କେତେଜଣ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ସେମାନଙ୍କ ଭିତରେ ଥିଲେ ଶ୍ରୀ ବଙ୍କର ରାୟ, ଶ୍ରୀମତୀ ଅରୁଣା ରାୟ, ଶ୍ରୀ ଦେବବ୍ରତ ବନ୍ଦୋପାଧ୍ୟାୟ, ଶ୍ରୀ ଅନୀଲ ବୋର୍ଡିଆ, ଶ୍ରୀମତୀ ନନ୍ଦନା ରେଡ୍ଡୀ, ଡକ୍ଟର ଲକ୍ଷ୍ମୀଧର ମିଶ୍ର । ବାଙ୍ଗାଲୋର ଠାରେ ଅନୁଷ୍ଠିତ ଅନୌପଚାରିକ ଏବଂ ସୃଜନାତ୍ମକ ଶିକ୍ଷା ଉପରେ ଏକ ଜାତୀୟ କର୍ମଶାଳାରେ ଆମକୁ ଅନୁଭୂତି ସମାହିତ ପ୍ରବନ୍ଧ ଉପସ୍ଥାପନା କରିବାକୁ ସୁଯୋଗ ଦିଆଯାଇଥିଲା । ଏହି କର୍ମଶାଳାକୁ ଦେଶସାରା ଅନେକ ଶିକ୍ଷାବିତ୍, ସ୍ୱେଚ୍ଛାସେବୀ ସଂଗଠନ, ପଦସ୍ଥ ସରକାରୀ କର୍ମଚାରୀ ଓ ବିଶେଷଜ୍ଞମାନେ ଆସିଥିଲେ । ମୋର ପ୍ରବନ୍ଧଟିକୁ ଉପସ୍ଥାପନା ବେଳେ ମୁଁ କହିଥିଲି ଯେ ସାମାଜିକ, ଆର୍ଥିକ ଓ ରାଜନୈତିକ ପୃଷ୍ଠଭୂମିରେ ଆଠଦଶ ବର୍ଷର ପିଲାଟିଏ ଯଦି 'ଆକ୍ଟିଭିଷ୍ଟ' ନହୁଏ ତେବେ ଶିକ୍ଷାର ଅର୍ଥ କିଛି ରହିବ ନାହିଁ । କାରଣ ଅନୌପଚାରିକ ଶିକ୍ଷାକେନ୍ଦ୍ର ଏବଂ ରାତ୍ରିପାଠଶାଳାକୁ ଆସୁଥିବା ପିଲାମାନେ ଦାରିଦ୍ର୍ୟ, ଅନାହାର, ଶୋଷଣ ଓ ଅତ୍ୟାଚାର ଦ୍ୱାରା ପୀଡିତ । ଏହାର ଅର୍ଥ ବୁଝାଇବାକୁ ଯାଇ କାଶୀପୁରରେ ପିଲାମାନଙ୍କର ଶୋଚନୀୟ ସ୍ଥିତି ମୁଁ କର୍ମଶାଳାରେ ଉପସ୍ଥାପନା କରିଥିଲି । ଗରିବ ବର୍ଗର ପିଲାଟିଏ ସ୍କୁଲକୁ ଯିବାକୁ ସୁଯୋଗ ପାଉ ନାହିଁ । ଜନ୍ମ ହେଲା ଦିନଠାରୁ ଜୀବନଜୀବିକାର ସଂଘର୍ଷରେ ନିଜକୁ ନିୟୋଜିତ କରୁଛି । ସଂଗ୍ରାମ ଓ ସଂଘର୍ଷରୁ ଶିକ୍ଷା ଲାଭ କରିବା ପାଇଁ ତା'ପାଖରେ ଅନେକ ସୁଯୋଗ ଅଛି । ଏଇଥିପାଇଁ ସେ ନିଜକୁ 'ଆକ୍ଟିଭିଷ୍ଟ' ଭାବେ ଗଢ଼ିତୋଳିବାକୁହିଁ ପଡିବ ଏବଂ ଏହା ଆମର ଶିକ୍ଷା କାର୍ଯ୍ୟକ୍ରମର ମୁଖ୍ୟ ଉଦ୍ଦେଶ୍ୟ ବୋଲି ମୁଁ ଦୃଢ଼ ଭାବେ କହିଥିଲି । ମୋର ଏ ବକ୍ତବ୍ୟ କର୍ମଶାଳାରେ

ଅନେକ ପ୍ରଭାବ ପକାଇଥିଲା । ଭାରତ ସରକାରଙ୍କ ଶିକ୍ଷା ସଚିବ ଶ୍ରୀ ଅନୀଲ ବୋର୍ଡିଆ ଏବଂ ବାଙ୍ଗାଲୋରର ଶ୍ରୀମତୀ ନନ୍ଦନା ରେଡ୍ଡୀ କେତେ ବର୍ଷ ପର୍ଯ୍ୟନ୍ତ କାଶୀପୁରର ଶିକ୍ଷା ଆନ୍ଦୋଳନକୁ ଏକ ସଫଳ ଉଦାହରଣ ହିସାବରେ ବର୍ଣ୍ଣନା କରିଥିଲେ ।

କାଶୀପୁରର 'କୁଟୁମ୍ବ ପାଣ୍ଠି' ବା Community Grain Bank ଗାଁ ମାନଙ୍କରେ କ୍ଷୁଧା ଓ ଖାଦ୍ୟାଭାବ ବିପକ୍ଷରେ ଲଢ଼ାଇର ପ୍ରଥମ ପଦକ୍ଷେପ ଥିଲା । ବର୍ଷର ଚାରିମାସ ଜୁନ୍ ରୁ ସେପ୍ଟେମ୍ବର ଲୋକଙ୍କ ପାଖରେ ଖାଇବାକୁ କିଛି ନଥାଏ । କୁଲି ମଜୁରି ମିଳେ ନାହିଁ । ବାହାରୁ ଖାଦ୍ୟଶସ୍ୟ କିଣିବାକୁ ହାତରେ ପଇସା ନଥାଏ । ଜଙ୍ଗଲରୁ ଶାଗ, ବାଉଁଶ କରଡି, ବିଭିନ୍ନ କନ୍ଦା ମଧ ଯଥେଷ୍ଟ ମିଳେ ନାହିଁ । ଏ ସମୟରେ ଆମ୍ବଟାକୁଆ ଓ ତେନ୍ତୁଳିମଞ୍ଜି ଖାଇବା ଛଡା ଅନ୍ୟ କିଛି ରାସ୍ତା ନଥାଏ । ସାହୁକାର ଦ୍ୱାରସ୍ଥ ହେବାକୁ ଆଦିବାସୀ ବାଧ ହୋଇଥାଏ । ଏହାର ପ୍ରଭାବରେ ଆଦିବାସୀ ସର୍ବସ୍ୱ ହରାଇ ବସେ ଓ ଗୋତି ହୁଏ । ଆମେ 'କୁଟୁମ୍ବପାଣ୍ଠି' ଗଢ଼ିବାକୁ ପ୍ରତି ଗାଁରେ ଲୋକମାନଙ୍କୁ ବୁଝାଇ ଥାଉ । ଲୋକମାନେ ସହଜରେ ବୁଝୁ ନଥାନ୍ତି । କାରଣ ଆମେ ଥରେ ବୁଝାଇଲେ ଫଳପ୍ରଦ ହୁଏ ନାହିଁ । କୁଟୁମ୍ବ ପାଣ୍ଠି ବିରୋଧରେ ସାହୁକାର ଦଶଥର ଲୋକଙ୍କୁ କହୁଥାଏ । କିନ୍ତୁ ସାହୁକାର ଗୋଷ୍ଠୀଙ୍କର ଯେତେପ୍ରକାରର ମିଥ୍ୟା ଅପପ୍ରଚାର ସବୁ ଶେଷରେ ପ୍ରଭାବହୀନ ହୋଇଥିଲା ଓ ଆଦିବାସମାନେ ଏହାକୁ ବୁଝିଥିଲେ । ବିଶେଷ କରି ଆଦବାସୀ ମାଆମାନେ କୁଟୁମ୍ବ ପାଣ୍ଠି ଗଢିବାକୁ ବିଶେଷ ପଦକ୍ଷେପ ନେଇଥିଲେ । ୧୯୮୧ ମସିହାରେ ପାଞ୍ଚୋଟି ଗାଁରେ କୁଟୁମ୍ବ ପାଣ୍ଠି ଆରମ୍ଭ ହୋଇଥିଲା । ୧୯୮୫ ମସିହା ବେଳକୁ ତାହା ୨୫୦ଟି ଗାଁକୁ ସମ୍ପ୍ରସାରିତ ହୋଇଥିଲା । କୁଟୁମ୍ବ ପାଣ୍ଠି ଯେ ଗାଁରେ ଗରିବ ଲୋକଙ୍କ ସ୍ୱୟଂ ସହାୟତା ଓ ସ୍ୱାବଲମ୍ବନଶୀଳତାର ସଫଳ ଉଦାହରଣ, ଏହା ଦେଶସାରା ସ୍ୱେଚ୍ଛାସେବୀ ସଂଗଠନମାନେ ଜାଣିଥିଲେ । ଏହା ଉପରେ ଅଧ୍ୟୟନ କରିବାକୁ କେହି କେହି ଗବେଷକ ଆଗ୍ରହ ପ୍ରକାଶ ମଧ କରିଥିଲେ, ଯେଉଁଠି ସୁଯୋଗ ମିଳୁଥିଲା ଆମେ କୁଟୁମ୍ବ ପାଣ୍ଠିର ଉପାଦେୟତା କଥା ହିଁ ପ୍ରକାଶ କରୁଥିଲୁ । ଓଡ଼ିଶାର ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନମାନେ ମଧ କୁଟୁମ୍ବପାଣ୍ଠି କେମିତି ପରିଚାଳିତ ହେଉଛି ତାହାର ଏକ ମୂଲ୍ୟାୟନ କରିବାକୁ ବହୁ ସଂଖ୍ୟାରେ କାଶୀପୁରରେ ପହଞ୍ଚୁଥିଲେ ।

କାଶୀପୁରର ଗୋତିମୁକ୍ତି ଆନ୍ଦୋଳନ ଏବଂ ଅଣସଂଗଠିତ ଶ୍ରମିକଙ୍କୁ ସଂଗଠନ କରିବା ଲାଗି ଆମର ପ୍ରୟାସ ମଧ ଦେଶସାରା ଅନେକ ଲୋକ ଜାଣିଥିଲେ । ଯୋଜନା କମିଶନର ଶ୍ରୀ ଦେବବ୍ରତ ବନ୍ଦୋପାଧ୍ୟାୟ ଏବଂ ଶ୍ରମ ମନ୍ତ୍ରଣାଳୟର ଡକ୍ଟର ଲକ୍ଷ୍ମୀଧର ମିଶ୍ର ଆମକୁ ଆମର ଅନୁଭୂତି କହିବାକୁ ବିଭିନ୍ନ ସୁଯୋଗ ସୃଷ୍ଟି କରିଥିଲେ । ଶ୍ରୀ ବନ୍ଦୋପଧ୍ୟାୟ ଆମ ବିଷୟରେ ଯୋଜନା କମିଶନ ଦ୍ୱାରା ପ୍ରକାଶିତ 'ଯୋଜନା' ପତ୍ରିକାରେ ଲେଖିଥିଲେ । ଡକ୍ଟର ମିଶ୍ର ଅଣସଂଗଠିତ ଶ୍ରମିକମାନଙ୍କ ଉପରେ ଏକ ଜାତୀୟ କର୍ମଶାଳାରେ ଭାଗ ନେବାକୁ ସୁଯୋଗ ସୃଷ୍ଟି କରିଥିଲେ । ଆମେ କାଶୀପୁରରେ ଯେ ଏକ ପାରମ୍ପରିକ ସ୍ୱେଚ୍ଛାସେବୀ ସଂଗଠନ ନୋହୁଁ, ଏବିଷୟ ସବୁଆଡେ ପ୍ରଚାରିତ ହୋଇଥିଲା ଓ ଜାତୀୟ ସ୍ତରରେ ଆମର ମାନସମ୍ମାନ

ବଢ଼ାଇବାରେ ଖୁବ୍ ସହାୟକ ହୋଇଥିଲା ପ୍ରଥମ ପାଞ୍ଚବର୍ଷ ଭିତରେ । ସେତେବେଳେ ଭାରତ ସରକାରଙ୍କର ୨୦ଦଫା କାର୍ଯ୍ୟକ୍ରମରେ ଆମ କାର୍ଯ୍ୟକ୍ରମଗୁଡିକ ଅତି ସହଜରେ ଅନ୍ତର୍ଭୁକ୍ତ ହୋଇପାରିଥିଲା । ଏଥିପାଇଁ ସରକାରୀ ସ୍ତରରେ ଆମକୁ ଯଥେଷ୍ଟ ମାନ୍ୟତା ଓ ପ୍ରୋତ୍ସାହନ ମିଳୁଥିଲା । କାଶୀପୁରଭଳି ଅପହଞ୍ଚ ଅଞ୍ଚଳ ଓ ଅବହେଳିତ ଆଦିବାସୀମାନଙ୍କ ଭିତରେ ରହିବା ଓ ସେମାନଙ୍କୁ ସଂଗଠିତ କରି ଏକ ନୂତନ ବିକାଶଧାରା ସୃଷ୍ଟି କରିବା ଦିଗରେ ଆମର ସ୍ୱତନ୍ତ୍ର ପରିଚୟ ଥିଲା ।

କାଶୀପୁରରେ ୧୯୮୫ ମସିହାରେ ଆମ କର୍ମୀମାନଙ୍କ ଭିତରେ ସବୁ ଜିଲ୍ଲାରୁ ପ୍ରାୟ ସ୍ଥାନ ପାଇଥିଲେ । ଆମର କାର୍ଯ୍ୟ ପ୍ରଣାଳୀ ଓ ଢାଞ୍ଚାରେ ଅନେକ ସ୍ୱଚ୍ଛତା ଓ ସ୍ୱାଧୀନତା ଥିବାରୁ କର୍ମୀମାନେ ଉତ୍ସାହିତ ହୋଇ କାର୍ଯ୍ୟ କରୁଥାଆନ୍ତି । ଦରମା ମାତ୍ର କୋଡିଏ ଶହଟଙ୍କା ଥିଲା ମାସକୁ । ମ୍ୟାଲେରିଆ ଜ୍ୱର ଦ୍ୱାରା ଅନେକ ଆକ୍ରାନ୍ତ ହେଉଥିଲେ । ସାହୁକାରମାନଙ୍କର ଆକ୍ରମଣ ମଧ୍ୟ କମ୍ ନଥିଲା । ତଥାପି କାଶୀପୁରରୁ କେହି ଓହରି ଯିବା ବା ପଳାୟନ କରିବାକୁ ଚାହିଁ ନଥିଲେ । ସବୁ ଝଡଝଞ୍ଜାର ମୁକାବିଲା କରିବାକୁ ପ୍ରସ୍ତୁତ ହେଉଥିଲେ । ଅନେକ ଆଶ୍ଚର୍ଯ୍ୟ ହୋଇଥିଲେ ଯେ ଆମେ କର୍ମୀମାନଙ୍କୁ କେଉଁଭଳି ପ୍ରୋତ୍ସାହନା ଓ ପ୍ରେରଣା ଯୋଗାଇ ପାରୁଛୁ । ସମ୍ଭବତଃ ଐକ୍ୟ, ସମତା ଓ ସମ୍ବେଦନଶୀଳତା ଆମ ସମସ୍ତଙ୍କୁ ଏକାଠି ବାନ୍ଧି ରଖିଥିଲା ପ୍ରଥମ କେଇବର୍ଷ । ସମ୍ପର୍କରେ ଥିଲା ଉଷ୍ମତା ଓ ଭ୍ରାତୃତ୍ୱର ପ୍ରତିଫଳନ । ଆମେ ସମସ୍ତେ ଗୋଟାଏ ପ୍ରକାରର 'କମ୍ୟୁନ୍' ଯେମିତି ପ୍ରତିଷ୍ଠା କରିଥିଲୁ । ମେସ୍ ଗୋଟାଏ । ସମସ୍ତେ ଏକାଠି ଖାଉଥିଲୁ । ଜଣେ ଯଦି ରାତ୍ରିସ୍କୁଲ ଦେଖିବା ପାଇଁ କୌଣସି ଦୂର ଗାଁ ଯାଇଛି, ସେ ଫେରିଲା ପର୍ଯ୍ୟନ୍ତ ଅନ୍ୟମାନେ ଅପେକ୍ଷା କରିବେ । ସମସ୍ତେ ଏକାଠି ରହିବେ । ଯିଏ ଯେଉଁ ପଦପଦବୀରେ ରହୁ ପଛକେ ସମାନ ଦରମା ପାଇବ । ମୁଁ ନିର୍ଦ୍ଦେଶକ ଓ ମୁଖ୍ୟ ହିସାବରେ ଯେତିକି ଦରମା ପାଇବି ଆମର ରୋଷେଇ କରୁଥିବା ବ୍ୟକ୍ତିଟି ମଧ୍ୟ ସେତିକି ଦରମା ପାଇବ । ସମସ୍ତେ ସକାଳୁ ଉଠି ଶ୍ରମଦାନ କରିବେ ଏବଂ ନିଜକାମ ନିଜେ କରିବେ, ଏହା ଆମର ବ୍ୟକ୍ତିଗତ ପ୍ରଦର୍ଶନ ଥିଲା । କେହି ଉପରେ ନାହିଁ କି କେହି ତଳେ ନାହିଁ । ସ୍ଥାନୀୟ ଆଦିବାସୀ ଯୁବକମାନେ ଏକଥା ଲକ୍ଷ୍ୟ କରି ଆମ ସହ ବିଶେଷଭାବେ ସାମିଲ ହେବାକୁ ଆଗ୍ରହ ପ୍ରକାଶ କରୁଥିଲେ । ଆମେ ସେମାନଙ୍କର ବୋଝ ବୋହିବାରେ ଟିକିଏ ହେଲେ ଦ୍ୱିଧା ପ୍ରକାଶ କରୁନଥିଲୁ । ସେମାନେ ବି ଆମର୍ ବୋଝ ବୋହିବାରେ ପଛାଉ ନଥିଲେ । ଆତ୍ମୀୟତା ଓ ଆବେଗତା ଆମମାନଙ୍କୁ ଗୋଟାଏ ପରିବାରରେ ପରିଣତ କରି ଦେଇଥିଲା । ମାନସିକ ଓ ବୌଦ୍ଧିକ ସ୍ତରରେ ଯେଉଁ ତାରତମ୍ୟ ଥିଲା, ତାହା ଆମକୁ ଭୟ ଦେଖାଉ ନଥିଲା କି ଆମକୁ ଅସହାୟ କରି ଦେଉନଥିଲା । ସମ୍ପର୍କ ରଚନା କରିବାର କଳା ଓ ଯୋଗାଯୋଗ ପ୍ରତିଷ୍ଠା କରିବାର ରଣନୀତି ଆମ ପାଇଁ ପାଶୁପତ ଅସ୍ତ୍ର ହୋଇଯାଇଥିଲା ସେଇ କେତେ ବର୍ଷ ଭିତରେ । ଆମର ଏକ ଦୃଢ଼ ମୂଳଦୁଆ ପଡିସାରିଥିଲା କାଶୀପୁରରେ । ଯେଉଁମାନେ ୧୯୮୧ ମସିହା ଠାରୁ ଆମ ସହ କର୍ମରତ ଥିଲେ ଓ କାଶୀପୁରର ବିଭିନ୍ନ ଦୁର୍ଗମ ଅଞ୍ଚଳରେ ଉପକେନ୍ଦ୍ରମାନ ପ୍ରତିଷ୍ଠା କରି ନିଜର କର୍ମକୁଶଳତା ଓ ଅଙ୍ଗୀକାରବଦ୍ଧତା

ପ୍ରମାଣିତ କରିଥିଲେ, ସେମାନେ ବ୍ୟଗ୍ରଥିଲେ ନିଜ ନିଜ ଜିଲ୍ଲାକୁ ବା ଅନ୍ୟ କେଉଁଠାରେ ଆମର ଶାଖାମାନ ଖୋଲିବା ପାଇଁ । ଏଥିପାଇଁ ମୟୂରଭଞ୍ଜରୁ ଆସିଥିବା ସତ୍ୟବ୍ରତ, ଢେଙ୍କାନାଳରୁ ଆସିଥିବା ଶରତ, ପାରଳାଖେମୁଣ୍ଡିରୁ ଆସିଥିବା ଜଗନ୍ନାଥ ରାଜୁ ଆଦି ନିଜ ଜିଲ୍ଲାମାନଙ୍କରେ କାର୍ଯ୍ୟ କରିବାକୁ ଖୁବ୍ ଉତ୍ସାହ ପ୍ରଦର୍ଶନ କରିଥିଲେ । ସେମାନେ ପ୍ରଥମେ କେଉଁଠାରେ କାର୍ଯ୍ୟକ୍ରମ ଆରମ୍ଭ କରିବେ ତାହାର ପ୍ରାମାଣିକ ସର୍ଭେ କରୁଥିଲେ ଓ ମୋତେ ଘେରାଏ ବୁଲିଆସିବାକୁ ନିମନ୍ତ୍ରଣ କରୁଥିଲେ । ଏହାକୁ ବିଚାରକୁ ନେଇ ମୟୂରଭଞ୍ଜର ଠାକୁରମୁଣ୍ଡା, ଢେଙ୍କାନାଳର ପାଲଲହଡା, ପାରଳାଖେମୁଣ୍ଡିର କଇଁପୁର ଅଞ୍ଚଳରେ ମୁଁ କିଛି ସମୟ କାଟି ଆମ ଶଖାମାନ ଖୋଲିବାକୁ ପଦକ୍ଷେପ ନେଇଥିଲି । କାଶୀପୁରରେ ଆରମ୍ଭ ହୋଇଥିବା ଖାଦ୍ୟ ନିରାପତ୍ତା କାର୍ଯ୍ୟକ୍ରମ ଓ ଶିକ୍ଷା ଆନ୍ଦୋଳନ ଏଇଭଳି ଅନ୍ୟ ଜିଲ୍ଲାମାନଙ୍କୁ ସମ୍ପ୍ରସାରିତ ହୋଇଥିଲା । ଏଥିପାଇଁ ସ୍ଥାନୀୟ ପ୍ରଶାସନଠାରୁ ଆରମ୍ଭ କରି ଭାରତ ସରକାରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ଠାରୁ ଆମକୁ ପ୍ରଚୁର ସମର୍ଥନ ଓ ସାହାଯ୍ୟ ମିଳିଥିଲା ।



## ୪୫

ମୁଁ ବୁଝିପାରେ ନାହିଁ କାଶୀପୁରରେ କାହିଁକି ମହାଶିବରାତ୍ରି ଏତେ ଆଗ୍ରହରେ ପାଳନ କରାଯାଏ । ଆଦିବାସୀର ପର୍ବପର୍ବାଣି ଓ ପରମ୍ପରା ଭିତରେ ଶିବପାର୍ବତୀଙ୍କ ଭୂମିକା ବୁଝିବାକୁ ବହୁତ କଷ୍ଟହୁଏ । କାଶୀପୁରରେ ଶିବମନ୍ଦିର ଓ ତା'ଘରିପାଖେ ଚମ୍ପାଗଛର ଜଙ୍ଗଲ । କିନ୍ତୁ ବଡଯାତ୍ରା ହୁଏ ଡୁଡୁକାବାହାଲ ଗାଁରେ । ଏବେ ଗତ ୫ବର୍ଷ ଭିତରେ ବିଭିନ୍ନ ଗାଁମାନଙ୍କରେ ଯଥା; ଗୋଡିଗୁଡା, ରେଙ୍ଗା ଆଦି ଗାଁମାନଙ୍କରେ ଶିବରାତ୍ରି ଉତ୍ସବ ମହାସମାରୋହରେ ପାଳିତ ହେଉଛି । ଅସଲ କଥା ଏଇ ଦିନ ପୁଅଝିଅ ରାତିସାରା ଗୀତ ଗାଇବେ ଲଗାମହୀନ ଭାବେ । ଦୋକାନ ବଜାର ବସିବ । ଡୁଡୁକାବାହାଲକୁ ନାମୀ ଅପେରା ଆସିବ । ଏ ସମୟରେ ଶୀତ କମି ଯାଇଛି, ପ୍ରକୋପ ଆଉ ନାହିଁ । କିନ୍ତୁ ମହୁଲି ଶୀତ ସରିନାହିଁ । ଧାନ କଟା, ଅଳସୀ ପିଟା, ମାଣ୍ଡିଆ ଅମଳ ଆଦି ଶେଷ ହୋଇଛି । ଏବେ ପର୍ବ ପର୍ବାଣିର ବେଳ । ଚଇତିପର୍ବ ପୂର୍ବରୁ ଶିବରାତ୍ରି କାଶୀପୁର ଅଞ୍ଚଳର ବଡ ପର୍ବ- ଆଦିବାସୀ ଓ ଅଣଆଦିବାସୀଙ୍କର । ସେଦିନ ସକାଳୁ ମୁଁ ଉଠି ପଡିଥିଲି । ସୂର୍ଯ୍ୟୋଦୟ ଏବେ ମଧ୍ୟ ହୋଇନାହିଁ । ତିନୋଟି ପିଲା କାଠ କାଉଡି ଧରି ଚାଲିଛନ୍ତି । ଜଣକୁ ଆଠବର୍ଷ, ଆଉଜଣକୁ ଦଶବର୍ଷ ଓ ସବୁଠାରୁ ବଡ ପିଲାଟିକୁ ବାରବର୍ଷ । କାଠ କାଉଡିର ଓଜନ ବୟସ ଅନୁସାରେ । ମୁଁ ପଚାରିଲି କାଠ କାଉଡିରୁ କେତେ ଟଙ୍କା ମିଳିବ । ସାନଟି କହିଲା ୩ଟଙ୍କା । ମଝିଟି କହିଲା ୪ଟଙ୍କା ଓ ବଡଟି କହିଲା ୫ଟଙ୍କା । ମୁଁ ପଚାରିଲି କାଠ କେଉଁଠୁ ଆଣିଛ ? ଶାଳ କାଠ କି ଆମ୍ବ କାଠ ? ସମସ୍ତେ କହିଲେ ଯେ ଗାଁ ପାଖ ଝାଡ ଜଙ୍ଗଲରୁ କାଠ ଆଣିଛନ୍ତି । ଶାଳ ନୁହେଁ କି ଆମ୍ବ ନୁହେଁ । ଆଜି ପରା ଶିବରାତ୍ରି । ଯାତରା ଖର୍ଚ୍ଚ ପାଇଁ ଏତେ ସକାଳୁ ସେମାନେ କାଶୀପୁର ବଜାରକୁ ଧାଇଁଛନ୍ତି । ମୁଁ ଅବାକ ହେଲି । ସେମାନଙ୍କୁ ଆଉଥରେ ଅନାଇଲି । ଢୋଲା ପ୍ୟାଣ୍ଟ । ଚିରା ଗେଞ୍ଜି । ଖାଲି ପାଦ । ଦେହର ହାଡ ଗଣି ହୋଇଯାଉଛି । ଆଖିରେ ଗୋଟାଏ ପ୍ରକାର ବ୍ୟାକୁଳତା । ମୁହଁ ଉପରେ ଆଗ୍ରହର ଛାପ । ବଞ୍ଚିବାର ଆନନ୍ଦ ସେମାନେ ଆଜି ଉପଭୋଗ କରିବାକୁ ଚାହୁଁଛନ୍ତି । ସେମାନେ ଗତବର୍ଷ ଶିବରାତ୍ରି କଥା ନିଶ୍ଚୟ ମନେ ପକାଇବେ । କାଶୀପୁରକୁ ନଯାଇ ସେମାନେ ଗୋଡିଗୁଡା ଗାଁକୁ ଯାଇଥିଲେ ଓ ରାତିସାରା ଉଜାଗର ରହି ଗୀତନାଚ ଦେଖିଥିଲେ । ଏବର୍ଷ ରେଙ୍ଗା ଗାଁକୁ ଯିବେ ବୋଧେ । କାଶୀପୁର ଶିବମନ୍ଦିରରେ ଆଲୁଅ ସିନା ବେଶି କିନ୍ତୁ ଆଦିବାସୀ କମ ଥାଆନ୍ତି । ଗୋଡିଗୁଡା ଓ ରେଙ୍ଗାର ଶବରାତ୍ରିରେ ଆଦିବାସୀଙ୍କ କୋଳାହଳ ଖୁବ୍ ବେଶୀ । ଡୁଡୁକାବାହାଲ କୋଡିଏ କିଲୋମିଟର । ସେଠାକୁ ଯାଇ ହେବ ନାହିଁ । ପିଲାମାନେ ଚୁମ୍ବକରେ ଏତେକଥା କହିଦେଇ କାଠ କାଉଡି ଧରି କ୍ଷିପ୍ରଗତିରେ କାଶୀପୁର ଆଡକୁ ମୁହାଁଇଲେ ।

ମୁଁ ଜାଣେ ଆମେ ସମସ୍ତେ ସ୍ମୃତିକୁ ଧରି ବଞ୍ଚି ରହିଛେ । ଖାଲି ସ୍ମୃତି ନୁହେଁ ତାହା ସହିତ ଆମର କିଛି ମିଶାମିଶି । ଇଂରାଜୀରେ ଏହାକୁ କୁହାଯାଏ ନଷ୍ଟାଲ୍‌ଜିଆ (Nostalgia) । ବିଖ୍ୟାତ ଔପନ୍ୟାସିକ ଓ ନୋବେଲ ପୁରସ୍କାରପ୍ରାପ୍ତ ହରମାନ ହେସ୍‌ଙ୍କ ଗୋଟାଏ ଉପନ୍ୟାସ ହେଉଛି କୁଲ୍‌ପ୍ (Knulp) ଯାହାକୁ ଆମେ ବିଶ୍ୱ ବିଦ୍ୟାଳୟ ଜୀବନରେ ପଢ଼ି ଜୀବନ ସାରା ନଷ୍ଟାଲ୍‌ଜିକ୍ ହୋଇ ପାରିଛୁ । ଇଂରେଜୀ ବିଭାଗର ପ୍ରଫେସର ଡକ୍ଟର ପ୍ରଫୁଲ୍ଲ କର କେଜାଣି କାହିଁକି ନୂଆ ହୋଇ ପ୍ରକାଶିତ ହୋଇଥିବା ଏ ବହିଟିକୁ ଆମକୁ ପଢ଼ିବାକୁ ଦେଲେ । ବହିଟିର ସାରାଂଶ ହେଉଛି ଯେ କୁଲ୍‌ପ ଜୀବନସାରା କୌଣସି ବ୍ୟକ୍ତି, ସ୍ଥାନ ଓ ସମୟ ପାଖରେ ଅଟକି ଯାଇ ନାହିଁ । ସେ ଏକ ଭାସମାନ ବାଦଲ ଭଳି । ଯେତେବେଳେ ସେ ଜାଣେ ଯେ ଅନ୍ୟମାନେ ତାକୁ ଭଲପାଇ ବସିଲେଣି, ସେ କାହାକୁ କିଛି ନଜଣାଇ ଅନ୍ତର୍ଦ୍ଧାନ ହୋଇଯାଏ । ଏଇଭଳି କେତେବର୍ଷ ଗଲାପରେ ଓ ଅନେକ ସମ୍ପର୍କ ଛିନ୍ନ କରିଲାପରେ ସେ ଜାଣିଲା ଯେ ତାହାର ମୃତ୍ୟୁକାଳ ଉପସ୍ଥିତ ହୋଇଛି । ଜୀବନସାରା ଅନେକଙ୍କୁ ସେ ଯନ୍ତ୍ରଣା ଓ ବ୍ୟର୍ଥତା ଦେଇଥିବାରୁ ଭଗବାନଙ୍କ ପାଖରେ କ୍ଷମା ମାଗିଛି । କିନ୍ତୁ ଭଗବାନ ସଶରୀରେ ଉପସ୍ଥିତ ହୋଇ ତା'କୁ କହିଛନ୍ତି ଯେ ସେ ସମ୍ପୂର୍ଣ୍ଣ ଦୋଷମୁକ୍ତ । ତା'ର ଏ ପୃଥିବୀରେ ଜନ୍ମ ହେବାର ଉଦ୍ଦେଶ୍ୟ ହେଉଛି ନଷ୍ଟାଲ୍‌ଜିଆ ସୃଷ୍ଟି କରିବା ଓ ସେ ତାହା ସଫଳତାର ସହ ପୂରଣ କରିଛି । ସେ ସ୍ୱର୍ଗକୁ ଆନନ୍ଦରେ ଯାଇପାରିବ । ବହିଟି ଆମକୁ ପ୍ରଭାବିତ କରିଥିଲା କାରଣ ଆମେ ସମସ୍ତେ ଅଜାଣତର କିଛି ଦିନ ପାଇଁ କୁଲ୍‌ପ ଭଳି ନଷ୍ଟାଲ୍‌ଜିଆ ସୃଷ୍ଟି କରୁଥିଲୁ । କେତେ ମାତ୍ରାରେ ସଫଳ ହୋଇଥିଲୁ ମଧ୍ୟ ।

ରାୟଗଡ଼ାରୁ ରୋପକଣା ବାଟ ଦେଇ କାଶୀପୁର ଆସିଲାବେଳେ ସେ ଛକ ପାଖେ ଗୋଟାଏ ଯାକରନ୍ଦା (Jacaranda) ଗଛ ଥାଏ । ବସନ୍ତ ଆସିଲା ମାତ୍ରକେ ସେଠାରେ ବାଇଗଣି ଫୁଲ ଭର୍ତ୍ତି ହୋଇଯାଏ । ଗଛ ଭାଙ୍ଗି ପଡିଲା ଭଳି ଲାଗେ । ମୁଁ ଅଟକି ଯାଏ ସେଠାରେ । ଏ ଗଛରେ ଫୁଲ ବେଶିଦିନ ରହେ ନାହିଁ । ମୁଁ କିନ୍ତୁ କେଜାଣି କାହିଁକି ଏ ଫୁଲର ଶୋଭା ଦେଖିବାକୁ ବ୍ୟାକୁଳ ହୋଇଥାଏ । ମନସ୍ଥ କରିଥାଏ ଯେ କାଶୀପୁରରେ ଯାକରନ୍ଦା ଗଛର ଗୋଟାଏ ଅରଣ୍ୟ ସୃଷ୍ଟି କରିବାକୁ । ମୋର ମନେ ପଡେ ବାଣୀବିହାରରୁ ଆର.ଆର.ଏଲ୍ ଗଲାବେଳେ କୃଷ୍ଣଚୂଡ଼ା ଗଛରେ ଫୁଲଭାଙ୍ଗି ପଡୁଥାଏ । ମୁଁ କେବଳ ସ୍ୱପ୍ନ ବିଭୋର ହେବାପାଇଁ ସୂର୍ଯ୍ୟାସ୍ତ ସମୟରେ ଏକାକୀ କେତେଥର ସେ ବାଟ ଯିବା ଆସିବା କରିଥାଏ । ମୁଁ ଅବଶ୍ୟ କିଛି ଖୋଜୁଥାଏ କିନ୍ତୁ ପାଏ ନାହିଁ । ଏଇ ଦିନମାନଙ୍କରେ ବସନ୍ତର ଆଗମନର ସଙ୍କେତ ଦେଇ କାଶୀପୁର ସାରା ଅନେକ ରଙ୍ଗ ଓ ବାସ୍ନାର ଫୁଲ ଫୁଟିଥାଏ । ଆମ୍ବ ଗଛରେ ବଉଳ, କାଜୁ ଗଛରେ ଫୁଲ, କେଉଁଠି କେଉଁଠି ମହୁଲ ଗଛରେ ଫୁଲ, ଗାଁ ରାସ୍ତାରେ କୃଷ୍ଣଚୂଡ଼ା ଗଛରେ ବି ଫୁଲ । ରଙ୍ଗ ଓ ବାସ୍ନା ଘରିଆଡେ ବିଛୁରିତ ହୋଇଯାଏ । ମୁଁ ଗାଁରୁ ଗାଁ ସବୁ ପଦଯାତ୍ରା କରିଲା ବେଳେ ଏସବୁ ଦେଖି ଆନନ୍ଦରେ ବିହ୍ୱଳ ହୋଇଯାଏ । ମୋର ସାଥୀମାନଙ୍କୁ ଓ ଚଲାବାଟର ପଥିକମାନଙ୍କୁ ସବୁବେଳେ ସବୁକଥା କହେ ନାହିଁ । କିନ୍ତୁ ଥକ୍‌କା ମାରିବା ଆଳରେ ମୁଁ କିଛି ସମୟ ଗଛମୂଳେ ବସିବାକୁ କହିଥାଏ । ସେତେବେଳେ ପାହାଡ ଉପରୁ ଦୂର ଗାଁର କୃଷ୍ଣଚୂଡ଼ା ଗଛରେ ଫୁଲ ଚିହ୍ନିହୁଏ ।

ଆଦିବାସୀ ପିଲାଟି ଗାଈ ଚରାଇବାକୁ ଗଲାବେଳେ ବା କାଠ ଆଣିବାକୁ ଡଙ୍ଗର ଉପରକୁ ଚଢିଲାବେଳେ ମୁହୂର୍ତ୍ତକ ପାଇଁ ନିମ୍ନ ଉପତ୍ୟକାରୁ ସେ ଦେଖିଥିବା ରଙ୍ଗ ବେରଙ୍ଗର ଫୁଲ ଏବଂ ମିଠାବାସ୍ନାର ଆକର୍ଷଣରେ କ୍ଷଣିକ ପାଇଁ ନିଶ୍ଚୟ ମୋହଗ୍ରସ୍ତ ହୋଇପଡିଥିବ । ଆପଣା ବାଟରେ ସେ ନଷ୍ଟାଲ୍‌ଜିକ୍ ହୋଇପଡିଥିବ । ସ୍ୱପ୍ନବିଭୋର ହୋଇ ସେ ଗୀତ ପଦେ ଗାଇ ଦେଇଥିବ । ସେ ଅଟକି ଯିବାକୁ ମଧ୍ୟ ମନ କରିଥିବ । ସାଙ୍ଗସାଥୀ ଖୋଜିଥିବ । ଜୀବନ ଓ ଜୀବିକାର ଜଟିଳତା ଭିତରୁ ବଞ୍ଚିବାର ସ୍ୱାଦ ଓ ମୋହମାଦକତା ବୁଝିବାକୁ ଚେଷ୍ଟା କରିଥିବ । ବନ୍ଧୁତା ଓ ଭଲପାଇବାର ଅଙ୍କାବଙ୍କା ରାସ୍ତାକୁ ନୂତନ ଭାବେ ପୁଣି ଖୋଜିଥିବ । ପେଟର ଭୋକକୁ ସେ ଦଣ୍ଡକ ପାଇଁ ଭୁଲି ଯାଇଥିବ । କଳ୍ପନାର ନଅରଟିଏ ସେ ଗଢିଥିବ । କାହାଣୀ ସବୁ ମନେ ମନେ ଗଢିଥିବ । ସବୁ ସୁନ୍ଦର ଓ ଆନନ୍ଦମୟ । ନଷ୍ଟାଲ୍‌ଜିଆର ଅର୍ଥ ଆଉ କ'ଣ ହୋଇପାରେ ।

ମୁଁ ସବୁବେଳେ ଆଦିବାସୀ ପିଲାମାନଙ୍କୁ ଅମୃତର ସନ୍ତାନ ହିସାବରେ ହିଁ ଦେଖିଥାଏ । କାହିଁକି ସେ ଶିବରାତ୍ରି ପାଇଁ ଦୁଇଦିନ କାଠ ହାଣି କାଶୀପୁର ବଜାରରେ ବିକ୍ରି କରିଲା ସେ କଥା ମୋର ପଚାରିବାର ଅଧିକାର ଅଛି କି ନାହିଁ, ମୁଁ ସ୍ପଷ୍ଟ ନିର୍ଣ୍ଣୟ କରିପାରେ ନାହିଁ । ରାତ୍ରି ସ୍କୁଲକୁ ସେ କାହିଁକି ସବୁଦିନେ ଆସିଲା ନାହିଁ ବା ଦିନ ସ୍କୁଲକୁ ସେ କାହିଁକି ଘୃଣାଚକ୍ଷୁରେ ମଧ୍ୟ ଦେଖିଲା ନାହିଁ, ଏକଥା ଜାଣିବାର ମୋର ଅବକାଶ ନାହିଁ । ମୁଁ ଜାଣେ ଅନେକ କିଛି ଅର୍ଥ ଏ ପିଲାଙ୍କ ଭିତରେ ମୋତେ ଖୋଜିବାକୁ ହେବ । ସେଇଥିପାଇଁ ରାତ୍ରିସ୍କୁଲରେ ପହଞ୍ଚିଲା ମାତ୍ରକେ ମୁଁ ପିଲାମାନଙ୍କୁ କହେ ବହି ସିଲଟ ବ୍ୟାଗ୍ ଭିତରେ ଭର୍ତ୍ତି କରିଦେବା ପାଇଁ । ଅନୁରୋଧ କରେ ଗୀତ ଗାଇବା ପାଇଁ, ମଜ୍ଜା ଗପ କହିବା ପାଇଁ, ଆଲୋକ ଓ ଅନ୍ଧାରର ମିଶ୍ରଣରେ ନୂତନ ପ୍ରହେଳିକା ସୃଷ୍ଟି କରିବା ପାଇଁ । ମୋ ପାଇଁ ସେଇ ସମୟ ଗୁଡିକ ସବୁଠାରୁ ଦିବ୍ୟ ମୁହୂର୍ତ୍ତ ହୋଇପଡିଥାଏ ।

ମୁଁ ଲକ୍ଷ୍ୟ କରୁଥାଏ ଯେ, ଜମି ମରାମତି କରିଲାବେଳେ ଅଥବା ଚେକ୍‌ଡ୍ୟାମ୍ କରିଲାବେଳେ, ବୃକ୍ଷରୋପଣ କରିଲାବେଳେ ଅଥବା ପନିପରିବା ଚାଷ ବେଳେ ଆଦିବାସୀ ପିଲାମାନେ ଆଗରେ ଅଛନ୍ତି । ମୁଁ ଜାଣିଛି ଯେ ଆଗାମୀ ଦିନମାନଙ୍କରେ ସେମାନେ ଏ ଜଟିଳ ପୃଥିବୀ ଓ ଏହାର ରାଜନୀତିକୁ ସାମ୍ନା କରିବାକୁ ପ୍ରସ୍ତୁତ ହେବେ । ଏଅଞ୍ଚଳ ସେମାନଙ୍କ ଅପେକ୍ଷାରେ ଅଛି । ତାଙ୍କ ସମାଜ ମଧ୍ୟ ଆଶା ଓ ଆକାଂକ୍ଷା ଭିତରେ ଅଛି । ସେମାନେ ନିର୍ଣ୍ଣୟ କରିବେ ଠିକ୍ କ'ଣ ଭୁଲ୍ କ'ଣ । ଜୀବନରେ ଅସଲ ଅର୍ଥ କ'ଣ ସେମାନେ ନିଶ୍ଚୟ ବୁଝିପାରିବେ । ସେମାନେ ଲଢିବେ ଓ ଅନ୍ୟକୁ ଲଢିବା ଶିଖାଇବେ । ଜୀବନ ବିଦ୍ୟାଳୟର ଅର୍ଥ ଏଇଭଳି ମୁଁ ବୁଝିଥାଏ ।

ଆମର ତଥାକଥିତ ବିକାଶ କାର୍ଯ୍ୟକ୍ରମରେ ଅନେକ ଫାଙ୍କ ରହିଯାଇଛି । ଗତ ପାଞ୍ଚବର୍ଷ ଧରି ଆମେ ଯାହା ଦେଖିଛେ, ଅନ୍ତଃସ୍ଥ କରିଛେ ଓ ପରିକଳ୍ପନାମାନ ତିଆରି କରିଛେ, ସେ ସବୁ ଗୋଟାଏ ଗୋଟାଏ ଭୀଷଣ ଦ୍ୱନ୍ଦ୍ୱ । କେଉଁ ଯୁଗରୁ ଆଦିବାସୀମାନେ ଅଣଆଦିବାସୀଙ୍କ

ଜାଲରେ ପଡିଯାଇଛନ୍ତି । ସେଥିରୁ ମୁକୁଳିବା ସହଜକଥା ନୁହେଁ । କିନ୍ତୁ ସମ୍ଭବତଃ ମୁକୁଳିବାର ଗୋଟାଏ ବାଟ ଅଛି । ତାହା ହେଉଛି ଆଦିବାସୀ ନିଜର ଆତ୍ମ ପରିଚୟକୁ ଆଉଥରେ ଆବିଷ୍କାର କରିବା । ଏଥିପାଇଁ ବିକାଶ ଯୋଜନା ଯଥେଷ୍ଟ ନୁହେଁ । ପଞ୍ଚବାର୍ଷିକ ଯୋଜନାମାନଙ୍କର ସମ୍ବଳ ଯଥେଷ୍ଟ ନୁହେଁ । ଆମେ ସ୍ୱେଚ୍ଛାସେବୀମାନେ ମଧ ଯଥେଷ୍ଟ ନୋହୁଁ । ଆମେ ମଧ ସମ୍ଭବତଃ ଅନାବଶ୍ୟକ । ଆଦିବାସୀକୁ ନିଜକୁ ଆଉଥରେ ଆବିଷ୍କାର କରିବାକୁ ସୁଯୋଗ ମିଳି ପାରିବ କି ?



# ୪୬

କାଶୀପୁରରେ ଆମର କାର୍ଯ୍ୟକ୍ରମ ପ୍ରତି ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ସମର୍ଥନ ପାଇବା ଆରମ୍ଭ କରିଥିଲା । ୧୯୮୫ ମସିହା ବେଳକୁ ଏ ସମର୍ଥନ କେବଳ ନୈତିକ ବା ଅର୍ଥନୈତିକ ନଥିଲା । ଏହା ଆଦର୍ଶବାଦ ଉପରେ କେତେକ କ୍ଷେତ୍ରରେ ପର୍ଯ୍ୟବସିତ ଥିଲା । ୧୯୮୪ ମସିହାରେ ମାନବାଧିକାର ଉପରେ ହଲାଣ୍ଡରେ ଆନ୍ତର୍ଜାତୀୟ ପାଠ୍ୟକ୍ରମରେ ଆମର ଭାଗନେବା ଖୁବ୍ ସହାୟତା କରିଥିଲା । ମୋଟାମୋଟି ଭାବେ ପୃଥିବୀସାରା ଚାଲିଥିବା ଜନଆନ୍ଦୋଳନମାନଙ୍କ ସହ ଆମେ ନିଜକୁ ପରିଚିତ କରାଇପାରିଥିଲୁ । ସାମାଜିକ, ଆର୍ଥିକ ଓ ରାଜନୈତିକ ପରିବର୍ତ୍ତନ ପାଇଁ ଅନେକ ବନ୍ଧୁ ଯେ ସଂଗ୍ରାମରତ ଏହା ଆମକୁ ଖୁବ୍ ପ୍ରେରଣା ଯୋଗାଇଥିଲା । କାଶୀପୁର କାର୍ଯ୍ୟକ୍ରମରେ ହଲାଣ୍ଡର ହିଭସ୍ (Hivos) ସଂସ୍ଥା ଖୁବ୍ ସହାୟତା କରିଥିଲେ । ଏହା ସେ ଦେଶର ଗୋଟିଏ ଛୋଟିଆ ଅନୁଦାନକାରୀ ସଂସ୍ଥା । କିନ୍ତୁ ସେମାନଙ୍କର ଉତ୍ପତ୍ତି ମାନବବାଦୀ ଆନ୍ଦୋଳନରୁ । ବାମପନ୍ଥୀ ଓ ଦକ୍ଷିଣପନ୍ଥୀଙ୍କ ଠାରୁ ସମାନ୍‌ଦୂରତ୍ୱ ରଖି ଓ ମଣିଷକୁ ସବୁ ବିକାଶର କେନ୍ଦ୍ରବିନ୍ଦୁ କରି ପଶ୍ଚିମ ଦେଶମାନଙ୍କରେ ମାନବବାଦୀ ଆନ୍ଦୋଳନ ମୁଣ୍ଡଟେକିଥିଲା ଅନେକ ବର୍ଷଧରି । କାଶୀପୁରରେ ଆଦିବାସୀମାନେ ସବୁ ବିକାଶ କାର୍ଯ୍ୟକ୍ରମରେ କେନ୍ଦ୍ରବିନ୍ଦୁ ହୋଇଥିବାରୁ ହିଭସ୍ ସଂସ୍ଥା ଆମକୁ ଅନୁଦାନ ଦେବାକୁ ଆଗ୍ରହ ପ୍ରକାଶ କରିଥିଲା । କେବଳ ଆର୍ଥିକ ଅନୁଦାନ ନୁହେଁ, ମତବାଦର ସମର୍ଥନ ଦେବାକୁ ମଧ୍ୟ ଆଗେଇ ଆସିଥିଲା । ଆମେ ହଲାଣ୍ଡ ଗସ୍ତରେ ଥିବାବେଳେ ସେମାନଙ୍କର ମୁଖ୍ୟ କାର୍ଯ୍ୟାଳୟର କାର୍ଯ୍ୟକ୍ରମର ପରିବେଶ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ସେଠାରେ ସବୁ କର୍ମକର୍ତ୍ତା ବଦ୍‌ଖର୍ଚ୍ଚ କିପରି ରୋକାଯାଇ ପାରିବ ସେ ବିଷୟରେ ସଚେତନ ଥିଲେ । ଏପରିକି ବାସନକୁସନ ସଫାକରିବାକୁ ସେମାନେ ମେସିନ୍ ଖରିଦ୍ କରିନଥିଲେ । ସାଧାସିଧା ଅଫିସ୍ । କୌଣସି ପଞ୍ଚତାରକା ବ୍ୟବସ୍ଥା ନଥିଲା ସେଠି । ଏଥିପାଇଁ ଏହାର ଯଶ, ଖ୍ୟାତି ସବୁଠାରୁ ବେଶୀଥିଲା ।

କାଶୀପୁରରେ ହିଭ୍ସ ସଂସ୍ଥା ସହ ସଂଶ୍ଳିଷ୍ଟ ହୋଇଥିବା ୟାନ୍ ଡେ ୱିଟ୍ (Jan de Witte) ଓ ୟାନ୍ ରେଣ୍ଡର୍ସ (Jan Reynders) ଆମର ବନ୍ଧୁ ଓ ସମର୍ଥକ ହୋଇଥିଲେ ପ୍ରଥମ ଦେଖାସାକ୍ଷାତରେ । ୟାନ୍ ଡେୱିଟ୍ କାଶୀପୁର ପ୍ରଥମେ ଆସି ଆମକୁ ଦୀର୍ଘ ମିଆଦି ସାହାଯ୍ୟ ଦେବାକୁ ଭିତ୍ତିଭୂମି ପ୍ରସ୍ତୁତ କରିଥିଲେ । ବ୍ୟକ୍ତିଗତ ଜୀବନରେ ସେ ଥିଲେ ଗୋଟାପଣେ ଜୀବନବାଦୀ । ସ୍ୱଚ୍ଛଳ ପରିବାରରେ ଜନ୍ମ ହୋଇଥିବାରୁ ଜୀବନଜୀବିକାର ସମସ୍ୟା ନଥିଲା । ସେ ଏକାଧାରରେ ଥିଲେ ହୋଟେଲ ମ୍ୟାନେଜ୍‌ର, ରେସ୍‌କାର ଡ୍ରାଇଭର,

ଚିତ୍ରକର, ସଂଗୀତଜ୍ଞ, ରାଜମିସ୍ତ୍ରୀ ଓ ଦୁଃସାହସିକ ପରିବ୍ରାଜକ । ହଲାଣ୍ଡର ବାଧ୍ୟତାମୂଳକ ସାମରିକ ଟ୍ରେନିଂ ସେ ନକରିବାକୁ ନିଷ୍ପତ୍ତି ନେଇ ସମାଜ ସେବା କ୍ଷେତ୍ରକୁ ଆସିଥିଲେ । ହଲାଣ୍ଡର ୟୁଟ୍ରେକ୍ ସହରରେ ଛୋଟ ଘରଟିଏ କରିଛନ୍ତି । ଇଟା ସିମେଣ୍ଟ ଲଗାଇ ନିଜ ହାତରେ ଘରଟିକୁ ସଜାଇଛନ୍ତି । ନିଜ ଘରେ ଆଙ୍କିଥିବା ସୁନ୍ଦରଚିତ୍ର ଟାଙ୍ଗିଛନ୍ତି । ଘରସାରା ବିଭିନ୍ନ ବାଦ୍ୟଯନ୍ତ୍ର ରଖିଛନ୍ତି । ଶନିବାର ଓ ରବିବାର ସେ ସବୁ ବାଦ୍ୟଯନ୍ତ୍ରକୁ ବଜାନ୍ତି । ଷ୍ଟେସନ୍‌ସ୍କୋୟାରରେ ସେ ଜଣେ ଏକକ ଅର୍କେଷ୍ଟ୍ରା ଭାବେ ସଂଗୀତ ପରିବେଷଣ କରନ୍ତି । ତାଙ୍କ ସଂଗୀତ ଶୁଣୁଥିବା ବ୍ୟକ୍ତିମାନେ କିଛି କିଛି ଅର୍ଥ ତାଙ୍କୁ ଦିଅନ୍ତି । ତାହାକୁ ସେ ବିଭିନ୍ନ ସମାଜସେବା ଅନୁଷ୍ଠାନକୁ ଦେଇଥାଆନ୍ତି । ସାରା ସହର ତାଙ୍କର ସଂଗୀତ ପ୍ରତି ଅନୁରାଗ ଜାଣିଥାଏ । ସମସ୍ତେ ଜାଣିଥାଆନ୍ତି ଯେ ସଂଗୀତ ପରିବେଷଣ କରି ସେ ଭିକ୍ଷା ମାଗୁନଥାନ୍ତି । ତାଙ୍କର ଏହି ଉଦ୍ୟମ ସମାଜସେବା ପାଇଁ ଅର୍ଥ ଯୋଗାଡ କରିବା । ଏଥିପାଇଁ ଅନେକ ଅକୁଣ୍ଠ ସାହାଯ୍ୟ କରିବାକୁ ଆଗେଇ ଆସିଥାଆନ୍ତି । ମୁଁ ଓ ବିଦ୍ୟା ହଲାଣ୍ଡରେ ଥିବାବେଳେ ସେ ଆମକୁ ତାଙ୍କର ବ୍ୟକ୍ତିଗତ ଓ ପେଶାଦାର ଜୀବନର ଏକ ସ୍ୱଚ୍ଛ ଉଦାହରଣ ଦେଇଥିଲେ । ତାଙ୍କର ବନ୍ଧୁମାନେ ତାଙ୍କୁ କେତେ ଆଦର କରନ୍ତି ତାହା ଆମକୁ ଦେଖିବାକୁ ମିଳିଥିଲା । ମୋଟର ସାଇକେଲ୍ ଓ ସ୍ପୋର୍ଟସ୍ କାର କେତେ ଅଧିକ ବେଗରେ ସେ ଚଳାଇ ପାରନ୍ତି, ତାହା ଆମକୁ ସେ ଦେଖାଇଥିଲେ । ଆମେ ମୋଟର ସାଇକେଲ୍ ଓ କାରରେ ତାଙ୍କ ସହ ବସି ପ୍ରାୟ ଘଣ୍ଟାକୁ ୨୦୦ କିଲୋମିଟର ଗତିର ଚମକପ୍ରଦ ଅନୁଭବ ଅର୍ଜନ କରିଥିଲୁ । ତାଙ୍କର ଭବିଷ୍ୟତ ଜୀବନର ପରିକଳ୍ପନା କ'ଣ ଆମେ ପଚାରିଥିଲୁ । ସେ ଅତି ସହଜଭାବେ ଉତ୍ତର ଦେଇଥିଲେ ଯେ, ତାଙ୍କର ଘନିଷ୍ଠ ବନ୍ଧୁ, ବନ୍ଧୁ ପତ୍ନୀ ଓ ତାଙ୍କର ସାନପୁଅ ତାଙ୍କ ଜୀବନର ସର୍ବସ୍ୱ । ଆଫ୍ରିକାରେ ଏକାଠି ଥିଲାବେଳେ ବନ୍ଧୁତ୍ୱ ଆରମ୍ଭ ହୋଇଛି ଏ ପରିବାର ସହ । ଭବିଷ୍ୟତ ଜୀବନ ଏଇ ପରିବାର ସହ ହିଁ କଟିବ । ଯାଜ୍ (Jazz) ସଙ୍ଗୀତ ମହୋତ୍ସବ ହେଉ ବା ହଲାଣ୍ଡର ଛେନା କାରଖାନା ହେଉ, ସେ ଆମକୁ ସବୁକିଛି ଦେଖିବାରେ ସାହାଯ୍ୟ କରିଥିଲେ ।

ଅନ୍ୟପକ୍ଷରେ ୟାନ୍ ରେଣ୍ଡର୍‌ସ ଜଣେ ବୁଦ୍ଧିଜୀବୀ ଥିଲେ । ଗରିବ ପରିବାରରେ ଜନ୍ମ ହୋଇଥିବାରୁ ତାଙ୍କର ଜୀବନ ସଂଗ୍ରାମ ଖୁବ୍ କଠୋର ଥିଲା । ସେ ବିଖ୍ୟାତ ଶିକ୍ଷା ଓ ଗବେଷଣା ପ୍ରତିଷ୍ଠାନ ଦି ଇନ୍‌ଷ୍ଟିଚ୍ୟୁଟ୍ ଅଫ ସୋସିଆଲ୍ ଷ୍ଟଡିଜ୍ (The Institute of Social Studies - ISS)ରେ ଅଧ୍ୟୟନ କରିଥିଲେ । ବଙ୍ଗଳାଦେଶରେ ସସ୍ତ୍ରୀକ ସେ ଅନେକ ବର୍ଷ ରହିଥିଲେ । ବଙ୍ଗଳା କହି ପାରନ୍ତି, ପଢ଼ି ପାରନ୍ତି ଓ ଲେଖିପାରନ୍ତି । ସେଇ ହିସାବରେ ଭାରତ ସହ ସେ ମଧ୍ୟ ଖୁବ୍ ପରିଚିତ । ଓଡ଼ିଆ ବୁଝିବାକୁ ତାଙ୍କୁ ବିଶେଷ କଷ୍ଟ ହୁଏନାହିଁ । ସ୍ତ୍ରୀ ଲୁସ୍ ମଧ୍ୟ ଗବେଷିକା ଓ ବୁଦ୍ଧିଜୀବୀ । ତାଙ୍କ ସହ କଥାବାର୍ତ୍ତା କଲେ ଅନେକ  କିଛି ଦେଶ ବିଦେଶର ରାଜନୀତି ଓ ଅର୍ଥନୀତି ସମ୍ପର୍କରେ ମତବିନିମୟ ହୋଇଥାଏ । ସେ ତାଙ୍କର ଘରେ ବଙ୍ଗଳାଦେଶର ଛାତ୍ରମାନଙ୍କୁ ରହିବାକୁ ସୁଯୋଗ ଦେଇଥାଆନ୍ତି । ଏଥିପାଇଁ ପଡିଶା ଲୋକଙ୍କଠାରୁ ଅନେକ ମନ୍ତବ୍ୟ ଶୁଣିବାକୁ ମିଳେ । ହଲାଣ୍ଡ ଭଳି ଏକ ଗୋରା ଦେଶରେ

କଳାମାନଙ୍କ ପ୍ରତି ଏବେ ମଧ୍ୟ ବିଦ୍ୱେଷ ରହିଛି ତାହା ଜଣାପଡେ । ହଲାଣ୍ଡ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଦକ୍ଷିଣ ଆଫ୍ରିକାର ସଂଖ୍ୟାଲଘୁ ସରକାରଙ୍କ ସମର୍ଥକ । ଦକ୍ଷିଣଆଫ୍ରିକାକୁ ସବୁ ପ୍ରକାର ଜିନିଷ ରୋଟର ଡ୍ୟାମ୍ ବନ୍ଦର ଦେଇ ରପ୍ତାନୀ ହୋଇଥାଏ । ବ୍ରିଟିଶମାନେ ଦକ୍ଷିଣ ଆଫ୍ରିକାକୁ ଅଧିକାର କରିବା ପୂର୍ବରୁ ହଲାଣ୍ଡ ଏ ଅଞ୍ଚଳକୁ ଦଖଲ କରିଥିଲା ଏବଂ ହଲାଣ୍ଡର ପାଦ୍ରୀମାନେ ସେଠାରେ ଆସ୍ଥାନ ଜମାଇଥିଲେ । ୟାନ୍ ରେଣ୍ଡର୍ସ କଳାଗୋରା ଭେଦଭାବକୁ ପ୍ରତିରୋଧ କରି ତାଙ୍କ ଘରକୁ ଆମ ଭଳି ଲୋକମାନଙ୍କୁ ଆସିବାକୁ ବେଶୀ ପସନ୍ଦ କରୁଥିଲେ । ବଙ୍ଗଳା ବା ଭାରତୀୟ ଖାଦ୍ୟ ଖାଉଥିଲେ । ଆମେ ଥିବାବେଳେ ସେଠାରେ କେତେଥର ମାଛ ତରକାରୀ ଖାଇବାକୁ ମିଳିଥିଲା । ୟାନ୍ ରେଣ୍ଡର୍ସ କାଶୀପୁର ଆସି ଆମ ସହ ଓଡ଼ିଶାର ଆଦିବାସୀ ଅଞ୍ଚଳରେ କିପରି ଅଧିକ ବିକାଶମୂଳକ କାର୍ଯ୍ୟକ୍ରମ ହାତକୁ ନିଆଯାଇ ପାରିବ ଗୁରୁତ୍ୱର ସହ ଆଲୋଚନା କରୁଥିଲେ । ତାଙ୍କର ପ୍ରୋତ୍ସାହନାରେ ଫୁଲବାଣୀ ଓ ମୟୁରଭଞ୍ଜରେ ପ୍ରକଳ୍ପ ଆରମ୍ଭ କରିବାକୁ ନିଷ୍ପତ୍ତି ନିଆଯାଇଥିଲା । ଆମ ପ୍ରକଳ୍ପକୁ ଏକ ରିସୋର୍ସ ସେଣ୍ଟର କରି ଗଢିତୋଳିବା ତାଙ୍କର ମଧ୍ୟ ଏକ ଉଦ୍ଦେଶ୍ୟ ଥିଲା । ୟାନ୍ ତୃଣମୂଳସ୍ତରର କର୍ମୀ ଥିଲେ । ତେଣୁ ତାଙ୍କର ବ୍ୟକ୍ତିଗତ ଜୀବନ ଖୁବ ସରଳ ଓ ନିଷ୍ଠାପର ଥିଲା । ସେ କେବେହେଲେ ଅନୁଦାନକାରୀ ସଂସ୍ଥାମାନଙ୍କର ପଦସ୍ଥ କର୍ମକର୍ତ୍ତା ଭଳି ବ୍ୟବହାର କରୁନଥିଲେ । ସେ ଓଡ଼ିଆ ଖୁବ୍ ବେଶୀ ବୁଝୁଥିବାରୁ ସାଧାରଣ ଲୋକଙ୍କ ସହ ବାର୍ତ୍ତାଳାପ କରିପାରୁଥିଲେ । ବିଦ୍ୟା ଓ ମୁଁ ବହି ପଢିବାରେ ଆଗ୍ରହ ଦେଖାଇଥିବାରୁ, ସେ ଆମ ଲାଇବ୍ରେରୀକୁ ଅନେକ ଉପାଦେୟ ବହି ପଠାଇଥିଲେ ।

ଆଉ ଜଣେ ହଲାଣ୍ଡ ନିବାସୀ ଫନ୍ସ ଭାନ୍‌ଡର ଭେଲ୍‌ଡେନ (Fons Vander Velden) ଆମର ଘନିଷ୍ଠ ହୋଇଥିଲେ । ମୂଲ୍ୟାଙ୍କନ ପାଇଁ ସେ କାଶୀପୁର ଆସିଥିଲେ । ସେ ଗୋଟାପଣେ ଭାରତୀୟ ଥିଲେ ଆଉର ବିଚାରରେ । ଜବାହରଲାଲ୍ ନେହେରୁ ବିଶ୍ୱବିଦ୍ୟାଳୟରେ ସେ ପାଠ ପଢିଥିଲେ ଓ ବହୁରାଷ୍ଟ୍ରୀୟ କମ୍ପାନୀ ୟୁନିଲିଭର(Unilever) ଉପରେ ଗବେଷଣା କରିଥିଲେ ଭାରତରେ । ସହରର ବସ୍ତି ଅଞ୍ଚଳ ହେଉ ବା ଗ୍ରାମାଞ୍ଚଳ ହେଉ, ଏକ ବହୁରାଷ୍ଟ୍ରୀୟ କମ୍ପାନୀର ଚେର କେମିତି ବ୍ୟାପିଛି ସେ ବାରମ୍ବାର ଉଲ୍ଲେଖ କରୁଥିଲେ । ସେଠାରେ ଥିବା ନେଇମେଗେନ୍ ବିଶ୍ୱବିଦ୍ୟାଳୟରେ ସେ ଅଧ୍ୟାପକ ଥିଲେ । ତାଙ୍କର ଛାତ୍ରମାନଙ୍କୁ ଦକ୍ଷିଣ ଏସିଆର ସମସ୍ୟା ଏବଂ ଆମର ଆଦିବାସୀ ବିକାଶ କାର୍ଯ୍ୟକ୍ରମ ସହ ପରିଚିତ କରିବାକୁ ଆମକୁ ଏକ ଭାଷଣ ଦେବାକୁ ଆମନ୍ତ୍ରଣ କରିଥିଲେ । ସେ ଅଧ୍ୟାପନା କରୁଥିଲେ ମଧ୍ୟ, ଶ୍ରମିକମାନଙ୍କୁ ସମର୍ଥନ ଜଣାଇ ଗୋଟାଏ କାରଖାନା ନିକଟସ୍ଥ ଶ୍ରମିକ ବସ୍ତିରେ ସେ ଘରଭଡା ନେଇ ରହୁଥିଲେ । ଆମକୁ ଏକ ହୋଟେଲ୍‌କୁ ନୈଶ୍ୟ ଭୋଜନ ପାଇଁ ଡାକିଥିଲେ । ଆମେ ଗୋରା ନଥିବାରୁ, ସେଠାରେ ଆମକୁ ଖାଦ୍ୟ ପରଶିବାରେ ଅନେକ ଡେରି ହେଲା । ଫନ୍ସ ଏଥିରେ ଘୋର ପ୍ରତିବାଦ କରି ହୋଟେଲ ମ୍ୟାନେଜ୍‌ମେଣ୍ଟ ସହ କଳିତକରାଳ ଆରମ୍ଭ କରି ଦେଇଥିଲେ । ମୁଁ ଓ ବିଦ୍ୟା ସାଥୀରେ ଅଛୁ ଏବଂ ସେ ଏଥିପାଇଁ ଖୁବ୍ ସମ୍ବେଦନଶୀଳ ଥିଲେ । ଆମକୁ କେହି ଅପମାନିତ କରୁ, ସେ କେବେହେଲେ ଚାହୁଁ

ନଥିଲେ । ହୋଟେଲ୍‌ରେ ଆମର ଅବମାନନା କରାଯାଇଛି ବୋଲି ମୁଁ ପ୍ରଥମେ ଜାଣି ପାରିନଥିଲି । ଫନ୍‌ସ କହିଲେ ଯେ ପରିଚାରକ ଆମଠୁ ଆଗ ଅର୍ଡର ନେଇ ମଧ୍ୟ ଖାଦ୍ୟ ଅନ୍ୟକୁ ଆଗ ଦେଇଥିଲା ଓ ଆମକୁ ଏଡାଇ ଯାଇଥିଲା । ମର୍ମାହତ ହୋଇଥିବା ଫନ୍‌ସ ଆମକୁ ବାରମ୍ବାର କ୍ଷମା ମାଗିଥିଲେ ଓ ହଲାଣ୍ଡରେ କଳାଗୋରା ଭେଦଭାବ ଏବେ ମଧ୍ୟ ଗୋପନୀୟ ଭାବେ ରହିଛି ବୋଲି ସ୍ୱୀକାର କରୁଥିଲେ । ଫନ୍‌ସ ଜାଣିଥିଲେ ଯେ ଆମେ ବିଖ୍ୟାତ ଚିତ୍ରକର ଭାନ୍‌ଗଗ(Van Gogh)ଙ୍କ ପେଣ୍ଟିଙ୍ଗ୍‌କୁ ଭଲପାଉ ବୋଲି । ଗୋଟାଏ ଜାତୀୟ ଉଦ୍ୟାନ ଭିତରେ ଭାନ୍‌ଗଗ୍‌ଙ୍କ ଚିତ୍ରମାନଙ୍କର ଏକ ମ୍ୟୁଜିୟମ ଥାଏ । ସେ ତାଙ୍କର ସାଙ୍ଗଠାରୁ କାର୍ ମାଗି ଆମକୁ ବୁଲାଇବାକୁ ନେଇଥିଲେ । ଆମଷ୍ଟରଡ୍ୟାମ୍‌ରେ ଭାନ୍‌ଗଗ୍‌ଙ୍କ କେତେକ ଚିତ୍ର ରହିଛି । କିନ୍ତୁ ଏ ମ୍ୟୁଜିୟମରେ ସବୁଚିତ୍ର ରହିଛି । କେତୋଟି ମୂଳ ପେଣ୍ଟିଙ୍ଗ ଏବଂ ଅନେକ ନକଲ । ଜୀବନ ଓ ଯୌବନର ଯନ୍ତ୍ରଣାରେ ବିଦଗ୍ଧ ଭାନ୍‌ଗଗ୍‌ଙ୍କ ଚିତ୍ର ସବୁ ଆମ ଭିତରେ ଗଭୀର ରେଖାପାତ କରିଥିଲା । ମଣିଷ ପ୍ରସ୍ତୁତ ଜାତୀୟ ଉଦ୍ୟାନରେ ଆମକୁ ବୁଲାଇବାକୁ ଯାଇ ସେ କହିଥିଲେ ଯେ ହଲାଣ୍ଡରେ ଶିଳ୍ପ ଏତେ ବ୍ୟାପକ ହୋଇଛି ଯେ ପ୍ରଦୂଷଣର ମାତ୍ରା ଖୁବ୍ ଅଧିକ । ପାଣି, ପବନ, ବୃକ୍ଷଲତା ସବୁ ପ୍ରଦୂଷଣ ଦ୍ୱାରା ଭୀଷଣକ୍ଷତିଗ୍ରସ୍ତ । ହଲାଣ୍ଡବାସୀଙ୍କ ଅଭିଯୋଗ ଯେ ଜର୍ମାନୀରେ ଶିଳ୍ପାୟନ ଯୋଗୁଁ ତାଙ୍କ ଦେଶରେ ଏସିଡ୍ ରେନ୍ (Acid Rain) ହେଉଛି ଓ ସବୁକିଛି ଜଳିଯାଉଛି । ଫନ୍‌ସ ନିଜର ଗବେଷଣା ଦ୍ୱାରା ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଅନେକ ଗୋପନ ରହସ୍ୟ ଜନସାଧାରଣଙ୍କ ପାଖରେ ଉପସ୍ଥାପନା କରିଥିଲେ । ଏଥିପାଇଁ ଫନ୍‌ସଙ୍କୁ ବହୁ ସମସ୍ୟାର ସମ୍ମୁଖୀନ ହେବାକୁ ପଡିଥିଲା । ବ୍ୟକ୍ତିଗତ ଜୀବନର ନିର୍ଜନତା ତାଙ୍କୁ କଷ୍ଟଦାୟକ ଥିଲା । କିନ୍ତୁ ଭାରତରେ ସ୍ନେହ ଓ ବନ୍ଧୁତାର ଡୋରି ସେ ଖୁବ୍ ବାନ୍ଧିଥିଲେ । ତାଙ୍କର ଅଗଣିତ ଭାରତୀୟ ବନ୍ଧୁମାନଙ୍କ ଭିତରେ ଆମେ ଅତି ସହଜରେ ଯୋଡି ହୋଇଯାଉଥିଲୁ । କାଶୀପୁରରେ ମୂଲ୍ୟାଙ୍କନ ବେଳେ ଆମ କାର୍ଯ୍ୟକ୍ରମର ସଫଳତା ଦ୍ୱାରା ସେ ଖୁବ୍ ପ୍ରଭାବିତ ହୋଇଥିଲେ ଏବଂ ତାହାକୁ ସର୍ବତ୍ର ଉଲ୍ଲେଖ କରିବାକୁ ସେ ପଛଘୁଞ୍ଚା ଦେଇନଥିଲେ ।



## ୪୭

୧୯୮୫ ମସିହା ବେଳକୁ ଏକଥା ସ୍ପଷ୍ଟ ହୋଇଯାଇଥିଲା ଯେ କାଶୀପୁରରୁ ଆରମ୍ଭ କରିଥିବା ବିକାଶ କାର୍ଯ୍ୟକ୍ରମ ଏତେ ଶୀଘ୍ର ଶେଷ ହୋଇପାରିବ ନାହିଁ । ପାଞ୍ଚବର୍ଷ ଭିତରେ ଗୋଟାଏ ଅବହେଳିତ ଓ ଅପହଞ୍ଚ ଅଞ୍ଚଳର ଇତିହାସ ଓ ଭୂଗୋଳ ପରିବର୍ତ୍ତନ କରାଯାଇପାରିବ ନାହିଁ । ମୋର ଚିନ୍ତାଧାରାର ଦୁର୍ବଳତାରୁ ଅନେକ ଶୁଭେଚ୍ଛୁ ଉଦାହରଣ ଦେଇ ମୋତେ ସୂଚନା ଦେଇଥିଲେ । ସଂସ୍ଥା ଗଢିବା ସହଜ କିନ୍ତୁ ତାକୁ ଏକ କର୍ମଚଞ୍ଚଳ ଏବଂ ସମୟୋପଯୋଗୀ ଅନୁଷ୍ଠାନ ରୂପେ ବଞ୍ଚାଇ ରଖିବା କାଠିକର ପାଠ । ଅନେକ ଗାନ୍ଧୀବାଦୀ ସଂସ୍ଥାଙ୍କ ଦୁରବସ୍ଥା ଦେଖିଲେ ମନ ଭିତରେ ଅନେକ ପ୍ରଶ୍ନ ଉଠିଥାଏ । ବନାରସ ପାଖରେ ଥିବା ଏଇଭଳି ଏକ ସଂସ୍ଥାରେ ଆୟୋଜିତ ହୋଇଥିବା ଏକ କର୍ମଶାଳାରେ ମୋତେ ଭାଗ ନେବାକୁ ସୁଯୋଗ ମିଳିଥିଲା । ସେ ସମୟରେ ଖୁବ୍ ଲୋକପ୍ରିୟ ହୋଇଥିବା 'ବିକାଶ ଭାଇ'ବୋଲି ଜଣେ ଗାନ୍ଧୀବାଦୀ କର୍ମକର୍ତ୍ତା ବର୍ଷକୁ ଥରେ ଦେଶର ରଚନାତ୍ମକ କର୍ମୀଙ୍କ ଶିବିର ଆୟୋଜନ କରିଥାଆନ୍ତି । ଅନେକ ବୁଦ୍ଧିଜୀବୀ ମଧ୍ୟ ଆସନ୍ତି ଆଲୋଚନାରେ ଭାଗ ନେବାକୁ । ଦେଶରେ ଉଠିଥିବା ବିକାଶର ଗତି ଓ ଦିଗ ବିଷୟରେ ଚର୍ଚ୍ଚା ହୁଏ ଖୁବ୍ । 'ବିକାଶ ଭାଇ'ଙ୍କୁ ମୁଁ ତିଲୋନିଆ ଦିନରୁ ଜାଣିଥିଲି । ଗାନ୍ଧୀବାଦ ଓ ମାର୍କ୍ସବାଦକୁ ଫେଣ୍ଟାଫେଣ୍ଟି କରି ସେ ଅନେକ କଥା ଆଲୋଚନା କରିଥାଆନ୍ତି । ସେ ସମୟରେ ଅନେକ ଅନୁଦାନକାରୀ ସଂସ୍ଥାମାନଙ୍କର ସେ ପରାମର୍ଶଦାତା ଥାଆନ୍ତି । ଏଥିପାଇଁ ଅନେକ ସ୍ୱେଚ୍ଛାସେବୀ ସଂଗଠନ ତାଙ୍କ ପ୍ରତି ସମ୍ଭବତଃ ଆକୃଷ୍ଟ ହୋଇଥାଆନ୍ତି । ତାଙ୍କର ଶିବିରକୁ ସେ ମୋତେ ପ୍ରତିବର୍ଷ ଡାକନ୍ତି, ମୁଁ କିନ୍ତୁ ଯାଇପାରେ ନାହିଁ । ବନାରସ ବାଟ ଦେଇ ମୁଁ ଦିଲ୍ଲୀ ଅନେକଥର ଯାଇଥାଏ । ଅନ୍ତରଙ୍ଗ ବନ୍ଧୁ ଗୋପବନ୍ଧୁ ମଧ୍ୟ ସେଠାରେ ସବ୍ ଡିଭିଜନାଲ୍ ଅଫିସର ଭାବେ ଅଶୀ ମସିହାରେ ଯୋଗଦେଇ ମୋ ପାଖକୁ ଚିଠି ଲେଖିଥିଲେ ଓ ବାରଣାସୀର ପରିବେଶ ବର୍ଣ୍ଣନା କରିଥିଲେ । ମୁଁ ଆଗ୍ରହର ସହ ବିକାଶ ଭାଇଙ୍କ ଶିବିରରେ ଶିବିରାର୍ଥୀ ହୋଇଥିଲି । ବିରାଟକାୟ ଓ ବିସ୍ତୃତ ଆଶ୍ରମ ଏହା ଥିଲା । ବାରାଣସୀ ଠାରୁ ପ୍ରାୟ ୪୦କି.ମି. ଦୂରରେ । ଖୋଲା ଜାଗା । ପାଖରେ ରେଳଲାଇନ୍ ଓ ଦିନରାତି ଟ୍ରେନ୍ ସବୁ ଯିବା ଆସିବା କରୁଥାଏ । ଆଶ୍ରମ ଭିତରେ ଦୁଇ ତିନୋଟି ଫ୍ୟାକ୍ଟ୍ରି ଜରାଜୀର୍ଣ୍ଣ ଅବସ୍ଥାରେ ରହିଥାଏ । କୁଟୀର ଶିଳ୍ପ ଯେ ଏଠାରେ ଏକଦା ମୁଖ୍ୟ କାର୍ଯ୍ୟକ୍ରମ ଥିଲା, ସ୍ପଷ୍ଟ ବାରି ହେଉଥିଲା । ଅଳ୍ପ କେତେଜଣ ଏବେ ଆଶ୍ରମ ବାସିନ୍ଦା । ଗାନ୍ଧୀ ଆଦର୍ଶର କିଛି କିଛି ଛାପ ଦେଖିବାକୁ ମିଳୁଥିଲା । ଶିବିରକୁ ଶ୍ରୀ ପ୍ରଫୁଲ୍ଲ ବିଦୱାଇ ଭଳି ବୁଦ୍ଧିଜୀବୀ ଆସିଥିଲେ । ଜଣେ ଯୁବପୀଢିର ଚିନ୍ତାଶୀଳ ବ୍ୟକ୍ତି ସମସାମୟିକ

ରାଜନୀତି ଓ ଅର୍ଥନୀତି ଉପରେ ଖୁବ୍ ଗଭୀର ଆଲୋଚନା କରିଥିଲେ । ମୋତେ ଭଲ ଲାଗିଥିଲା ତାଙ୍କର ବିଶ୍ଳେଷଣ । ଅନେକ ଚିହ୍ନା ପରିଚିତ ବନ୍ଧୁ ଏ କର୍ମଶାଳାରେ ଭାଗ ନେଇଥିଲେ । ମୁଁ ସେଠାରେ ରାତ୍ରୀଯାପନ କରିଥିଲି ଓ ତା'ପର ଦିନ ସକାଳୁ ଆଶ୍ରମର ପାଖକୁ ଲାଗି ଏକ ବସ୍ତିକୁ ପ୍ରାତଃ ଭ୍ରମଣରେ ଯାଇଥିଲି । ଏକ ଛୋଟ ଚ'ଦୋକାନରେ ଚ' ପିଇବାବେଳେ ଏ ଆଶ୍ରମର ଇତିହାସ ଓ ପ୍ରଭାବ ବିଷୟରେ ଲୋକଙ୍କଠାରୁ ଜାଣିବାକୁ ଚାହିଁଥିଲି । ବିଶେଷ ଭଲ ସୂଚନା ମିଳିନଥିଲା । ଗାନ୍ଧୀବାଦୀ ଚିନ୍ତାଧାରାର କିପରି ବ୍ୟତିକ୍ରମ ହୋଇଛି ଓ ଆଶ୍ରମଟି ସ୍ଥାନୀୟ ଲୋକଙ୍କ ଠାରୁ କିପରି ଦୂରେଇ ଯାଇଛି ତାହା ଶୁଣିବାକୁ ମିଳିଥିଲା । ବ୍ୟଭିଚାର ଓ ଦୁର୍ନୀତିର ଉଦାହରଣ ଦେବାକୁ କିଛି ଲୋକ ମଧ୍ୟ ଦ୍ୱିଧା ପ୍ରକାଶ କରିନଥିଲେ । ସେଥିରେ କେତେ ସତ କେତେ ମିଛ ଅଛି, ତାହା ଜାଣିବାକୁ ମୋ ପାଖରେ ସୁଯୋଗ ନଥିଲା । କିନ୍ତୁ ଗୋଟିଏ କଥା ମୋତେ ପ୍ରତୀୟମାନ ହୋଇଥିଲା । ସଂସ୍ଥାମାନେ ସବୁ କିଛିବର୍ଷ ସକ୍ରିୟ ହୋଇ କାମରେ ଲାଗି ଥାଆନ୍ତି ଓ ଧୀରେ ଧୀରେ ମଉଳି ଯାଆନ୍ତି ବା ସ୍ୱାର୍ଥନ୍ୱେଷୀ ହୋଇଯାଆନ୍ତି ।

କାଶୀପୁରରେ ଆମର ସଂସ୍ଥା ବିଧିବଦ୍ଧ ଭାବେ ଆରମ୍ଭ ହେବା ପରେ ପରେ ଆମକୁ ଦୁଇଟି ବିଷୟରେ ନିଷ୍ପତ୍ତି ନେବାକୁ ବାଧ କରାଯାଇଥିଲା । ତିଲୋନିଆରୁ ବଙ୍କର ରାୟ ତାଗିଦ୍ କରୁଥିଲେ ଯେ ସମାଜକାର୍ଯ୍ୟ ଏବଂ ଅନୁସନ୍ଧାନ କାର୍ଯ୍ୟ ବା ଝଡଜଉର ଶାଖା ହିସାବରେ ଆମେ ଯେଉଁ ପ୍ରକଳ୍ପ ଆରମ୍ଭ କରିଛୁ ତାହା ବନ୍ଦକରି ସ୍ଥାନୀୟ ସଂସ୍ଥା ଭାବେ ପଞ୍ଜୀକରଣ କରିବାକୁ ହେବ । ଦ୍ୱିତୀୟ ବିଷୟଟି ମଧ୍ୟ ଆମ ପାଇଁ ଅନେକ ପ୍ରଶ୍ନ ଉଠାଇଥିଲା । ଯଦି ଆମ ସଂସ୍ଥା ଓହରିଯାଇ ଦୀର୍ଘ ଦିନ ଧରି କାମ କରିବ, ତାହାହେଲେ ଆମର ଘରଦ୍ୱାର, କର୍ମ ନିୟୋଜନ, ପରିସର ଓ ପରିବେଶ ଆଦି ବିଷୟରେ ନିଶ୍ଚିତ ଓ ଦୃଢ଼ ନିଷ୍ପତ୍ତି ନେବାକୁ ହେବ । ୧୯୮୫ ମସିହା ବେଳକୁ ଆମର ପ୍ରାୟ ଦଶ ଏକର ଅଣଆଦିବାସୀ ଜମି କିଣା ସରିଥାଏ । ଏହା ପତିତ ଜମି । ଦିନେ ଯେ ଏଠାରେ ଜଙ୍ଗଲ ଥିଲା ତାହାର ସ୍ମାରକୀ ଭାବେ ତିନୋଟି ଶାଳଗଛ ଓ ଗୋଟିଏ ବାହାଡା ଗଛ ଥାଏ । ଟିକିଏ ଦୂରରେ ଦୁଇଟି ଶିମୂଳି ଗଛ ସୂର୍ଯ୍ୟାସ୍ତ ବେଳର ଶୋଭା ବଢାଉଥାଏ । ବର୍ଷାଦିନେ ଅନାବନା ଘାସ ଉଠେ । ଚରିଆଡେ ଉଇହୁଙ୍କା । ଲୋକେ 'ଲୁଣବନ୍ଧ' ବୋଲି ଆମ ଜାଗାକୁ କହୁଥାଆନ୍ତି । କାରଣ ମୃତ୍ତିକା କ୍ଷୟ ହୋଇଯିବାରୁ ଏଠାରେ ଫସଲ କିଛି ଉତ୍ପାଦନ ହୁଏ ନାହିଁ । ଜମି ମାଲିକମାନେ ଏଇଥିପାଇଁ ଆମକୁ ଶସ୍ତାରେ ଏ ଜମି ବିକ୍ରୟ କରିଦେଲେ ବୋଧେ । ଲଣ୍ଡା ପଡିଆରେ ଆମେ ଗଛ ଲଗାଇବାକୁ ଦୃଢ଼ ନିଷ୍ପତ୍ତି ନେଇଥିଲୁ । ଆଶ୍ରମର ପରିବେଶ ସୃଷ୍ଟି କରିବା ଆମର ଲକ୍ଷ୍ୟ ଥାଏ । ଆମେ ବିଭିନ୍ନ ବ୍ୟକ୍ତିଙ୍କୁ ପରାମର୍ଶ କରିଲୁ । ରାୟଗଡ଼ାର ଉଦ୍ୟାନ୍‌ବିତ୍ ଶ୍ରୀ ପଟ୍ଟନାୟକ ଆମକୁ ଆମ୍ବ ଓ ଲିଚୁ ଗଛ ଲଗାଇବାକୁ କହିଥିଲେ କାରଣ କାଶୀପୁର ଜଳବାୟୁ ଖୁବ୍ ଅନୁକୂଳ ଥାଏ । 'ଚିଙ୍ଗୁଡିଯୋଡ' ଫାର୍ମ ବୋଲି ହର୍ଟିକଲ୍‌ଚର ଫାର୍ମରେ ବିଭିନ୍ନ କିସମର ଆମ୍ବ ଓ ଲିଚୁ ଚାରା ମିଳୁଥାଏ । ଆମ୍ବ, ଲିଚୁ କେମିତି ଧାଡି ଧାଡି କରି ଲଗାଯିବ ତାହା ଶିଖାଇବା ପାଇଁ ଜଣେ ଫିଲ୍ଡ ୱାର୍କର ମଧ୍ୟ ଆମ ସହ ଗୋଟାଏ ସପ୍ତାହ ରହିଥିଲେ । ଗୋରଖପୁରରେ ଶ୍ରୀ ଦ୍ୱିବେଦୀ

ବୋଲି ଜଣେ ବନୀକରଣ ରେଞ୍ଜର୍ ରହୁଥାଆନ୍ତି । କାଶୀପୁରରୁ ଷୋହଳ କିଲୋମିଟର ଦୂରତା । ସେ ଅନେକ ସମୟରେ ଆମ ପାଖକୁ ଆସନ୍ତି ଓ ବନୀକରଣ କିପରି କରାଯାଇ ପାରିବ, ଆମକୁ ପରାମର୍ଶ ଦେଇଥାନ୍ତି । ଆମେ ଚାହୁଁଥିଲୁ ଯେ ଏପରି ବୃକ୍ଷରୋପଣ ହେବା ଆବଶ୍ୟକ ଯାହା ଶୀଘ୍ର ବଢ଼ିବ ଓ ଲଣ୍ଡା ପଡିଆମାନଙ୍କର ଶୋଭା ବଢ଼ାଇବ । ଗାଈ ଗୋରୁ ଗଛପତ୍ର ନଖାଇବା ପାଇଁ ସେ ମହାଲିମ୍ବ, ଆକାଶିଆ, ନୀଳଗିରି ଆଦି ଗଛ ଲଗାଇବାକୁ କହିଥିଲେ । ଆମେ ଆକାଶିଆ ଓ ନୀଳଗିରି ଗଛ ଲଗାଇବା ବିରୋଧରେ ପ୍ରଚାର କରୁଥାଉ । କିନ୍ତୁ ସେ ବିପରୀତ ଯୁକ୍ତି କରି ଥାଆନ୍ତି ସବୁବେଳେ । ଡଙ୍ଗରିଆ କନ୍ଧ ପ୍ରକଳ୍ପରେ ଡକ୍ଟର ଅନନ୍ତ ସାହୁଙ୍କ ସହ ବେଳେବେଳେ ଦେଖା ହୁଏ । ସେ ନିୟମଗିରି ଅଞ୍ଚଳରେ ପଣସ ସପୁରୀ ଚାଷକୁ ପ୍ରୋତ୍ସାହନା ଦେଇ ଡଙ୍ଗରିଆ କନ୍ଧମାନଙ୍କର ଆର୍ଥିକ ବିକାଶରେ ଅନେକ ସଫଳତା ଆଣି ଥାଆନ୍ତି । ଆମେ ତାଙ୍କଠାରୁ ପଣସ ମଞ୍ଜି ଓ ସପୁରୀ ଚାରା ଆଣି ଲଗାଇଲୁ । ହଳଦିଆ ଗୋଲାପ ଫୁଲ ଓ ଲାଲ୍ ଡାଲିଆ ଫୁଲ ମଧ୍ୟ ଲଗାଗଲା ଓ ବର୍ଷସାରା ଏ ଫୁଲ ଫୁଟିଲା । ୧୯୮୩ ଓ ୧୯୮୪ ମସିହା ଡିସେମ୍ବର ମାସରେ ବରଫ ପଡିଲା ଭଳି ପରିସ୍ଥିତି ସୃଷ୍ଟି ହୋଇଥିଲା ଓ ଆମେ ଲଗାଇଥିବା ସବୁ ଗଛ ମରିଯାଇଥିଲେ । ଆମେ ଖୁବ୍ ନିରାଶ ହୋଇଥିଲୁ । କେତେ ଶହ ଆମ୍ବ ଓ ଲିଚୁ ଗଛ, ପଣସ ଏବଂ କାଜୁ ଗଛ ସବୁ ନଷ୍ଟ ହୋଇଗଲା ପରେ ପୁଣି ଆମକୁ ଆଉଥରେ ଗଛ ସବୁ ଲଗାଇବାକୁ ପଡିଥିଲା । ଅନେକ ଭଲ କିସମର ଗଛ ଆମେ ହରାଇ ବସିଲୁ । ଯେଉଁ ତିନୋଟି ଶାଳ ଗଛ ବଞ୍ଚିଥିଲା, ତାହା ଚାରିପାଖେ ଅନେକ ଶାଳ ଗଛ ଅଙ୍କୁରିତ ହୋଇଥିଲା । ଚିତ୍ତଭାଇ ଶାନ୍ତି ନିକେତନର ଶାଳବୀଥିର କଥା ଆମକୁ କେତେଥର କହିଥିଲେ । ଆମେ ସେସବୁ ଶାଳ ଗଛକୁ ସଂରକ୍ଷିତ କରି ଜଙ୍ଗଲ ବଢାଇବାକୁ ନିଷ୍ପତ୍ତି ନେଇଥିଲୁ । ମୃତ୍ତିକା ସଂରକ୍ଷଣ ବିଭାଗର ଶ୍ରୀ ବିଶ୍ୱାଳ ଆମକୁ ସିଲଭର ଓକ୍ ଏବଂ ଚମ୍ପାଗଛର ଚାରା ଦେଇଥିଲେ । ଆମେ ଆମ ଘର ଚାରିପାଖରେ ଚମ୍ପାଗଛ ଲଗାଇବାକୁ ଚାହିଁଥିଲୁ । ବହୁତ ଜଗାରଖା ପରେ ଧୀରେ ଧୀରେ ଆମ ଘର ଚାରିପାଖରେ ଅନେକ କିସମର ଗଛ ବଢ଼ିଲା ଓ ୧୯୮୫ ମସିହା ବେଳକୁ ଜମି ଆଉ ଲଣ୍ଡା ଦେଖାଗଲା ନାହିଁ । ପନିପରିବା ଚାଷ ମଧ୍ୟ କୂଅ ପାଣିରେ କରାଗଲା । କେତୋଟି କଦଳୀ ଗଛ ଲଗାଗଲା । କୃଷ୍ଣଚୂଡା ଓ ଜକରନ୍ଦା ଗଛ ମଧ୍ୟ ମୁଁ ଲଗାଇବାକୁ ଚାହିଁଥିଲି । ଆମେ ଭାବୁଥିଲୁ ଯେ ଯଦି ଆମେ ଗଛ ନଲଗାଉ ସଫଳତା ଦେଖାଇ ପାରିବୁ ନାହିଁ, ତେବେ ଗାଁରେ ଆଦିବାସୀମାନେ ଗଛ ନକାଟି ଗଛ ଲଗାଇବାକୁ ପ୍ରେରଣା ପାଇବେ ନାହିଁ । ତେଣୁ ବୃକ୍ଷରୋପଣ ଆମର ଏକ ସ୍ଲୋଗାନ୍ ହୋଇଯାଇଥିଲା । ହର୍ଟିକଲ୍‌ଚର, ମୃତ୍ତିକା ସଂରକ୍ଷଣ, ବନୀକରଣ ବିଭାଗ ସହ ଯୋଗସୂତ୍ର ରକ୍ଷା କରି ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଚାରା ଆମେ କାଶୀପୁରର ସମସ୍ତ ଗାଁ ମାନଙ୍କରେ ବାଣ୍ଟିବାକୁ ଉଦ୍ୟମ କରିଥିଲୁ । ଲୋକ ଗୀତ ଓ କଣ୍ଢେଇନାଚର ମାଧ୍ୟମକୁ ମଧ୍ୟ ବ୍ୟବହାର କରିଥିଲୁ । ~

ଆମ ପ୍ରକଳ୍ପର ସ୍ୱତନ୍ତ୍ର ପରିଚୟ ରହୁ ବୋଲି ଏକ ନୂତନ ସଂସ୍ଥା ପଞ୍ଜୀକରଣ କରିବାକୁ ମୁଁ ଉଦ୍ୟମ କରିଥିଲି । 'ବନାନୀ' ନାଁଟି ଖୁବ୍ ଭଲ ଲାଗିଲା । ଅନେକ ବନ୍ଧୁ ପଦପଦବୀରେ

ଥିଲେ ଓ ସେମାନଙ୍କୁ 'ବନାନୀ'ର କାର୍ଯ୍ୟକାରୀ ପରିଷଦରେ ସଦସ୍ୟ ହେବାକୁ ମୁଁ ଅନୁରୋଧ କରିଥିଲି । ସେମାନେ ସରକାରଙ୍କ ବିନା ଅନୁମତିରେ ସଦସ୍ୟ ହୋଇପାରିବେ ନାହିଁ ବୋଲି ସୂଚନା ଦେଇଥିଲେ । ଚିତ୍ତଭାଇ ଓ ଡକ୍ଟର ସ୍ୱାଧୀନ ପଟ୍ଟନାୟକଙ୍କୁ ଆମ ସଂସ୍ଥାର ଗଭର୍ଣ୍ଣିଂବଡିରେ ରହିବାକୁ ମଧ୍ୟ ମୁଁ ପ୍ରସ୍ତାବ ଦେଇଥିଲି । ଚିତ୍ତଭାଇଙ୍କ ବ୍ୟତୀତ ଅନ୍ୟ ସମସ୍ତେ କେମିତି କେମିତି ମୋର ପ୍ରସ୍ତାବକୁ ଗ୍ରହଣ କରୁନଥିଲେ । ସେମାନଙ୍କର ଯୁକ୍ତିଥିଲା ଯେ ଗଭର୍ଣ୍ଣିଂବଡିରେ ନରହିଲେ ସେମାନେ ଆମକୁ ବେଶୀ ସାହାଯ୍ୟ କରିପାରିବେ । କେତେକ ଅଣଓଡିଆ ବନ୍ଧୁ 'ବନାନୀ' ଇଂରାଜୀରେ 'ବନାନା' ବା କଦଳୀ ବୋଲି ଶୁଭୁଛି ବୋଲି କହି ଥଟ୍ଟା ମଧ୍ୟ କରିଥିଲେ । ବିଭିନ୍ନ କାରଣ ହେତୁ 'ବନାନୀ'ର ପଞ୍ଜୀକରଣ ଆଗେଇ ପାରିନଥିଲା । କାଶୀପୁରରୁ ଯାଇ ସବୁ ବନ୍ଧୁ ଓ ଶୁଭେଚ୍ଛୁମାନଙ୍କୁ ପ୍ରବର୍ତ୍ତାଇବା ଖୁବ୍ କଷ୍ଟକର ବ୍ୟାପାର ଥିଲା । ତଥାପି ମୁଁ ସ୍ୱତନ୍ତ୍ର ସଂସ୍ଥା ଗଠନ ପାଇଁ ଅଣ୍ଟା ଭିଡିଥିଲି । ଆମର ସଂସ୍ଥାରେ କର୍ମୀମାନଙ୍କର ସଂଖ୍ୟା ବେଶ୍ ବଢିବାରେ ଲାଗିଲା । ସେମାନଙ୍କୁ ରଖାଇବା ଓ ଭଲମନ୍ଦ ବୁଝିବାରେ ଅନେକ ସମୟ କଟୁଥିଲା । ସେମାନଙ୍କର ବୌଦ୍ଧିକ ଓ ଆଦର୍ଶବାଦୀ ସ୍ଥିତି କେମିତି ମଜ୍‌ଭୁତ୍ ହେବ ଓ ଅଙ୍ଗୀକାରବଦ୍ଧତା ବଢିବ ମୁଁ ଓ ବିଦ୍ୟା ଖୁବ୍ ପରିଶ୍ରମ କରୁଥିଲୁ । ସନ୍ଧ୍ୟାରେ ଲଣ୍ଠନ ଆଲୁଅରେ ଆମର ଚର୍ଚ୍ଚା ହେଉଥିଲା, ସକାଳୁ ସମସ୍ତେ ଶ୍ରମଦାନ କରୁଥିଲୁ । ଗାନ୍ଧୀ ଆଶ୍ରମ ଭଳି କେହି କେହି ସକାଳେ ଓ ସନ୍ଧ୍ୟାରେ ଭଜନ ପ୍ରାର୍ଥନା କରିବାର ପ୍ରସ୍ତାବ ମଧ୍ୟ ରଖିଥିଲେ । କିନ୍ତୁ ଏଇଭଳି ଭଜନ ପ୍ରାର୍ଥନା ଓ ଆଶ୍ରମର ଅଧ୍ୟାତ୍ମିକ ପରିବେଶ ଆମର ମନ ଭିତରର କଳୁଷିତ ଓ ଜଟିଳତା ଯେ ନିଶ୍ଚିତ ଭାବେ ଦୂର କରିବ ତାହାର କୌଣସି ପ୍ରମାଣ ମୋତେ ଦେଖିଥିବା ଅନୁଷ୍ଠାନମାନଙ୍କରୁ ମିଳିନଥିଲା । ସମସ୍ତଙ୍କ ଭିତରେ ଭଲ ବୁଝାମଣା, ସ୍ନେହ, ସମ୍ପର୍କ ଓ ସମତାର ଭାବ କିପରି ଆମ ଭିତରେ ବଜାୟ ରହିବ ମୁଁ ଓ ବିଦ୍ୟା ନିରନ୍ତର ଚେଷ୍ଟା କରୁଥିଲୁ । ଗୋଷ୍ଠୀ ବିବାଦ ଓ ଆଞ୍ଚଳିକ ମନୋଭାବରୁ କିପରି କର୍ମୀମାନେ ଉର୍ଦ୍ଧ୍ୱକୁ ଯାଇପାରିବେ ଆମେ ବାରମ୍ବାର ଆଲୋଚନା କରୁଥିଲୁ ।



## ୪୮

ଗ୍ରୀଷ୍ମ ଋତୁରେ ସବୁଆଡେ ଅସହ୍ୟ ଉତ୍ତାପ ବଢୁଥିବା ବେଳେ, କାଶୀପୁରରେ ତାହାର ପ୍ରଭାବ ପଡିନଥାଏ । ଅପ୍ରେଲ୍ ଓ ମେ ମାସରେ ଦିନେ ଦୁଇଦିନ ଛାଡି ସନ୍ଧ୍ୟାରେ ମେଘ ଘୋଟି ଆସେ । ପ୍ରବଳ ପବନ ବୋହିଥାଏ । ଘଡଘଡି ଓ ବଜ୍ରପାତ ମଧ୍ୟ ହୁଏ । ଜୋର୍‌ରେ ଅସରାଏ ବର୍ଷା ହୋଇଗଲେ । ଉତ୍ତାପ ଅନେକ ହ୍ରାସ ହୋଇଯାଏ । ସେଦିନ ରାତିରେ ଶୋଇଲାବେଳେ କମ୍ବଳ ଘୋଡାଇବାକୁ ପଡିଥାଏ । କୋରାପୁଟ ଗେଜେଟିୟରରେ କାଶୀପୁର ହାରାହାରି ସର୍ବାଧିକ ତାପ ୨୦ଡିଗ୍ରୀ ସେଣ୍ଟିଗ୍ରେଡ ଓ ହାରାହାରି ସର୍ବନିମ୍ନ ତାପ ୧୬ଡିଗ୍ରୀ ସେଣ୍ଟିଗ୍ରେଡ ବୋଲି ଉଲ୍ଲେଖ କରାଯାଇଛି । କାଶୀପୁରରେ ଏକଦା ଘଞ୍ଚ ଜଙ୍ଗଲ ଥିଲା । ଛଅମାସ ବର୍ଷା ଓ ଛଅମାସ ଶୀତ ହୁଏ ବୋଲି ବୟସ୍କ ଲୋକମାନେ ମନେ ପକାନ୍ତି । ଏବେ ତାପମାତ୍ରାରେ ପରିବର୍ତ୍ତନ ହୋଇଛି ବୋଲି ଅନେକ ଅନୁଭବ କରୁଛନ୍ତି । କାଶୀପୁରରେ ବିଜୁଳିଶକ୍ତି ନଥାଏ । ତଥାପି ପଙ୍ଖାର ଆବଶ୍ୟକତା କେହି ଅନୁଭବ ମଧ୍ୟ କରନ୍ତି ନାହିଁ । ଜଙ୍ଗଲ ଧ୍ୱଂସ ପାଇଗଲାଣି ଏବେ ତଥାପି ୧୯୮୫ ମସିହାରେ ଖରାଦିନର ତାପମାତ୍ରା ବେଶ୍ ମୃଦୁ ଥାଏ । ରାୟଗଡ଼ା ଓ କାଶୀପୁର ଭିତରେ ପାଞ୍ଚ ସାତ ଡିଗ୍ରୀ ତାପମାନର ଫରକ ଥାଏ । କାଶୀପୁର ଏକ ହିଲ୍‌ଷ୍ଟେସନ୍‌ର ଶୋଭା ବର୍ଦ୍ଧନ କରିଥାଏ । ବର୍ଷା ଛାଡିବା ପରେ ଯେତେବେଳେ ସନ୍ଧ୍ୟା ନଇଁ ଆସେ ଓ ନିର୍ମେଘ ଆକାଶରେ ତାରାମାନେ ଚକ୍ ଚକ୍ କରନ୍ତି, ସେତେବେଳେ ମୁଁ ଆମ ଘର ଅଗଣାରେ ଚୌକିଟିଏ ପକାଇ ବସିପଡେ । କୃଷ୍ଣପକ୍ଷର ଜହ୍ନ ଶାଶୁବହୂମାଳୀ ପାହାଡ ସେପାଖରୁ ଦେଖାଦେବାକୁ କିଛି ସମୟ ଲାଗିଯାଏ । ଏଇ ସମୟରେ ମୁଁ ମୋର ଅସ୍ତିତ୍ୱ ଓ ବିଚାରଧାରାକୁ ଅତି ଅନ୍ତରଙ୍ଗତାର ସହ ଦେଖିଥାଏ । ଗୋଟାଏ ଗଭୀର ଅର୍ନ୍ତଦୃଷ୍ଟି ଭିତରେ ମୁଁ ଲୀନ ହୋଇଯାଏ ।

ଏଭଳି ସ୍ଥାନରେ ଜୀବନଯୁଦ୍ଧରେ ସଂଗ୍ରାମରତ ଆଦିବାସୀଙ୍କ ଗହଣରେ ରହି କେବେହେଲେ ଜଣେ ନୈରାଶ୍ୟବାଦୀ ହେବ ନାହିଁ । ମନଭିତରେ ଅନେକ ଦ୍ୱନ୍ଦ୍ୱ, ଅନେକ ପ୍ରଶ୍ନ । କିନ୍ତୁ ଆଶାର ଝଲକ ସବୁବେଳେ ଦେଖାଦିଏ ଏଠାରେ । ପ୍ରତିବର୍ଷ ଝାଡାବାନ୍ତିରେ କେଉଁ ଗାଁରେ କେତୋଟି ପରିବାର ନିଶ୍ଚିହ୍ନ ହୋଇଯାଉଛନ୍ତି । ପେଟ ବିକଳରେ କୁଲି ଜଗିବା ପାଇଁ ବା ରିକ୍ସା ଟାଣିବା ପାଇଁ କେତେ ପରିବାର ରାୟଗଡ଼ା ଜେ.କେ.ପୁର ଆଡକୁ ଯାଉଛନ୍ତି । ଆଉ କେତେକ ହଳିଆ ଗୋତି ହେବାକୁ ବାଧ୍ୟ ହେଉଛନ୍ତି । ତଥାପି ଜୀବନର ଏକ ଉଲ୍ଲାସ ଅଛି । ପ୍ରଥମ ବର୍ଷାରେ ଡଙ୍ଗର ଚାଷ ଆରମ୍ଭ ହେବ । ଭଟା ଜମିରେ ହଳ କରିବାକୁ ହେବ । ଧାନ, ମାଣ୍ଡିଆ, କାଙ୍ଗୁ, କୋଶଲା, ଅଳସୀ, କାନ୍ଦୁଲର ବିହନ ସାଇତି କରି ରଖାଯାଇଛି । ତାକୁ ଖରାରେ ଶୁଖାଇ ବୁଣିବାକୁ ହେବ । ଅଳସୀ ଡେରିରେ ପଛ ବର୍ଷାରେ ହୁଏ । କିନ୍ତୁ

କାନ୍ଦୁଲ ଆଗରେ ଲଗାଇବାକୁ ହେବ, ପ୍ରଥମ ବର୍ଷାରେ । କାଙ୍ଗୁ, କୋଶଳା ସହ ଝୋଲାରେ ବି ଧାନ ବୁଣିବାକୁ ହେବ । ବଡ ବର୍ଷା ଆସିବା ପୂର୍ବରୁ ସେ ସବୁ ଗଛା ହୋଇ ଇଞ୍ଚେ ଇଞ୍ଚେ ନହେଲେ ବଢି ପାଣିରେ ଧୋଇ ହୋଇଯିବ ।

କାଶୀପୁରରେ ଖରାଦିନେ ରାତିର ଆକାଶକୁ ଚାହିଁବା ଓ ତାରାମାନଙ୍କ ସହ ଏକ ନୀରବ ସଂଳାପ କରିବା ମୋ ପାଇଁ ଏକ ଭାବାବେଗ ସୃଷ୍ଟି କରିଥାଏ । କେଜାଣି କାହିଁକି ଅନେକ ବର୍ଷରୁ ଏଇଭଳି ଉଜାଗର ରହିବାକୁ ବେଶୀ ପସନ୍ଦ କରିଥାଏ । ରାଜସ୍ଥାନର ତିଲୋନିଆରେ ଅନେକ ରାତି ଛାତ ଉପରେ ଶୋଇ ଶୋଇ ମୁଁ ଲକ୍ଷ୍ୟ କରିଥାଏ ଯେ ତାରାମାନଙ୍କୁ କେବଳ ଚିହ୍ନିବା ଯଥେଷ୍ଟ ନୁହେଁ । ସେମାନଙ୍କ ସହ କଥା କହିବାକୁ ବି ମନଡାକେ । ମରୁଭୂମିରେ ତାରାମାନଙ୍କୁ ଭଲପାଇ ଅନେକ ସାହିତ୍ୟ ସୃଷ୍ଟି ହୋଇଛି । ମୋର ପସନ୍ଦର ବହି ଦୁଇଟି ହେଲା 'ଏକ୍‌ସୁପେରୀ'ଙ୍କ ଉଇଣ୍ଡ, ସ୍ୟାଣ୍ଡ ଆଣ୍ଡ ଷ୍ଟାର୍‌ସ୍ (Wind, Sand and Stars) ଏବଂ ଟି.ଇ. ଲରେନ୍‌ସଙ୍କ ସେଭେନ୍ ପିଲାରସ୍ ଅଫ ଉଇସ୍‌ଡମ୍ (Seven Pillars of Wisdom) । ଏକ୍‌ସୁପେରୀ ଥିଲେ ପାଇଲଟ୍ । ମରୁଭୂମିରେ ଉଡାଜାହାଜ ଚଳାଉଥିବା ବେଳେ ସେ ମନ୍ତ୍ରମୁଗ୍ଧ ହୋଇ ଯାଉଥିଲେ ତାରାମାନଙ୍କୁ ଦେଖି ଦେଖି । ସେ ଯାହା କିଛି ଅନୁଭବ କରୁଥିଲେ ତାହାକୁ ଲେଖୁଥିଲେ ଆତ୍ମଲିପି ଭଳି । ସେ କହୁଥିଲେ ଯେ ନକ୍ଷତ୍ରମାନଙ୍କ ପାଖରୁ ପ୍ରାଣର ଉଚ୍ଛ୍ୱାସ ପବନଭଳି ବୋହି ଆସେ ଆଉ ପ୍ରବେଶକରେ ଆମର ବାଲୁକାରେ ଗଢ଼ା ଭୌତିକ ଶରୀରରେ । ଜୀବନ ନୂଆ ହୋଇ ଆରମ୍ଭ ହୁଏ । ପବନ, ବାଲି ଓ ତାରାମାନଙ୍କର ସମ୍ବନ୍ଧ ଏଇଭଳି ନୁହେଁ ତ ଆଉ କ'ଣ ? ଟି.ଇ. ଲରେନ୍‌ସ ଥିଲେ ଲରେନ୍‌ସ ଅଫ ଆରବିୟା । ଅର୍ଥାତ୍ ଅସଂଗଠିତ ଆରବବାସୀଙ୍କୁ ଏକାଠି କରି ସେ ଅତ୍ୟାଚାରୀ ତୁର୍କୀମାନଙ୍କ ବିରୁଦ୍ଧରେ ସଂଗ୍ରାମର ନେତୃତ୍ୱ ନେଇଥିଲେ । ଦିନସାରା ଯୁଦ୍ଧ ଓ ହିଂସା । ରାତ୍ରିରେ ସମସ୍ତେ ଥକା ମେଣ୍ଟାଇବାକୁ ଘୋର ନିଦରେ ଶୋଇ ପଡିଥିବା ବେଳେ ଲରେନ୍‌ସ ଏକ ଅଭୂତପୂର୍ବ ଚେତନାରେ ଉଦ୍‌ବେଳିତ ହୋଇ ଲେଖି ପକାଇଥିଲେ ନିଜର ମନର କଥା । ଉପରେ ମୁକ୍ତ ଆକାଶ ଓ ଅଗଣିତ ତାରା । ସେ ଅଭିନବ ପ୍ରେରଣା ପାଉଥିଲେ ଏମାନଙ୍କଠାରୁ । କାହିଁ ଏକ୍‌ସୁପେରୀ ଓ ଲରେନ୍‌ସ, କାହିଁ.... ? ମୁଁ ପ୍ରକୃତିସ୍ଥ ହୁଏ ଅଚାନକ ।

କାଶୀପୁରରେ ଭାବାବେଗ ଅବଶ୍ୟ ଆମ ସମସ୍ତଙ୍କୁ ଗ୍ରାସ କରିଥାଏ । କିନ୍ତୁ ଦୁଇପଦ ଲେଖିବାକୁ ଭାଷା ବା ନିଜକୁ ପ୍ରକାଶ କିରବାର ସାହସିକତା ସହଜରେ ଆସିନଥାଏ । ସଂସ୍ଥା ଚଳାଇବାକୁ ଗୋଟାଏ ସକ୍ଷମତାର ଆବଶ୍ୟକତା ଥାଏ । ପ୍ରଥମ କାର୍ଯ୍ୟକ୍ରମର ପରିକଳ୍ପନା କରିବାକୁ ହେବ । ତାହା କିପରି ରୂପାୟନ କରିବାକୁ ହେବ ତାହାର ନକ୍‌ସା ଦେବାକୁ ହେବ । ଆର୍ଥିକ ସହାୟତା ପାଇଁ ଅଟକଳ କରିବାକୁ ହେବ । ଲାଭକ୍ଷତିର ହିସାବ ମଧ୍ୟ ଆଲୋଚନା କରିବାକୁ ହେବ । ରିପୋର୍ଟ ଲେଖିବାକୁ ହେବ । ଉତ୍ତରଦାୟିତ୍ୱକୁ ସ୍ପଷ୍ଟ କରିବାକୁ ହେବ । ମୋର 'କଣ୍ଟେସା' ପୋର୍ଟେବଲ ଟାଇପ୍‌ରାଇଟରଟିକୁ ମୁଁ ଭୁଲିପାରେ ନାହିଁ ।

ଗୋଟାଏ ବଡ ଟ୍ରଙ୍କ ଉପରେ ଟାଇପ୍ ରାଇଟର୍ ଥାଏ । ଦୁଇପାଖରେ ଦୁଇଟି ଲଣ୍ଠନ ଆଲୁଅ । ମୁଁ ଭାବାସକ୍ତ ଦୁନିଆରୁ ନିଜକୁ ହଟାଇ ଆଣି ରାତ୍ରିର ଅନେକ ସମୟ ପର୍ଯ୍ୟନ୍ତ ଟାଇପ୍ କରିବାରେ ଲାଗିଯାଏ । ମୋର ସହଯୋଗୀ ସାଥୀମାନେ ଅନେକ ଆଗରୁ ଶୋଇ ପଡିଥାଆନ୍ତି । ମୁଁ କିନ୍ତୁ ଶୋଇପାରେ ନାହିଁ । ବିଦ୍ୟା ମଧ ଶୁଅନ୍ତି ନାହିଁ । ଟାଇପ୍ କରିବାକୁ ଆଗ୍ରହ ନଲାଗିଲେ ଆମେ ଦୁହେଁ ବାହାରକୁ ଆସି ପୁଣି ତାରାମାନଙ୍କ ଗହଣରେ ବିଚରଣ କରିବାକୁ ବାହରି ପଡୁ । କାଶୀପୁରର ଜୀବନଟା ଏଇଭଳି କାବ୍ୟମୟ ପରିବେଶ ଓ ଗଦ୍ୟମୟ ପ୍ରକଳ୍ପ ପରିଚାଳନା ଭିତରେ ଭାଗ ଭାଗ ହୋଇଯାଏ । ଦିନ ପରେ ଦିନ, ରାତି ପରେ ରାତି ଏମିତି ଆମକୁ କାଟିବାକୁ ପଡେ ।

ମୁଁ କେତେଥର ଲକ୍ଷ୍ୟ କରିଛି ଶାଶୁବହୁମାଳୀ ପାହାଡ ଉପରେ ଗଭୀର ରାତିରେ ଆଲୁଅ ଜଳିବା ଓ ଲିଭିବାର ଦୃଶ୍ୟକୁ । କାଶୀପୁର ବଜାରକୁ ଆସିଥିବା ଲୋକମାନେ ସମ୍ଭବତଃ ଡେରିରେ ମାଳୀ ଉପର ଗାଁମାନଙ୍କୁ ଫେରୁଛନ୍ତି । ମାଳୀ ସେକଡୁ ସନ୍ଧ୍ୟାପରେ ବାଘ ଭାଲୁ ଆସୁଥାଆନ୍ତି । ସେମାନଙ୍କର ଆକ୍ରମଣରୁ ରକ୍ଷା ପାଇବାକୁ ହେଲେ ଏକାବେଳେ ଦଳବାନ୍ଧି ନିଆଁ ହୁଳା ଜାଳି ଯିବାକୁ ହେବ । ଉଚ୍ଚ ସ୍ୱରରେ କଥାବାର୍ତ୍ତା କରିବାକୁ ହେବ । ଘାଟି ରାସ୍ତାରେ ଛାତିରେ ସାହସ ବାନ୍ଧିବାକୁ ହେବ । ଏଇଭଳି ମୁଁ କେତେଥର ଅନୁଭବ କରିଛି ଯିବା ଆସିବା ବେଳେ । କେଉଁ ଦୂରଗାଁରୁ ଫେରିଲା ବେଳେ ଅନ୍ଧାର ଭିତରେ ଲକ୍ଷ୍ୟଭ୍ରଷ୍ଟ ହେବା ବିପଦ ନୁହେଁ ତ ଆଉ କ'ଣ । କିନ୍ତୁ ଆମ ଘର ଚାରିପାଖେ ମଧ ବନ୍ୟଜନ୍ତୁଙ୍କ ଯିବା ଆସିବା ରାତ୍ରି ସାରା ଚାଲିଥାଏ । କାଶୀପୁର ପାଖକୁ ଲାଗି ପିଜୁଳି ବଗିଚାର ଡଙ୍ଗର । ସେଠାରେ ଗୋଟାଏ ଭାଲୁ ପରିବାର ଅତି ଆରାମରେ ରହିଥାଏ । ସନ୍ଧ୍ୟା ହେଲେ ଉଇ ହୁଙ୍କାମାନଙ୍କୁ ଭାଙ୍ଗିବାରେ ସେମାନେ ବ୍ୟସ୍ତ ରହନ୍ତି । ଆମ ଘର ପାଖକୁ ଆସିଲା ମାତ୍ରକେ ଆମର କୁକୁର 'କାଲୁ' ଓ ତାର ଜଣେ ଦୁଇଜଣ ସାଥୀ କୁକୁର ଜୋରରେ ଭୁକନ୍ତି । ଆମେ ଜାଣୁ ଭାଲୁମାନେ ଆସିଛନ୍ତି । କୁମ୍ଭାରଶୀଳା ଗାଁ ସେପାଖେ ପୋଡବନ୍ଧ ଜଙ୍ଗଲରେ କଲରାପତରିଆ ବାଘ ବା ଡୁରୁକା ଥାଏ । ସନ୍ଧ୍ୟାରେ କୁକୁରମାନଙ୍କୁ ରାତ୍ରି ଭୋଜନ କରିବାକୁ ତାର ଆଗ୍ରହ ବେଶୀ । ଆମ ଘର ପାଖରେ ମଧ ସେ ଲୁଚିଥାଏ କେବେ କେବେ । ତା' ଗନ୍ଧରେ କୁକୁରମାନେ ଲାଙ୍ଗୁଡ ଜାକି ଆମ ପାଦତଳେ ଆଶ୍ରୟ ନିଅନ୍ତି । ଶିଆଳ ଓ କୋକିଶିଆଳମାନେ ମଧ ବିଭିନ୍ନ ଶବ୍ଦ କରି ଆମ ପାଖ ବିସ୍ତୀର୍ଣ୍ଣ ଖୋଲା ପଡିଆରେ ବିଚରଣ କରୁଥାଆନ୍ତି । ଆମ ଘର ସାମ୍ନାରେ କାଶୀପୁର ଯାଇଥିବା ରାସ୍ତାରେ ହୁଙ୍କା ସବୁ ଥାଏ ଓ ସେଥିରେ ବିଭିନ୍ନ ପ୍ରକାରର ସାପ ସବୁ ଥାଆନ୍ତି । ଗୋଟାଏ ବଡ ଗୋଖର ସାପ କୁମ୍ଭାରଶୀଳା ଲୋକଙ୍କୁ ଡରାଇଥାଏ ଯିବା ଆସିବା ବେଳେ ଓ ତାକୁ କିପରି ମରାଯିବ ପ୍ରତିବର୍ଷ ଯୋଜନା ହୁଏ । ବିଭିନ୍ନ କିସମର ସାପ ଆମ ଘରକୁ ପଶି ଆସନ୍ତି । ଗୋଟାଏ ଗୋଖର ସାପ ଦୁଇଦିନ ଧରି ଗର୍ଜନ କରି ଆମର ଜଣେ ସହକର୍ମୀକୁ ଘରେ ପଶିବାକୁ ଦେଇ ନଥିଲା । ମାଟି କାନ୍ଥ ଭିତରେ ମୂଷାମାନେ ଥାଆନ୍ତି । ଗୋଖର ସାପ ସେଇବାଟ ଦେଇ ଯିବା ଆସିବା କରେ । ଘରପାଖ ବାହାଡା ଗଛରେ ଗୋଟାଏ ବଡ ଖୋପ ଥାଏ ଓ ସେଥିରେ ଗୋଟାଏ ପେଚା ବସାବାନ୍ଧିଥାଏ ।

ରାତ୍ରିସାରା ବିଭିନ୍ନ ଶବ୍ଦ କରେ ଓ ବେଳେବେଳେ ଶୁଆଇ ଦିଏ ନାହିଁ । ରାତ୍ରିର ନିସ୍ତବ୍ଧତାକୁ ଭଙ୍ଗକରି ଅନେକ ଶବ୍ଦ ଶୁଣିବାକୁ ମିଳେ । ଏହାସବୁ ପରିବେଶକୁ ବଦଳାଇବା ସଙ୍ଗେ ସଙ୍ଗେ ଅନେକ ଭାବାନ୍ତର ସୃଷ୍ଟି କରେ । କିନ୍ତୁ ମନରେ କେବେ ଭୟ ସଞ୍ଚାର ହୋଇନାହିଁ ଆମର । ବନ୍ୟଜନ୍ତୁମାନଙ୍କ ସହ ମୁହାଁମୁହିଁ ଆମର ହୋଇଛି କେତେଥର ।

ଗାଁର ଆଦିବାସୀ ପ୍ରକୃତି ପୂଜା କରି ଆସିଛି । ବଣ ଜଙ୍ଗଲକୁ ଓ ବନ୍ୟପ୍ରାଣୀକୁ ଆଦରି ବସିଛି ଓ ଆପଣାର କରିଛି । ବାଘ ଆଦିବାସୀକୁ ଖାଇଛି ଓ ଆଦିବାସୀ ବାଘକୁ ଶାସନ କରିଛି ମଧ୍ୟ । ଆକ୍ରମଣ ଓ ପ୍ରତିଆକ୍ରମଣର ଖେଳରେ ସିଏ ଜିତିଛି । ବାଘ କମିଛନ୍ତି । କାଶୀପୁରର ରାମଗଣ୍ଡା କୁଆଡେ ତିନିଶହ ବାଘ ମାରିଛି । ଜଣେ ଟି.ଡି.ସି.ସି. ବାବୁ ଶହେ ବାଘ ମାରିଛି । ଏସବୁ ଶୁଣିବା କଥା । ଆଦିବାସୀଙ୍କ ସଂଖ୍ୟା କମିଛି । ସାହୁକାର ଓ ଅଣଆଦିବାସୀଙ୍କ ସଂଖ୍ୟା ବଢିଛି । ଜଙ୍ଗଲ କମିଛି । ଋଷ ଜମିର ଆୟତନ ବଢିବାରେ ଲାଗିଛି । ଆଦିବାସୀ ବାଘକୁ ଡରି ନାହିଁ । ସାହୁକାର ଓ ଅଫିସରଙ୍କୁ ଡର ଭୟ କେତେଗୁଣ ବଢି ଯାଇଛି । ଆଦିବାସୀ ବର୍ଷା ଶୀତକୁ ଡରି ନାହିଁ କିନ୍ତୁ ନୂଆ ନୂଆ ରୋଗ ବେମାରୀକୁ ଆଜିକାଲି ବେଶୀ ଡରୁଛି । ଦେଶୀ ଔଷଧ ଆଉ କାମକୁ ଆସୁନାହିଁ । ଦିସାରୀ ବେଜୁଣୀଙ୍କ ପ୍ରଭାବ କମୁଛି । ସବୁଆଡେ ଡାକ୍ତରଖାନା ଖୋଲିବାକୁ ଦାବି ହେଉଛି । ଆଦବାସୀ ନୂଆ ନୂଆ କଥା ଦେଖୁଛି ଓ ଶୁଣୁଛି । ରାତ୍ରି ଅବସାନ ହୋଇ ପୁଣି ସୂର୍ଯ୍ୟୋଦୟ ହେବ; ଏକଥାରେ ଯେଉଁଭଳି ନିଶ୍ଚିତତା ଅଛି, ଆଦିବାସୀ ଜୀବନରେ ଦୁଃଖ କଷ୍ଟ ସେଇଭଳି । କିନ୍ତୁ ଆଦିବାସୀ ପାଇଁ ପାଣି, ପବନ, ପାହାଡ ପର୍ବତ, ମାଟି ଗୋଡି, ତାରାମାନଙ୍କର ଆକାଶ ଏବଂ ଧରିତ୍ରୀ ସର୍ବସ୍ୱ । ବଞ୍ଚିବାର ଆନନ୍ଦ ଅଛି ନିଶ୍ଚିତ ।



## ୪୯

କାଶୀପୁର ବ୍ଲକ୍ ଅନେକ ଗୁଣରେ ସ୍ୱତନ୍ତ୍ର ଓ ଅସାମାନ୍ୟ ବୋଲି ମୁଁ ସମ୍ଭବତଃ ଆକର୍ଷିତ ହୋଇଥିଲି । ୧୫୦୦ ବର୍ଗ କିଲୋମିଟର ଏହାର କ୍ଷେତ୍ରଫଳ । ୪୨୦ଟି ଗାଁ ଓ ୮୦ଟି ପଲ୍ଲୀ ଗାଁ । ଜନସଂଖ୍ୟା ପ୍ରାୟ ଏକ ଲକ୍ଷ । ଗୋଟାଏ ବ୍ଲକ୍, ଗୋଟିଏ ତହସିଲ୍, ଗୋଟାଏ ଥାନା, ଗୋଟାଏ ଡାକ୍ତର ଥାନା, ଗୋଟାଏ ବ୍ୟାଙ୍କ, ଗୋଟାଏ ପୋଷ୍ଟ ଅଫିସ । କାଶୀପୁର କଳାହାଣ୍ଡିରେ ଥିଲା ୧୯୬୦ମସିହା ପର୍ଯ୍ୟନ୍ତ । ଏହାପରେ ରାୟଗଡ଼ାରେ ମିଶିଲା କାରଣ ରାୟଗଡ଼ା ସହ ସବୁ ଦିନିଆ ଯୋଗାଯୋଗ ଥିଲା । ଭବାନୀପାଟଣାରୁ କାଶୀପୁର ଆସିବାକୁ ହେଲେ ରାଜା ହୁଅନ୍ତୁ ବା ଜମାନ ହୁଅନ୍ତୁ ହାତୀର ଆସିବାକୁ ପଡୁଥିଲା ନତୁବା ଉଲି ଉଲି ଘାଟି ରାସ୍ତାରେ ବାଘ, ଭାଲୁଙ୍କ ଗହଣରେ ଦଳବଦ୍ଧ ହୋଇ ଯିବାକୁ ପଡୁଥିଲା । ଦୂରତା ପ୍ରାୟ ୧୦୦ କିଲୋମିଟର ଥିଲା । ଭବାନୀପାଟଣାରୁ କେସିଙ୍ଗା ଯାଇ ରାୟଗଡ଼ା ପର୍ଯ୍ୟନ୍ତ ଟ୍ରେନ୍‌ରେ ଆସିଲେ ବସ୍‌ଧରି କାଶୀପୁର ପହଞ୍ଚିବାକୁ ପଡୁଥିଲା । ଦୂରତା ଥିଲା ପ୍ରାୟ ୨୫୦ କିଲୋମିଟର. । ଅନେକ ସମୟ ଲାଗୁଥିଲା । ଏଥିପାଇଁ କାଶୀପୁରର ପ୍ରଶାସନ ଗୋଟାଏ ଦ୍ୱୀପରେ ରହିଲା ଭଳି ଲାଗୁଥିଲା । ଟିକିଏ ଗଭୀର ଭାବେ ଅନୁଧ୍ୟାନ କରିଲେ ଜଣାପଡୁଥିଲା ଯେ କାଶୀପୁରକୁ ତିନୋଟି ଅଞ୍ଚଳରେ ବିଭକ୍ତ କରାଯାଇପାରେ । ଯେଉଁ ଅଞ୍ଚଳ କଳାହାଣ୍ଡି ସୀମାରେ ଥିଲା, ସେଠାକାର ଭାଷା ଓ ସଂସ୍କୃତି ଲୋକଙ୍କ କଳାହାଣ୍ଡିଆ ଥିଲା । ଯେଉଁ ଅଞ୍ଚଳ ରାୟଗଡ଼ାକୁ ଲାଗିଥିଲା, ସେଠାରେ ତେଲୁଗୁର ପ୍ରଭାବ ବେଶ୍‌ଥିଲା । ସେ ଅଞ୍ଚଳ ଘନ ଜଙ୍ଗଲ ଥିଲା ଓ ତା'ଭିତରେ ଏକୁଟିଆ ହୋଇ ରହୁଥିବା ଆଦିବାସୀମାନଙ୍କର ଅନେକ ସ୍ୱାତନ୍ତ୍ର୍ୟ ଥିଲା । ଆଦିବାସୀ ମାଆମାନେ ଲମ୍ୱା ଲମ୍ୱା ପିକା ସବୁ ଟାଣୁଥିଲେ ଓ ନିଆଁ ପାଟି ଭିତରେ ରହୁଥିଲା । ସେମାନଙ୍କୁ ଦେଖି ମୋତେ ଅବାକ୍ ଲାଗୁଥିଲା । ସେ ଅଞ୍ଚଳ କନ୍ଧ ପରଜାମାନଙ୍କର ଥିଲା ଓ ସେମାନଙ୍କର ଜୀବନ ଗାଥା ବିଶେଷ ଔପନ୍ୟାସିକ ଶ୍ରୀ ଗୋପୀ ମହାନ୍ତି କାବ୍ୟିକ ଭାଷାରେ ବର୍ଣ୍ଣନା କରିଛନ୍ତି । କାଶୀପୁରକୁ କାହିଁକି ତିନୋଟି ବିଭିନ୍ନ ଓ ସ୍ୱତନ୍ତ୍ର ଅଞ୍ଚଳ ଭାବେ ଘୋଷଣା କରାଯାଇ ପ୍ରଶାସନିକ ଓ ବିକାଶ ସମ୍ବନ୍ଧୀୟ ବିଷୟକୁ ପରିଚାଳନା କରାଯାଉ ନାହିଁ ବୋଲି ମୁଁ ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରେ ଯୁକ୍ତି ବାଢିଥିଲି । ଯେତେବେଳେ କୋରାପୁଟର ଆୟତନ କେରଳ ପ୍ରଦେଶ ଠାରୁ ବେଶୀ ଓ ୪୨ଟି ବ୍ଲକ୍ ଦ୍ୱାରା ଗଠିତ, କାଶୀପୁରର ଅବସ୍ଥିତିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ମୁଁ ସ୍ୱୀକାର କରିବି ଯେ କାଶୀପୁରର ୧୭ଟି ପଞ୍ଚାୟତରୁ ସିରିପାଇ ପାଞ୍ଚାୟତ ମୋତେ ବେଶୀ ଭଲ ଲାଗୁଥିଲା । କାରଣ ସେଠାରେ ଜଙ୍ଗଲର ସବୁଜିମା ଓ ବନ୍ୟଜନ୍ତୁ ଭରି ରହିଥିଲେ । ଚିରସ୍ରୋତା ଝରଣାମାନେ ସଙ୍ଗୀତ ସୃଷ୍ଟି କରୁଥିଲେ । ନିଜକୁ ହଜାଇ ଦେଇ ଅନ୍ୟ ଏକ ପୃଥିବୀକୁ ଯିବାକୁ ଏଠାରେ ସବୁବେଳେ ଆହ୍ୱାନ ଆସୁଥିଲା ।

କିନ୍ତୁ ତା'ପରେ ଶୁଙ୍ଗେର ଭଲ ଲାଗୁଥିଲା । କଳାହାଣ୍ଡିର ଗୁଣପୁର ଦେଇ ଭବାନୀପାଟଣାକୁ ଯେଉଁ ରାସ୍ତା ଅଛି, ତାହା ଶୁଙ୍ଗେରକୁ ସ୍ପର୍ଶ କରିଛି । ଗୁଣପୁରକୁ ସରକାରୀ ବସ୍ ଆସେ ଓ କଳାହାଣ୍ଡି ଓ କାଶୀପୁରର ଅନେକ ପରିବାର ଭିତରେ ଯେଉଁ ସମ୍ପର୍କ ରହିଆସିଛି, ବିବାହ ବ୍ରତରେ ଯିବା ଆସିବା ଲାଗି ରହିଛି, ଏଇ କାଶୀପୁର ଗୁଣପୁର ଭବାନୀପାଟଣା ରାସ୍ତା ଏକ ସହଜ ମାଧମ ହୋଇଥାଏ । ମୁଁ ସବୁବେଳେ ଏଇବାଟେ ଜଣେ ଆବିଷ୍କାରକର ଦୃଢମନ ଦେଇ ଚାଲିବାକୁ ଆଗ୍ରହ ପ୍ରକାଶ କରିଥାଏ । ଶୁଙ୍ଗେର ପଞ୍ଚାୟତରେ କାମ ଆରମ୍ଭ କରିବାକୁ ଆମେ ମନେ ମନେ ସ୍ଥିର କରିଥାଉ । ହେଲେ ଆମକୁ ରାତ୍ରି ସ୍କୁଲରେ ପାଠ ପଢ଼ାଇବାକୁ ଗୁରୁଭାଇ ମିଳୁନଥାନ୍ତି । ଶୁଙ୍ଗେର ପାଖ ସିନ୍ଦୁରଘାଟି ଗାଁରେ ଭଲ ଆଖୁ ଚାଷ ହେଉଥାଏ । ସେ ଗାଁରେ ଜଣେ ଦୁଇଜଣ ଆଦିବାସୀ ପିଲା ହାଇସ୍କୁଲ ପାଠ ଛାଡି ଘରେ ବସିଥାଆନ୍ତି । କଳାହାଣ୍ଡିର ସାଇସୁରଣୀ ଠାରେ ଆଶ୍ରମ ସ୍କୁଲ ଥାଏ । ତେଣୁ ସେଠାକୁ ଯାଇ ପାଠ ପଢ଼ିବା ସମସ୍ତଙ୍କ ପାଇଁ ସମ୍ଭବ ନଥାଏ । ଆମେ ଅତି କମରେ ପାଞ୍ଚୋଟି ରାତ୍ରି ସ୍କୁଲ ଚଳାଇବାକୁ ନିଷ୍ପତ୍ତି ନେଇଥିଲୁ । ସେ ଅନୁସାରେ ସିନ୍ଦୁରଘାଟି ବଡ ଗାଁ ହୋଇଥିବାରୁ ଦୁଇଟି, ସରାମବାଇ ଠାରେ ଗୋଟାଏ, ଶୁଙ୍ଗେର ଗଉଡ ସାଇରେ ଗୋଟାଏ ରାତ୍ରି ସ୍କୁଲ ଖୋଲିବାକୁ ଗାଁ ମାନଙ୍କରୁ ଅନୁରୋଧ ଆସିଲା । ଆମର ନିୟମ ଅନୁସାରେ ଗାଁରେ ଜଣେ ହାଇସ୍କୁଲ ମାଡିଥିବା ପିଲା ଗୁରୁଭାଇ ବା ଶିକ୍ଷକ ହେବା ଆବଶ୍ୟକ ଥିଲା । କିନ୍ତୁ ସବୁଠାରୁ ଆଗ୍ରହୀ ଗାଁ ଥିଲା 'ଦାମନଘାଟି' । ଛୋଟ ପାହାଡ ଉପରେ ଗାଁଟି ଅବସ୍ଥିତ । ତଳେ ଝରଣା ଟିଏ । ଜମି ନାହିଁ । ଆଦିବାସୀମାନଙ୍କ ସହ କେତେ ଘର ଅଛନ୍ତି ସେଠାରେ । ଦାରିଦ୍ର୍ୟର ଛାପ ସବୁଆଡେ । ଶୁଙ୍ଗେରର ସ୍କୁଲ ଓ ଦୋକାନ ବଜାର ଆଦି ଅଛି । ଗୁରୁବାର ଦିନ ବସ୍ତିତଳେ ହାଟ ବସେ ଓ କଳାହାଣ୍ଡି ଆଡୁ ବେପାରୀମାନେ କୁକୁଡା ଠାରୁ ଆରମ୍ଭ କରି ଲିଆ ଖଜା, ଲଡୁ ଆଣନ୍ତି । କାଶୀପୁରରୁ ବେପାରୀମାନେ ଲୁଗାପଟା ଶୁଖୁଆ ମଧ୍ୟ ଆଣନ୍ତି । ଜଙ୍ଗଲ ଜାତ ଦ୍ରବ୍ୟମାନଙ୍କର ଅମଳବେଳେ ଅଥବା ପର୍ବପର୍ବାଣି ବେଳେ ହାଟ ଖୁବ୍ ଗହଳି ହୁଏ । ତା'ପାଖରେ ଆମର ଅଫିସ ଖୋଲିଥାଏ । 'ଦାମନଘାଟି'ର କାଡିଆ ମାଝୀ ହାଟରୁ ଆମ କଥା ଶୁଣି ଫିଲଡ୍ ସେଣ୍ଟରକୁ ଆସିଥିଲା ଓ ସେ ତା' ଗାଁରେ ଆମର ମିଟିଂ ହେଉ ବୋଲି ଅନୁରୋଧ କରିଥିଲା । ତାହାର ଅଭିଯୋଗ ଥିଲା ଯେ ଦାମନଘାଟିକୁ ସବୁଦିନିଆ ରାସ୍ତା ନଥିବା ହେତୁ କେହି ବାହାରର ଲୋକ ଆସୁନାହାନ୍ତି । ଶୁଙ୍ଗେର ଗଉଡ ସାଇରେ ଘରେ ଘରେ ମଦ ବିକ୍ରି ହେଉଛି ଓ ଦାମନଘାଟି ଲୋକେ ବର୍ଷସାରା ମାତାଲ୍ ହେଉଛନ୍ତି । ଗାଁରେ ଶୋଷଣ ଅତ୍ୟାଚାର ବିରୋଧରେ ଲଢିବା କଥା ଆମେ କହୁଛୁ, ସେ ଆମ ସହ ସାଥୀ ହେବା ପାଇଁ ଆଗ୍ରହୀ । ମୁଁ ମୋର ଅନ୍ୟ ସାଥୀମାନଙ୍କ ସହ ସଞ୍ଜ ନବୁଡୁଣୁ 'ଦାମନଘାଟି' ଗାଁରେ ପହଞ୍ଚିଥିଲି । ଗାଁ ପହଞ୍ଚିବା ପୂର୍ବରୁ ମସ୍ତବଡ ଝୋଲା । ବର୍ଷାଦିନେ କୌଣସି ବାଟେ ପହଞ୍ଚିହେବ ନାହିଁ । ଗାଁ ଦାଣ୍ଡରେ ମିଟିଂ ହେଲା । ହରିଜନମାନେ ଆଗ୍ରହ ଓ ସନ୍ଦେହ ଆଖିରେ ଆମକୁ ଦେଖୁଥିଲେ ଓ ମିଟିଂ ଠାରୁ କିଛି ଦୂରରେ ବସି ଆମ କଥା ଶୁଣୁ ଥାଆନ୍ତି । ଗାଁରେ ରାତ୍ରି ସ୍କୁଲ ଓ କୁଟୁମ୍ବ ପାଣ୍ଠି

ବିଷୟ ଆଲୋଚନା ହେଲା ଓ ପରିଚାଳନା କମିଟି ତିଆରି ମଧ୍ୟ ହେଲା । ରାତ୍ରି ସ୍କୁଲରେ ପାଠ ପଢ଼ିବାକୁ ସମସ୍ତେ ଆଗ୍ରହ ପ୍ରକାଶ କରିଲେ । କିନ୍ତୁ ପାଠପଢ଼ାଇବାକୁ ଗୁରୁଭାଇ କିଏ ହେବ ? ପ୍ରଶିକ୍ଷଣ ବର୍ଷ ଧରି ଚାଲିବ । ଗାଁରେ ଜଳସେଚନ ବ୍ୟବସ୍ଥା ହୋଇପାରିବ ନାହିଁ ବୋଲି ଯେଉଁ ନୈରାଶ୍ୟ ଦେଖାଦେଇଥିଲା, ରାତ୍ରି ସ୍କୁଲ ଖୋଲିବାର ନିଷ୍ପତ୍ତିରେ ଆନନ୍ଦ ଖେଳି ଯାଇଥିଲା । କାଡିଆ ଆମକୁ ଗାଁକୁ ନିମନ୍ତ୍ରଣ କରିଛି ବୋଲି ଧନ୍ୟବାଦର ପାତ୍ର ହୋଇଥିଲା ।

ଆମର ନୀତି ଗତ ନିଷ୍ପତ୍ତି ହୋଇଥାଏ ଯେ ରାତ୍ରି ସ୍କୁଲରେ ପାଠ ପଢାଇବା ଗୁରୁଭାଇ ବା ଗୁରୁଭଉଣୀ ଗାଁ ଭିତରୁ ବାଛିବାକୁ ହେବ । ଦାମନଘାଟି ଗାଁରେ ଏତେ ଆଗ୍ରହ କିନ୍ତୁ ଶିକ୍ଷିତ ପିଲା କେହି ନାହାନ୍ତି । ଆମେ ଖୁବ୍ ନିରାଶ ହେଲୁ । ଗାଁରେ ଯଦି କିଏ ଦି'ଅକ୍ଷର ପଢିଛି ସେ ହେଉଛି ଏକମାତ୍ର କାଡିଆ ମାଝୀ । ଗାଁରେ କଳାହାଣ୍ଡିରୁ ଜଣେ 'ଘିନା ମାଷ୍ଟ' ବା 'କିଣା ମାଷ୍ଟ' ଆସି ବର୍ଷେ ରହିଥିଲା ଅନେକ ବର୍ଷ ପୂର୍ବେ । କାଡିଆ ମାଝୀ ସେଇ ମାଷ୍ଟଠାରୁ ଲେଖିବା ଓ ପଢିବା ଟିକିଏ ଜାଣିଛି । ଏପରିକି ତୃତୀୟ ଶ୍ରେଣୀର ପିଲା ଯେତିକି ଜାଣିବା କଥା କାଡିଆ ମାଝୀ ମଧ୍ୟ ସମ୍ଭବତଃ ଜାଣିନାହିଁ । ଆମେ ଖୁବ୍ ଦ୍ୱନ୍ଦରେ ପଡିଲୁ ଯେ କାଡିଆ ମାଝୀ ଆମର ରାତ୍ରି ସ୍କୁଲର ଗୁରୁଭାଇ ହେବା ପାଇଁ ଯୋଗ୍ୟ କି ନୁହେଁ । ଟ୍ରେନିଂ ଆରମ୍ଭ ହେବା ଉପରେ । ଆମ କର୍ମମାନଙ୍କ ଭିତରେ ଆଲୋଚନା ହେଲା ଯୁକ୍ତି ଥିଲା ଯଦି ଗୁରୁଭାଇ ପାଠ ପଢ଼ାଇ ନ ପାରିବ, ସେ କାହିଁକି ସେ ପଦରେ ରହିବ ? କିନ୍ତୁ କାଡିଆର ଅନେକ ଗୁଣ ଥିଲା । ବାଙ୍ଗରା ମଣିଷ ଟିଏ । ପିଲାବେଳେ ଦୌଡୁଥିଲା ଓ ପଡିଯାଇ ଆଗରୁ ଦାନ୍ତ ଭାଙ୍ଗି ଯାଇଛି । କଥା କହିଲାବେଳେ ଶବ୍ଦ ସବୁ ଠିକ୍ ଶୁଣାଯାଏ ନାହିଁ । ଓଡ଼ିଆ ଠିକ୍‌ରେ କହିପାରେ ନାହିଁ । ଆଦିବାସୀ ଭାଷା ସେଥିରେ ମିଶିଥାଏ । କାଡିଆ ପିଲାବେଳେ ବିବାହ କରିଛି । ବର୍ଷେ ପାଇଁ ଘର ଛାଡି କାଶୀପୁରଠାରେ ପ୍ରଶିକ୍ଷଣ ନେଲେ ଘରେ ପରିବାର କେମିତି ଚାଲିବ ? ସେ କିନ୍ତୁ ତା'ର ଗାଁ ଓ ଆଦିବାସୀମାନଙ୍କ ପାଇଁ କିଛି କରିବାକୁ ସଂକଳ୍ପବଦ୍ଧ । ପାଠ ପଢ଼ି ନାହିଁ ସତ, ଆତ୍ମବିଶ୍ୱାସ ଅଛି, ସଚ୍ଚୋଟପଣିଆ ଅଛି, ନେତୃତ୍ୱ ନେବାର କ୍ଷମତା ଅଛି । ଆମ ଭିତରେ ଆଦିବାସୀମାନଙ୍କୁ ସବୁଠାରୁ ବେଶୀ ବୁଝିଥିବା ବ୍ୟକ୍ତିଥିଲେ ଶ୍ରୀମତୀ ବିଦ୍ୟା । ସେ କାଡିଆକୁ ଗୁରୁଭାଇ ଭାବେ ମନୋନୀତ କରିବାକୁ ଦୃଢ଼ ଯୁକ୍ତି ବାଢିଥିଲେ । ଆମର ରାତ୍ରି ସ୍କୁଲ ଗୁଡିକ ସାକ୍ଷରତା ପାଇଁ କେବଳ ଉଦ୍ଦିଷ୍ଟ ନଥିଲା । ଏଥିରେ ସାମିଲ ହୋଇଥିବା ଛାତ୍ର ଛାତ୍ରୀ, ଗରୁଭାଇ ଓ ଭଉଣୀ ଏବଂ ସାରା କୁଟୁମ୍ବ ରାତ୍ରି ସ୍କୁଲ ମାଧ୍ୟମରେ ସାମାଜିକ ପରିବର୍ତ୍ତନର ସାମୂହିକ ଚେତନା ସୃଷ୍ଟି କରିବା ଅସଲ ଉଦ୍ଦେଶ୍ୟ ଥିଲା । କାଡିଆ ଏଥିପାଇଁ ସବୁଠାରୁ ଯୋଗ୍ୟ ବ୍ୟକ୍ତି ଥିଲା । କାଡିଆ ବର୍ଷେ ପାଇଁ ଘରଦ୍ୱାର, ପିଲା କୁଟୁମ୍ବ ଓ ଚାଷ ବାସ ଛାଡି ପ୍ରଶିକ୍ଷଣ ନେବ ବୋଲି ଅଙ୍ଗୀକାରବଦ୍ଧ ଥିଲା । ଆମେ କହୁଥିଲୁ ଯେ ତିନିମାସରେ ଥରେ ଗାଁକୁ ଫେରିବାକୁ ସୁଯୋଗ ମିଳିବ । ସେ ଆଶ୍ୱସ୍ତ ହୋଇଥିଲା ।

କାଡିଆ ମାଝୀ ଟିକିଏ ବୟସରେ ଅନ୍ୟମାନଙ୍କଠାରୁ ବଡ ଥିଲା । କିନ୍ତୁ ଆଲୋଚନା କରିବା ବେଳେ ସେ ସବୁଠାରୁ ବେଶୀ ସ୍ପଷ୍ଟତା ଓ ଉତ୍ସାହ ପ୍ରଦର୍ଶନ କରୁଥିଲା । ତା'ର ଅଞ୍ଚଳରେ ଦବି ଯାଇଥିବା, ନିରବ ରହିଥିବା ଆଦିବାସୀମାନଙ୍କୁ ଶୋଷଣମୁକ୍ତ କରିବାକୁ ସେ

ଦୃଢ଼ ପରିକର ଥିଲା । ସେ ଲଢିବାକୁ ଚାହୁଁଥିଲା । କାଡିଆ ବୁଝିଥିଲା ଯେ ଦାମନଘାଟି ଭଳି ଛୋଟ ଗାଁଟିଏ ସାହୁକାର ଓ ଅନ୍ୟ ପ୍ରଭାବଶାଳୀମାନଙ୍କ ସହ ଲଢିପାରିବ ନାହିଁ । ଏଥିପାଇଁ ଶୁଙ୍ଗେର ଆଖପାଖ କେତୋଟି ଗାଁରେ ଲୋକମାନଙ୍କୁ ଏକଜୁଟ୍ ହେବାକୁ ପଡିବ, ତେଣୁ ସିନ୍ଦୁରଘାଟୀରେ ନାନ୍ଦୁ ଓ ବାରୁ, ସରାମବାଇର ସୀତାରାମ ଆଦି ଅନ୍ୟ ଗୁରୁଭାଇଙ୍କ ସହ ସେ ସବୁବେଳେ ଶୁଙ୍ଗେରର ବିକାଶ ପାଇଁ ବିଭିନ୍ନ ପ୍ରସ୍ତାବ ଦେଇଥିଲା । ସେତେବେଳେ ସାଧାରଣ ବଣ୍ଟନ ବ୍ୟବସ୍ଥାରୁ ଦୁଇ ଟଙ୍କାରେ କେଜିଏ ଚାଉଳ ଯାହା ମିଳିବା କଥା ତାହା ଶୁଙ୍ଗେର ପହଞ୍ଚୁନଥିଲା । ଆମର ଗୁରୁଭାଇମାନେ ନିଷ୍ପତ୍ତି ନେଲେ ଯେ ପଡି କାର୍ଡକୁ ଆଧାର କରି ସେମାନେ ଚାଉଳ ଡିଲର୍ ସିପ୍ ଆଣିବେ । ଦଲାଲ୍‌ମାନଙ୍କ ହାତକୁ ଯିବନାହିଁ । ମୁଁ ଜିଲ୍ଲାପାଳଙ୍କ ସହ କଥାବାର୍ତ୍ତା କରିଲି । ଶୁଙ୍ଗେରର ପ୍ରତ୍ୟେକ ଗାଁରେ ମିଟିଂ ହେଲା । ଗାଁରୁ ଚାନ୍ଦା ଉଠାଗଲା । ଡିଲର୍ ହିସାବରେ କାଡିଆର ନାମ ସର୍ବସମ୍ମତି ଭାବେ ଗୃହୀତ ହେଲା । କାଡିଆର ବ୍ୟକ୍ତିଗତ ଉଦ୍ୟମରେ ପି.ଡି.ଏସ୍ ଚାଉଳ ପ୍ରଥମ ଥର ପାଇଁ ଶୁଙ୍ଗେରର ସବୁ ଗାଁରେ ପହଞ୍ଚିଲା । କାଶୀପୁରର ଆଦିବାସୀମାନଙ୍କ ପାଇଁ ଏହା ଇତିହାସ ସୃଷ୍ଟି କରିଥିଲା ।



# ୫୦

ଖରାଦିନେ ଭୋର ସକାଳୁ ପକ୍ଷୀମାନଙ୍କର କଳରବରେ ଆମ ଘରର ଚତୁଃପାର୍ଶ୍ୱ ମୁଖରିତ ହୋଇଯାଏ । କେଜାଣି କାହିଁକି ଗୋଟିଏ ଦୁଇଟି ପକ୍ଷୀ ରାତିସାରା ଯେମିତି ଶୁଅନ୍ତି ନାହିଁ । ମୁଁ ଉଠିପଡି ପାଖ ଗାଁ ଗୁଡିକୁ ଚାଲି ଚାଲି ଘେରାଏ ବୁଲିଆସେ । ସକାଳୁ ଗାଁର ସମସ୍ତେ ବ୍ୟସ୍ତ ଚଞ୍ଚଳ । ଗତ ସପ୍ତାହରେ ବର୍ଷା ହୋଇଥିଲା ଓ ମାଟି ଓଦା ଅଛି, ହଳ ଧରିବାକୁ ହେବ । ବଳଦ ସହ ଲଙ୍ଗଳ ଯୋଡି ଆଦିବାସୀ ବିଲଜମି ପାଖରେ ଅନ୍ଧାରୁ ଅନ୍ଧାରୁ ପହଞ୍ଚିଯାଏ । ଗାଁର ସବୁ ବୟସର ମାଆମାନେ ସକାଳୁ ମାଣ୍ଡିଆ ଚୂନା କରି ଯାଉ ରାନ୍ଧନ୍ତି । ତା'କୁ ଧରି ଡଙ୍ଗର ଚାଷ ପାଇଁ ଡଙ୍ଗର ଉପରକୁ ଚଢ଼ିବାକୁ ହେବ ସକାଳୁ ସକାଳୁ । ଘରପାଇଁ ପାଣି ଆଣିବାକୁ ହେବ ପାଖ ଝରଣାରୁ । ପିଲାମାନଙ୍କର ଯତ୍ନ ନେବାକୁ ହେବ । ଗାଁ ସାରା ସମସ୍ତେ ଏପରି ବ୍ୟସ୍ତ ଥାଆନ୍ତି । କାହାସହ କଥା ହେବା ପାଇଁ ସମୟ ନଥାଏ । ଆମେ ସମସ୍ତେ କର୍ମୀମାନେ ଜାଣିଥାଉ ଯେ ସକାଳେ ଗାଁରେ କିଛି ବି ଆଲୋଚନା କରି ହେବ ନାହିଁ । ଏଇଥି ପାଇଁ ଆମର ଗାଁ ମିଟିଂ ସାଧାରଣତଃ ସନ୍ଧ୍ୟାରେ ଆୟୋଜିତ ହୋଇଥାଏ । ତଥାପି ମୁଁ କାହିଁକି କେଜାଣି ଗାଁମାନଙ୍କୁ ସକାଳୁ ଯିବାକୁ ପସନ୍ଦ କରିଥାଏ । ଯେଉଁ ଆଦିବାସୀ ପୁଅ ଜମିରେ ହଳ କରୁଛି ବା ଯେଉଁ ଆଦିବାସୀ ମାଆ ଡଙ୍ଗରରେ କୁଡୁକି ଚାଷ କରୁଛି, ସେମାନଙ୍କ ପାଖରେ କିଛି ସମୟ ବସି ଦି'ପଦ କଥା ହେବାକୁ ମନ ସବୁବେଳେ ଡାକୁଥାଏ । ଏ ସମୟରେ ସେଇ ମାଟି କାଦୁଅର ମଣିଷମାନେ ସମ୍ଭବତଃ ଥକ୍କା ମାରିବାକୁ ଓ ପଦେ ଦି'ପଦ ମନର କଥା କହିବାକୁ ସାଥୀ ଲୋଡୁଥିବେ । ସତକୁ ସତ ଆମର କଥା କେବେକେବେ ସରେ ନାହିଁ । ମୁଁ ଏକ ଦିବ୍ୟଚେତନା ଓ ଆସ୍ଥାସୂଚକ ଭାବାବେଗରେ ଉଦ୍‌ବେଳିତ ହୋଇଯାଏ । ମୁଁ ସେମାନଙ୍କ ଭିତରେ ନିଜକୁ ଆବିଷ୍କାର କରିଥାଏ । ସେମାନଙ୍କର ସାହାଯ୍ୟ ଓ ସମର୍ଥନ ମୋତେ ଅମାପଶକ୍ତି ଓ ସାହସ ଆଣିଦିଏ । ମୁଁ ସେମାନଙ୍କଠାରୁ ଶିଖୁଥାଏ ଓ ନିଜକୁ ପୁନଃଆବିଷ୍କାର କରିବା ସହଜ ହୋଇଥାଏ ।

କାଶୀପୁରରେ ଆମର ରହିବାର ୪-୫ବର୍ଷ ଏ ଭିତରେ ବିତିଗଲା । ଅନେକ କିଛି ଘଟିଗଲା । ଆମର କାର୍ଯ୍ୟକ୍ରମରେ ଏକ ସ୍ୱଚ୍ଛତା ଆସିଗଲା । ନୂଆ ନୂଆ ପ୍ରକଳ୍ପ ଆରମ୍ଭ କରିବାକୁ ଉତ୍ସାହ ଆସିଲା । ସମ୍ପର୍କ ନୂତନ ଶାଖା ପ୍ରଶାଖା ମେଲିଲା । ଆଗକୁ ଆଗକୁ ଯିବାକୁ ଅନେକ ପ୍ରେରଣା ମଧ୍ୟ ମିଳିଥିଲା ସେ ସମୟରେ । କିନ୍ତୁ କେଜାଣି କାହିଁକି ପ୍ରତିରୋଧର ଆଭାସ ଆମର ବ୍ୟକ୍ତିଗତ ଏବଂ ପେଶାଦାର ଜୀବନରେ ସବୁବେଳେ ରହି ଆସିଥିଲା ।

କାଶୀପୁରର ସାହୁକାର ଗୋଷ୍ଠୀ ସବୁବେଳେ ଆମକୁ ବିରୋଧ କରିଆସୁଥିଲେ । ସେଠାରେ ସାହୁକାରମାନଙ୍କର ଅନେକ ଅବତାର ଥିଲା । ସେ ଏକଧାରରେ ସାହୁକାର, ଠିକାଦାର, ରାଜନୈତିକ ନେତା, ଜମିଦାର ଓ ମୁଖପତ୍ର ହୋଇଥିଲା । ଦିନେ ସନ୍ଧ୍ୟାରେ ଜଣେ ସାହୁକାର ଆସି ପହଞ୍ଚିଲେ ଓ କହିଲେ ଯେ ଆମେ କାହିଁକି ତାଙ୍କୁ ସବୁକଥାରେ ପରାମର୍ଶ କରୁନାହୁଁ । ତାଙ୍କୁ ବିଶ୍ୱାସକୁ ନନେଲେ କାଶୀପୁରରେ ତିଷ୍ଠିବା ସମ୍ଭବ ହେବ କି ? ତାଙ୍କର ଯେଉଁ ଯେଉଁ ଗାଁରେ ଯିବା ଆସିବା ରହିଛି, ସେଇ ସବୁଗାଁରେ ମିଟିଂ କରିଲାବେଳେ ତାଙ୍କୁ କାହିଁକି ଆମନ୍ତ୍ରଣ କରାଯାଉ ନାହିଁ ? ପରିସ୍ଥିତି ଭୟାନକ ହେବାକୁ ବସିଛି । ଆମେ ନିର୍ଭୀକ ଭାବେ କହୁଥିଲୁ ଯେ ଆମ ଗରିବ ଆଦିବାସୀଙ୍କ ପାଇଁ ସମାଜସେବା କରୁଛୁ । ଏଥିରେ ସାହୁକାରମାନଙ୍କର ପରାମର୍ଶ ଲୋଡା ନାହିଁ । କାଶୀପୁରର ସାହୁକାରମାନଙ୍କର ରାୟଗଡ଼ାର ବଡ ସାହୁକାରମାନଙ୍କ ସହ ସମ୍ପର୍କ ଅଛି । କାଶୀପୁରର ସାନ ନେତାଙ୍କୁ ରାୟଗଡ଼ାର ବଡ ନେତାଙ୍କ କଥା ମାନିବାର ଅଛି । ଏଣୁ କାଶୀପୁରରେ ସାହୁକାରଙ୍କ ଆମପ୍ରତି ବିରୋଧ ଖୁବ୍ ଶୀଘ୍ର ରାୟଗଡ଼ା ପର୍ଯ୍ୟନ୍ତ ପ୍ରସାରିତ ହୋଇଗଲା । ବାସ୍ତବରେ କହିବାକୁ ହେଲେ ରାଜନୀତି, ଅର୍ଥନୀତି ଓ ଆଇନ୍ ସବୁ ରାୟଗଡ଼ା ଠାରେ ନିୟନ୍ତ୍ରିତ ହୋଇଥିଲା । କାଶୀପୁରରେ କେସ୍‌ବାସ ଲାଗିଲେ ରାୟଗଡ଼ାର ଅଭିଜ୍ଞ ଓକିଲମାନେ ଲାଭ ପାଉଥିଲେ । କାଶୀପୁରରୁ ରାୟଗଡ଼ା କୋର୍ଟକୁ ପ୍ରାୟ ଶତକଡ଼ା ଷାଠିଏ ଭାଗ କେସ୍ ଆସୁଥିଲା । କାଶୀପୁରର ଘିଅ, ଗୁଡ, ଚାଉଳ, କାନ୍ଦୁଲ ଆଦି ମଧ୍ୟ ରାୟଗଡ଼ାର ପ୍ରଭାବଶାଳୀ ବ୍ୟକ୍ତିଙ୍କ ଘରକୁ ସହଜରେ ପହଞ୍ଚୁଥିଲା ।

ଅଗ୍ରଗାମୀ ଯେତେବେଳେ ଲୋକଙ୍କୁ ଏଇ ଜାଲରେ ନପଡିବା ପାଇଁ ବୁଝାଇବାକୁ ଆରମ୍ଭ କରିଥିଲା, ସେତେବେଳେ ବିରୋଧାଭାସ ଅନେକ ଗୁଣ ବଢ଼ି ଯାଇଥିଲା । ରାୟଗଡ଼ାର କେତେଜଣ ସାମ୍ବାଦିକ ମଧ୍ୟ ପ୍ରତ୍ୟକ୍ଷଭାବେ ବିରୋଧ ପ୍ରଦର୍ଶନ କରିଥିଲେ । ଏମାନଙ୍କ ସହ ଅନେକ ତଳିଆ ସରକାରୀ କର୍ମଚାରୀ ଓ ଅଫିସର ମଧ୍ୟ ସାମିଲ୍ ହୋଇଥିଲେ । ଗୋଟାଏ ସମୟରେ ରାୟଗଡ଼ାରେ ପ୍ରଫେସର୍ ଭଗବତ ପ୍ରସାଦ ରଥ, ଆଡ୍‌ଭୋକେଟ୍ ଶ୍ରୀ ମୋହନ ନାୟକ ଓ କେରଳୀ ଷ୍ଟେସନାରୀ ଦୋକାନ ଛଡା ଆମକୁ କେହି ପ୍ରତ୍ୟକ୍ଷଭାବେ ସମର୍ଥନ କରୁନଥିଲେ । ଅବଶ୍ୟ ରାୟଗଡ଼ା ବାଟେ ଯିବା ଆସିବା ଛଡା ଆମର ସେମିତି କିଛି ସମ୍ପର୍କ ନଥିଲା । ରାୟଗଡ଼ାର ଅମଲାତନ୍ତ୍ର ୧୯୮୫ ମସିହା ବେଳକୁ ଆମକୁ ଓ ଆମର କାର୍ଯ୍ୟକ୍ରମକୁ ଠିକ୍ ବୁଝିଥିବାରୁ ମଧ୍ୟ ଅନେକ କ୍ଷେତ୍ରରେ ପ୍ରୋତ୍ସାହନା ମିଳୁଥିଲା । ଅବଶ୍ୟ ଆମର ସମ୍ପର୍କ କୋରାପୁଟର ଜିଲ୍ଲାପ୍ରଶାସନ, ଭୁବନେଶ୍ୱରର ରାଜ୍ୟ ପ୍ରଶାସନ ଓ ଦିଲ୍ଲୀର ଜାତୀୟ ପ୍ରଶାସନ ସହ ଦୃଢ଼ ଭାବେ ପ୍ରତିଷ୍ଠିତ ହୋଇଥିଲା । ପ୍ରଶାସନିକ ସମ୍ବନ୍ଧ ଆମ ପାଇଁ ଯଥେଷ୍ଟ ନୁହେଁ ବୋଲି ରାଜନୈତିକ ନେତା ଓ ସାମ୍ବାଦିକମାନେ ସତର୍କ କରି ଦେଉଥିଲେ । ଆମେ କିନ୍ତୁ ସେକଥାକୁ ଭ୍ରୂକ୍ଷେପ କରୁନଥିଲୁ । ଗାଁରେ ଜନ ସମର୍ଥନ ଓ ବାହାରେ ପ୍ରଶାସନିକ ସମର୍ଥନ ନିଶ୍ଚିତ ଥିବାରୁ ଅନେକ କାର୍ଯ୍ୟ ସାମୂହିକ ହିତ ପାଇଁ ସହଜରେ କରାଯାଇପାରୁଥିଲା । ଜନସାଧାରଣଙ୍କ ଅଭିଯୋଗ ଅନେକ ସମୟରେ କାଶୀପୁରର ରେଭେନ୍ୟୁ ବଙ୍ଗଳାର ହତା

ବାହାରକୁ ଅତିକ୍ରମ କରିପାରୁନଥିଲା । କିନ୍ତୁ ଆମର ହସ୍ତକ୍ଷେପ ଫଳରେ ଅଭିଯୋଗ ସବୁ ଦିଲ୍ଲୀ ଦରବାର ପର୍ଯ୍ୟନ୍ତ ପହଞ୍ଚୁଥିଲା । ଏଥିପାଇଁ ଅବଶ୍ୟ ଆଦିବାସୀମାନେ ଆମକୁ ଅନେକ କୃତଜ୍ଞତା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । କିନ୍ତୁ କାଶୀପୁରର ପ୍ରଭାବଶାଳୀ ସାହୁକାର ଗୋଷ୍ଠୀ ଆମକୁ କେଉଁଠିନା କେଉଁଠି ଖାଲରେ ପକାଇବାକୁ ବାରମ୍ବାର ଚେଷ୍ଟା କରୁଥିଲା ।

ବ୍ୟକ୍ତିଗତ ଜୀବନରେ ମୋର ପରିବାର ଓ ଅନେକ ବନ୍ଧୁ ଆମର କାଶୀପୁର ଅଭିଯାନ ବିଷୟରେ ମଧ୍ଯ ଉଦାର ଓ ସାକାରାତ୍ମକ ସମାଲୋଚନା କରିବାକୁ ପଛେଇ ନଥିଲେ । ମୋର ଆତ୍ମୀୟମାନେ ବାରମ୍ବାର କହୁଥିଲେ ଯେ କାଶୀପୁରରେ ପାଗଳାମୀ ଛାଡି ଆସି ଅନ୍ୟ କେଉଁଠି ଚାକିରି ଖୋଜିବା ପାଇଁ । ବିଦ୍ୟାଙ୍କର ପରିବାର ବୁଝିପାରୁ ନଥିଲେ ଯେ ମାସିକ ଛଅଶହ ଟଙ୍କା ଦରମାରେ ଆମେ କେମିତି ଚଳିବୁ ଓ ଘରସଂସାର କରିବୁ । ଉଦାହରଣ ଦେଇ ଉଭୟ ପରିବାର କହୁଥିଲେ ଯେ ଆମର ବନ୍ଧୁମାନେ ପଦପଦବୀରେ ପ୍ରତିଷ୍ଠିତ ହୋଇସାରିଛନ୍ତି । ଆମେ କାହିଁକି ପଛରେ ପଡିଛୁ ? ଆମେ ଏସବୁ ଶୁଣୁଥିଲୁ ଓ ଗୁରୁତ୍ୱ ଦେଉନଥିଲୁ । ବାବି (ଯାହାର ପୁରା ନାମ ଶ୍ରୀ ଅମିତ୍ ବେହେରା) ଆମର ସମାଲୋଚକମାନଙ୍କ ଭିତରେ ସବୁଠାରୁ ବେଶୀ ସକ୍ରିୟ ଥିଲା ଓ ୧୯୮୦ ରୁ ୧୯୮୫ ମସିହା ଭିତରେ ସବୁଠାରୁ ବେଶି ସଂଖ୍ୟକ ଚିଠି ସେ ମୋର ପାଖକୁ ଲେଖିଥିଲା । ସେ ବିଶ୍ୱ ବିଦ୍ୟାଳୟରୁ ଅର୍ଥନୀତିରେ ସ୍ନାତକ ଡିଗ୍ରୀ ନକରି ଶିଳ୍ପ ପ୍ରତିଷ୍ଠା କରିବାକୁ ଚାହୁଁଥିଲା । ମୁଁ ଜାଣେ ସେ ଲାଭକ୍ଷତିକୁ ଠିକ୍ ଭାବେ ବିଚାରକୁ ନନେଇ ଗୋଟାଏ ଆଡଭେଞ୍ଚର କରିବାକୁ ଏବଂ ଅମଦାବାଦରେ ଯିବାକୁ ଚାହୁଁଥିଲା । ଅବଶ୍ୟ ପରୋକ୍ଷଭାବରେ ଏହା ପଛରେ ମୋର ପ୍ରେରଣା ଥାଇପାରେ ବୋଲି ଅନେକ ଭାବୁଥିଲେ । ଗୋଟାଏ ସାମାଜିକ ଅନୁଷ୍ଠାନରେ ପେଶାଦାର ଭାବନା ପ୍ରତ୍ୟକ୍ଷଭାବରେ ରୂପାୟିତ ହେବା ଆବଶ୍ୟକ ବୋଲି ସେ ବାରମ୍ବାର ଯୁକ୍ତି କରୁଥିଲା । ସାମାଜିକ ଅନୁଷ୍ଠାନର ଢାଞ୍ଚା ଠିକ୍ କି ଭୁଲ ତାହା ସବୁବେଳେ ପ୍ରଶ୍ନବାଚକରେ ରହିଥିଲା । ବାବି ସହ ଦେଖାସାକ୍ଷାତରେ ଏ ଯୁକ୍ତି ସବୁ ଅନେକ ସମୟ ଧରି ଅମୀମାଂସିତ ହୋଇ ରହୁଥିଲା । କିନ୍ତୁ ପ୍ରକୃତରେ ବାବି ମୋର ଜଣେ ଟାଣୁଆ ସମର୍ଥକ ଥିଲା ।

ପାଞ୍ଚ ବର୍ଷଧରି କାଶୀପୁର ମୋର କାୟ, ମନ ଓ ବାକ୍ୟ ଆଦି ସବୁ କ୍ଷେତ୍ରରେ ଗୋଟାପଣେ ଗ୍ରାସ କରିଥିଲା । ଗୋଟାଏ ପଟେ ଏକ ସୁନ୍ଦର ଓ କମନୀୟ ପରିବେଶ ଓ ଅନ୍ୟ ପଟରେ କ୍ଷୁଧା ଓ ଦାରିଦ୍ର୍ୟ - ଏସବୁ ମୋର ଚିନ୍ତାଧାରାକୁ ଗୋଟିଏ ଦିଗକୁ ଟାଣିଥିଲା । ଅନେକ ବର୍ଷତଳେ ମାଡ୍ରାସର ଏକ ଅଖ୍ୟାତ ବହି ଦୋକାନରେ ମୁଁ କାମ୍ୟୁଙ୍କ ରେଜିଷ୍ଟାନ୍ସ, ରିବେଲିୟନ ଆଣ୍ଡ ଡେଥ୍ (Registance, Rebellion and Death ) ବହି କିଣିଥିଲି ଓ ପ୍ରାୟ ଏହା ମୋର ସବୁଦିନିଆ ସାଥୀ ହୋଇଯାଇଥିଲା । ଯେଉଁ ଆଡେ ମୁଁ ଯାଉଥିଲି ଏ ବହିଟିକୁ ସାଙ୍ଗରେ ନେଉଥିଲି । ମଣିଷର ଏକ ପ୍ରତିରୋଧ କରିବାର ତୀବ୍ର ଇଚ୍ଛା ରହିଛି । ଯେଉଁ ମଣିଷ ମୁକ୍ତି ଓ ସ୍ୱାଧୀନତା ଭଲ ପାଇଛି ସେ ଚୁପ୍ ହୋଇ ବସି ପାରିବ ନାହିଁ । ଅତ୍ୟାଚାରିତ ମଣିଷ ମଧ୍ଯ ମୁକ୍ତି ଓ ସ୍ୱାଧୀନତା ସବୁବେଳେ ଖୋଜିଛି ଏବଂ ତା'ଭଳି ମଣିଷଙ୍କ ଗହଣରେ

ସେ ଏସବୁକୁ ଠାବ କରିଛି । ମଣିଷ ଚାହୁଁଥିବା ମୁକ୍ତି ଓ ସ୍ୱାଧୀନତାକୁ ରାଷ୍ଟ୍ର ବା ନେତା କେବେ ହେଲେ ଦେଇପାରିବେ ନାହିଁ । ଏହାକୁ ପାଇବା ପାଇଁ ସମସ୍ତଙ୍କର ସାମୂହିକ ଚେଷ୍ଟା ଓ ସଂହତି ଆବଶ୍ୟକ । ଏହାକୁ ଆଧାର କରି ୧୯୬୦ ମସିହାରେ ଏ ପ୍ରବନ୍ଧମାଳା କାମ୍ୟୁ ଲେଖିଥିଲେ । ୧୯୮୦ ମସିହାରୁ ମୁଁ ଏହାକୁ ଏକ ପ୍ରେରଣାର ଉତ୍ସ କରିଛି । କାଶୀପୁରରେ ଅତ୍ୟାଚାରିତ ଓ ଶୋଷିତ ମଣିଷଙ୍କ ଭିତରେ କାମ କରିଲା ବେଳେ କାମ୍ୟୁଙ୍କ କଥା ମୁଁ ଭୁଲିନାହିଁ । ଆଉ ମଧ ଭୁଲି ନାହିଁ ସମାଲୋଚକମାନଙ୍କ କଥା । କାଶୀପୁରରେ ମୋର ସମ୍ପର୍କର ଏକମାତ୍ର ନିର୍ଯାସ ହେଉଛି ଏକ ଅନ୍ୟାୟ, ଅତ୍ୟାଚାର ସମାହିତ ସମାଜ ବିରୁଦ୍ଧରେ ଗଢ଼ି ଉଠିଥିବା ପ୍ରତିରୋଧରେ ସାମିଲ୍ ହେବା । ସମ୍ଭବତଃ ମୁଁ ଏଥିରୁ ଓହରି ନାହିଁ କି ଭବିଷ୍ୟତରେ ଓହରିବି ନାହିଁ ।



କାଶୀପୁର ଡ଼ାଏରିରେ ଅଚ୍ୟୁତ ବାବୁଙ୍କ ବ୍ୟକ୍ତିସତ୍ତା କାବ୍ୟିକ ଶୈଳୀରେ ପ୍ରତିଫଳିତ । ପାଠକ ତାଙ୍କ ବିଷୟରେ ସାଧାରଣ ଭାବେ ଅଜଣା କଥା ଶୁଣିବାରେ ସୁଯୋଗ ପାଏ । ସମାଜ ସଚେତନ ସମାଜକର୍ମୀ; ଅଗ୍ରଗାମୀର ପ୍ରତିଷ୍ଠାତା, ମାଟିକାଦୁଅର ମଣିଷର ପକ୍ଷଧର ଏ ସବୁର ଅଚ୍ୟୁତ ଦାସ ବେଶ୍ ଜଣାଶୁଣା । ଏ ସବୁକୁ ବାହ୍ୟକର୍ମ, ସାମାଜିକ ଦାୟିତ୍ୱ ସଂପାଦନ ଭାବେ ଗ୍ରହଣ କରାଯାଏ । ସେ ଭିତରେ ରହେ ତିଲୋନିଆ, ଦି ହେଗ୍, ଦେଶ ବିଦେଶ ଯାତ୍ରା । ଅରୁଣା ଓ ବଙ୍କରଙ୍କ ଠାରୁ ଅରବିନ୍ଦ ଓ ସତ୍ୟନଗରର ନାନୀ ଯାଏ । ବହୁ ଅଧ୍ୟୟନର ତାଲିକାଠୁଁ ଆଦିବାସୀଙ୍କ ପାଇଁ ପ୍ରସ୍ତୁତ ଯୋଜନା, ତା'ର ଗୁଣ ଅବଗୁଣ, ଦୋଷତ୍ରୁଟି ଏବଂ ବିଫଳତାର ଇତିବୃତ୍ତ ଯାଏଁ । ସେ ବିଫଳତାର ନିଦାନ ନିରୂପଣ ଓ ସେଇ ବ୍ୟାଧି ନିରାକରଣର ସୃଜନଶୀଳ ଓ ସକରାତ୍ମକ ଦୃଷ୍ଟିଭଙ୍ଗୀରୁ ସରକାରୀ ସ୍ତରର ଅଧିକାରୀଙ୍କ ସହିତ ପରିଚିତ ଓ ସରକାରୀ ଦପ୍ତରମାନଙ୍କ କାର୍ଯ୍ୟାବଳୀର ଧାରଣା ମଧ୍ୟ ସମ୍ୟକ ଆଲୋଚିତ ।

ସୀତାକାନ୍ତ ମହାପାତ୍ର

ମୂଲ୍ୟ : ସାଧା ବନ୍ଧେଇ - ଟ.୧୮୦/-
ବୋର୍ଡ଼ ବନ୍ଧେଇ - ଟ.୨୦୦/-

I.S.B.N. -13:978-81-87982-43-2